## ଜୀବନ କମାରଶାଳ

(ଆତ୍ମଜୀବନୀ)

ଲେଖକ : ଡକ୍ଟର ରତ୍ନାକର ଚଇନି
'ଶ୍ରୀ ନିକେତନ'
ବାଦାମବାଡ଼ି, କଟକ - ୭୫୩ ୦୧୨

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ
କଟକ - ୭୫୩ ୦୧୨

୧ମ ପ୍ରକାଶ : ୨୦୧୪

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ଦି ଲକ୍ଷ୍ମୀ ପ୍ରେସ୍, କଟକ

ମୂଲ୍ୟ : ₹ ୨୫୦

---

## Jibana Kamarashala

(An Autobiography)

Writer **Dr. Ratnakar Chaini**
"Sri Niketana"
Badambadi, Cuttack - 753012

Publisher **Bijayinee Publications**
Shankarpur, Arunodaya Market
Cuttack - 753 012
Phone : 9439241471

1st Edition 2014

Cover Art Bijay Pradhan

Printed at : The Lakshmi Press, Cuttack

Price : ₹ 250 ISBN : 978-93-82360-98-8

# ଆମୁଖ

କୁହାଯାଏ, ଜଣେ ଲେଖକ ଯେତେ ଯାହା ଯେପରି ଲେଖିଥାଉ ନା କାହିଁକି ସେ କେବଳ ନିଜକୁ ହିଁ ଲେଖିଥାଏ । ଅଧ୍ୟୟନ, ଅନୁଭୂତି, ପର୍ଯ୍ୟଟନ, କର୍ମସଂସ୍ଥାନ, ଆଳାପରୁ, ପ୍ରକୃତି–ପରିବେଶ–ପରିସ୍ଥିତିରୁ ତାଙ୍କର ଯାହା ଅଭିଜ୍ଞତା ହୁଏ ତାହାକୁ ହିଁ ସେ ଆଉ କେହି ଚରିତ୍ର, ଆଉ କୌଣସି ପରିବେଶ, ଆଉ କୌଣସି ପରିସ୍ଥିତିଠାରେ ଘଟାଇ ନୂଆ ନୂଆ ସାହିତ୍ୟ କୃତି ଗଢ଼ିଥାଏ । ଜଣେ ଲେଖକର ଲେଖାବଳୀ ଆଦୃତ ହୁଏ; ତହିଁରେ ସମକାଳ ଚିତ୍ରିତ ହୋଇ ମଧ୍ୟ ନୂଆକାଳର ସମ୍ଭାବନା ଇଙ୍ଗିତ ହୋଇଥିଲେ, ବାସ୍ତବତା ଥାଇ ମଧ୍ୟ ଉଚ୍ଚାଦର୍ଶ ସଂସ୍ଥାପନ ହୋଇଥିଲେ, ବ୍ୟର୍ଥତା ଥାଇ ମଧ୍ୟ ଚରିତ୍ରର ସଂଗ୍ରାମ ଓ ସଫଳତା ପ୍ରତିଷ୍ଠା ପାଇଥିଲେ । ଜଣେ ଭିନ୍ନ ଲେଖକ ଭାବେ ସ୍ୱପରିଚିତି ପ୍ରତିଷ୍ଠା ପାଇଁ ତେଣୁ ଲେଖକକୁ ଆଉରି ଆଉରି ଲେଖିବାକୁ ହେଉଥାଏ । ଜଣେ ଲେଖକର ନାନା ଧରଣର ନାନା ରଚନା ସୃଷ୍ଟି ହେଇ ଚାଲିଥାଏ ।

ନିଜକୁ, ନିଜ ସମୟକୁ ଯେତେ ଲେଖୁଥିଲେ ବି ଲେଖକଟିଏ ଆଉ ଚରିତ୍ରର ଅନୁଭୂତି ନାମରେ ଯାହା ସବୁ ଲେଖିସାରିଥାଏ ତଥାପି ତା' ଜୀବନର ନବଦଶମାଂଶ ଅଭିଜ୍ଞତାରେ ସଞ୍ଚିତ ଥାଏ । କା' ଦେଇଥାଏ, ମାତ୍ର ମରି ନ ଥାଏ କି ସରି ନ ଥାଏ ।

ତେଣୁ ହିଁ ଜଣେ ଲେଖକ ଆତ୍ମଜୀବନ ଚରିତ ଲେଖିଥାଏ । ନିଜକୁ ମୁଖ୍ୟ ଚରିତ୍ର କରି ପ୍ରତ୍ୟକ୍ଷରେ ନିଜକଥା ସେହି ଖଣ୍ଡିଏ ଗ୍ରନ୍ଥରେ ହିଁ ଲେଖିଥାଏ । ଆତ୍ମଜୀବନ ଚରିତରେ ଏଣୁ ଏପରି ଅନେକ କଥା ଥାଏ ଯାହା 'ଅନ୍ୟକୁ ମିଛ ମୋତେ ସତ' ପରି । କେହି ଜଣେ କହିଛନ୍ତି– ଆତ୍ମଜୀବନୀ ହେଉଛି ନିଜକୁ ନେଇ ଲେଖା ଉପନ୍ୟାସ ।

ଜୀବନୀକାର ନିଜ ଦୃଷ୍ଟିକୋଣରୁ, ସମାଜ ଦୃଷ୍ଟିରୁ ସୁପ୍ରତିଷ୍ଠ ବ୍ୟକ୍ତିଙ୍କର ଜୀବନର ଆଦର୍ଶ ଓ ଉଜ୍ଜ୍ୱଳ ଦିଗକୁ ପାଠକ ପାଇଁ ପ୍ରସ୍ତୁତ କରେ । ଜୀବନୀ ଗ୍ରନ୍ଥରୁ ବ୍ୟକ୍ତି ଜୀବନର ଆଲୋକିତ ଚନ୍ଦ୍ର ଦର୍ଶନ ସମ୍ଭବ ହୁଏ, ତାହାର 'କଳଙ୍କ' ନୁହେଁ ।

ଆତ୍ମଜୀବନୀକାର କେବଳ ଅକୁଣ୍ଠ ଲେଖିପାରେ ତା'ର ସ୍ୱପ୍ନ-ସମ୍ଭାବନା, ବ୍ୟର୍ଥତା-ହତାଶା, ସ୍ଖଳନ-ପତନ, ଛଦ୍ମତା-ପ୍ରତାରଣା; ମୋଟ ଉପରେ ନିଜର ଦୃଶ୍ୟମାନ ଏକ ଦଶମାଂଶ ନେପଥ୍ୟରେ ରହିଯାଇଥିବା ନବଦଶମାଂଶର କଥା । ଯଥାର୍ଥ ଆତ୍ମଜୀବନୀ ଲେଖିବା ଏଣୁ ସାହସର କଥା । ଫକୀରମୋହନ ସେନାପତିଙ୍କ 'ଆତ୍ମଜୀବନ ଚରିତ' ଓ ମାୟାଧର ମାନସିଂହଙ୍କ 'ସରସ୍ୱତୀ ଫକୀରମୋହନ' ଗ୍ରନ୍ଥ ଦୁଇଟି ତୁଳନୀୟ ।

ଜଣକର 'ଜୀବନ' କ'ଣ ସେହି ଜଣେ ମାତ୍ର ମଣିଷର ଜୀବନ ! ତାହା ତ ପରିପୁଷ୍ଟ ହୋଇଥାଏ ଆଉରି କେତେକେତେ ଜଣଙ୍କର ପ୍ରତ୍ୟକ୍ଷ ପରୋକ୍ଷ ଅବଦାନରେ; ତାହା ବି ଆକଳିତ ହେଉଥାଏ ଆଉରି କେତେକେତେ ଜଣଙ୍କର ଦୃଷ୍ଟିରେ !

ଗୋଟିଏ ଜୀବନଧାରୀ ଯେତେବେଳେ ସେଇ ଆଉ ଆଉ ଜୀବନ (ମଣିଷ)ଙ୍କ ସଂପର୍କରେ ନିଜର ଅଭିଜ୍ଞତା ଲେଖିବସେ, ଲେଖା ଭିତରେ ନିଜକୁ ହିଁ ଲେଖି ପକାଇଥାଏ- ତାହାହିଁ ହୁଏ ଏକ ଭିନ୍ନ ଆତ୍ମଜୀବନୀ । ରତ୍ନାକର ଚଇନିଙ୍କ ଲିଖିତ ଏହି ଆତ୍ମଜୀବନୀ ସେହିପରି ଏକ ଭିନ୍ନ ସୃଷ୍ଟି ।

ନିଜକୁ ଦ୍ରଷ୍ଟା ଭୂମିକାରେ, ଭାଷ୍ୟକାର ଭୂମିକାରେ ରଖି ଅନ୍ୟମାନଙ୍କ କାର୍ଯ୍ୟ-କରଣୀ-ବଚନର ବିନ୍ୟାସ କରୁ କରୁ ସର୍ଜିତ ହୋଇଯାଇଛି ଗୋଟିଏ ସରଳ କୌତୂହଳୀ ଗ୍ରାମୀଣ ବାଳକର ରୂପାନ୍ତରିତର କାହାଣୀ । ଜଣେ ଶିକ୍ଷକ-ସାହିତ୍ୟିକ-ସଂଗଠକ-ଗବେଷକ ଭାବରେ ।

'କୁମ୍ଭାରଚକ'ରେ ଜଣେ ନଟପୁରୁଷଙ୍କୁ ପାଠକେ ଦେଖିଛନ୍ତି । ଜଣେ ନଟ-କଥକ-ଶିକ୍ଷକଙ୍କୁ ଦେଖି ହେବ ଏ 'ଜୀବନ କମାରଶାଳ'ରେ ।

**ପ୍ରକାଶ କୁମାର ପରିଡ଼ା**

# ନ କହିବା କଥା...

କହିବାର କେତେ କଥା ଥିଲା; କିଛି ତ କହି ପାରିଲିନି ଏ ଯାଏ । ସେଦିନ ଦିଇଟା ଲମ୍ବା ଖାତା ଆଉ କଲମଟିଏ ଧରି ମୋ ଘରେ ପହଞ୍ଚିଥିଲ ତୁମେ ଦିଲୀପ ଆଉ ପ୍ରକାଶ । ମୁହଁରେ ଅନୁରୋଧ/ଦାବୀ/ଆଦେଶ; କ'ଣ ଥିଲା ସେ ଶବ୍ଦମାନଙ୍କର ରୂପ-ଶକ୍ତି ! —''ଏଥର ଆପଣ ଲେଖିବେ ଆତ୍ମକଥା ଆମପାଇଁ, ଆମ 'ଜନସୁଧା' ପାଇଁ ପ୍ରତି ମାସରେ । କଲମ ଅଟକିବ ନାହିଁ, ମଝିରେ ବନ୍ଦ ହେବ ନାହିଁ ।''

ଦୁହେଁ ମୋର ଆତ୍ମିକ ମଣିଷ । 'ମୁଁ'ର ବନ୍ଧନରେ ବାନ୍ଧିଦେବାର ପଣ ଧରି ଆସିଥିଲେ । ମୋର ସର୍ଜନାପକ୍ଷ କିନ୍ତୁ ଅଲଗା – ସେମାନେ ଜାଣନ୍ତି । ମୋ 'ଅଥଚ ଚାଣକ୍ୟ' ନାଟକରେ ଚାଣକ୍ୟ କେଉଁଠି ମୁଁ ବା ମୋର ବୋଲି କହି ନାହିଁ । ଅଥଚ ମତେ ମୋର ପ୍ରିୟଜନ ଦୁହେଁ ଧର୍ମସଙ୍କଟରେ ପକାଇବାକୁ ଦୃଢ଼ ପରିକର ।

କଥା ରଖିଲି ।

ଲେଖିଲି ।

କିନ୍ତୁ ହେଲା ନାହିଁ । ନା-

ରହିଗଲା ଅସୁମାରି କଥା ।

ମୋର ବା କିବା ଜୀବନ ! କି ଘଟଣା ଘଟିଛି ଏ ଜୀବନରେ ? ବରଂ ଅନେକ ଜୀବନକୁ ନେଇ ମାଳାକାର ସାଜି ମାଳାଟିଏ ଗୁନ୍ଥିବାକୁ ଚେଷ୍ଟା କରିଛି । ଯେତେ କହିଲେ ବି ରହିଯାଉଚି ଅନେକ । ହାତ ଥରୁଚି । ରହିଯିବା କଥାର ଜୀବନମାନେ, ମତେ କ୍ଷମା କରିବାକୁ ଅନୁରୋଧ ।

ଇଏ ଶେଷ ନୁହେଁ-

ମଧ୍ୟାନ୍ତର ।

ଗଣେଶ ଚତୁର୍ଥୀ

ତା୨୯.୦୮.୨୦୧୪ରିଖ

ରତ୍ନାକର ଚଇନି

## ସୂଚୀ





॥ ଏକ ॥

# ଜୀବନ କମାରଶାଳ

ହଜିବା ଦିନଗୁଡ଼ା କଥା ମନେ ପକାଇଲେ ଆଖି ଠାଏଁ ସ୍ଥିର ହୋଇଯାଏ । ସବୁଗୁଡ଼ା କଥା କେମିତି ଗୋଟେ ଅଜବ ଘଟଣା ଭଳି ମନେହୁଏ । ତାକୁ ମଣିଷ ଜୀଇଁବାର ଜୀବନ ବୋଲି କହିବାକୁ କେହି ହୁଏତ ଇଚ୍ଛା କରିବନି । ଚିତ୍ରୋତ୍ପଳା ମହାନଦୀ ମଧ୍ୟଭାଗର ତ୍ରିକୋଣଭୂମି ଅଞ୍ଚଳ । କୋଉ ପଟକୁ ଗମନାଗମନର ଭଲ ରାସ୍ତା ନ ଥିଲା । ବର୍ଷାଦିନ ପରେ ଏ ଅଞ୍ଚଳର ଲୋକେ ନିହାତି ଦରକାର ପଡ଼ିଲେ ହାଟକୁ ଯାଆନ୍ତି । କିଶୋର ନଗର, ନେମାଳ, ନିଶ୍ଚିନ୍ତ କୋଇଲି, କେନ୍ଦୁପାଟଣା ଆଉ ସାଲେପୁରରେ ସପ୍ତାହରେ ଦି'ଦିନ କରି ହାଟ ହୁଏ । ତା' ଛଡ଼ା ବନ୍ଧୁବାନ୍ଧବ, ଅତାନି ଗତାନି ସକାଶେ ନଈ ପାର ହୋଇ ଏପଟକୁ ସେପଟକୁ ଯିବା କଥା । ଆଉ କୋଉ କଥାରେ କାହାରି ଆଗ୍ରହ ନ ଥାଏ । ଇଂରେଜମାନେ ଏ ଦେଶ ଛାଡ଼ିଯିବା କଥା ମୋ ହେତୁ ହେବା ପରେ ଆମେ ସବୁ ଜାଣିଲୁ ।

ବିଜୁଳି ଆଲୁଅ ସାତ ସପନ କଥା । ଲଣ୍ଠନ ନ ଥାଏ । ଡିବିରି ନ ହେଲେ ଦୀପ ଆଲୁଅ । ଠାଏଁ ଜଳେ । ନବା ଆଣିବା ପାଇଁ ନୁହଁ । ରାତି ସାତଟା ହେଲେ ଏଠି ଭାତଖିଆ ନିଦ । ତେଣୁ ପାଠପଢ଼ା ଏ ମୁଲକକୁ ଆସିପାରୁ ନ ଥିଲା । ଛାପା ବହି ଏ ଅଞ୍ଚଳରେ ଦେଖିବାକୁ ମିଳୁ ନ ଥିଲା । ବ୍ରାହ୍ମଣ ଘର ଆଉ ଥିଲାବାଲାଙ୍କ ଘରେ ଶଗଡ଼େ ଲେଖାଁ ପୋଥି । ପ୍ରତିଦିନ ସଂଜବେଳେ ବିମାନରେ ଥିବା ପୋଥିମାନଙ୍କୁ ଧୂପ ଦିଆହୋଇ ପୂଜା କରାଯାଏ । ଖବରକାଗଜ ନଈ ଡେଇଁ ଏ ଦ୍ୱୀପାଞ୍ଚଳକୁ ଆସିପାରେନି । କଦବା କାହା ଘରକୁ ମାସେ ଦି'ମାସ ପାଇଁ ଆସିଲେ ତାହା ସପ୍ତାହେ ଲେଖାଁ ବିଳମ୍ବରେ ପହଞ୍ଚେ । ତେଣୁ ବିରକ୍ତ ହୋଇ ଆଉ କେହି ମଗାନ୍ତି ନାହିଁ । ଅବଶ୍ୟ ଖବରକାଗଜଟା ଆଭିଜାତ୍ୟର ଚିହ୍ନ । 'ତାଙ୍କ ଘରକୁ ଖବରକାଗଜ ଆସେ ।'

ଇଏ ଆମର ଏକ ଅପାଣ୍ଡବା ରାଜ୍ୟ । ଆମ ଥାନା ସାଲେପୁର । କିନ୍ତୁ ପୋଷ୍ଟଅଫିସ୍ ଥିଲା କିଶୋର ନଗର । ଗାଁ ନାଁ ଅରେଇ । ତାରି କୋଳରେ ମୋର ଜନ୍ମ ଗଣେଶ ଚତୁର୍ଥୀ ଦିନ । ଅଖ୍ୟାତ ପଲ୍ଲୀର ଅଜଣା ପ୍ରାଣୀଟିଏ ମଣିଷ ହେବା ତ ଯୁଗଟିର କଥା ।

ପିଲାଦିନେ ନିରୋଳା ମୁହୂର୍ତ୍ତରେ ଯେତେବେଳେ ମୋ ଜେଜେମା'ଙ୍କ ପାଖରେ ବସି ପଢୁଥିଲି, ବହୁବାର ତାଙ୍କରି ମୁହଁରୁ ଶୁଣିଚି– ସେଦିନ ହରିତାଳିକା । ରାତି ପହ ପହ । ଧାପେ ଖଣ୍ଡେ ସୂରୁଜ ମୁହଁ ଦେଖେଇଲାବେଳକୁ ତୋର କୁଆଁ ରଡ଼ି । ମୋ ମନ ମରିଗଲା । କାଇଁକି ଜାଣିଚୁ ? ଜନ୍ମ ପୂର୍ବରୁ ତ ତୁ ତୋ ମାଆକୁ ବହେ କଷ୍ଟ ଦେଇଚୁ । ଜନ୍ମ ପରେ ବାପକୁ ବାକିତକ କଷ୍ଟ ଦେବୁ ବୋଧେ । ହରିତାଳିକାରେ ଜନ୍ମ ହେଲେ ପିଲା ଗଜମୂର୍ଖ ହୁଅନ୍ତି । ଏ କଥା ମୋ ବୋଉ କହେ । ମୋ ମନରେ ସେଇ ଚିନ୍ତା ପଶିଯାଇଛି । ପାଠ ତ ତୋ କପାଳରେ ନାହିଁ । ଦେଖ୍, ଚେଷ୍ଟା କର । କଷ୍ଟେ ମଷ୍ଟେ ଯଦି ଦି'ଅକ୍ଷର ହେଲା, ଭଲ କଥା ।

ଜେଜେମା' ମଲା ପର୍ଯ୍ୟନ୍ତ ମୋ ପାଠପଢ଼ା ପ୍ରତି କେହି ବେଶି ଆଗ୍ରହ ପ୍ରକାଶ କରୁ ନ ଥିଲେ । ଗାଆଁ ପାଖର ଗୋଟେ ଚାଟଶାଳୀକୁ ଆମ ସମସ୍ତଙ୍କୁ ସକାଳୁ ମୁଠାଏ ମୁଠାଏ ଖାଇବାକୁ ଦେଇ ପଠାଇ ଦିଆଯାଉଥିଲା । ଗାଈ ଗୋଠକୁ ପଠାଇଲା ଭଳି । ସେଠି ଜଣେ ପ୍ରଚଣ୍ଡ କ୍ରୋଧୀ ଅବଧାନ ଥିଲେ । ଚାଟଶାଳୀକୁ ଶୀଘ୍ର ଗଲେ ମାଡ଼; ଡେରିରେ ଗଲେ ବି ମାଡ଼ । ଶୀଘ୍ର ଗଲେ କହନ୍ତି, ଘରେ ପଢ଼ାପଢ଼ି କରୁନୁ । ଫାଙ୍କି ମାରିବାକୁ ଏଠିକି ପଳେଇ ଆସୁଚୁ । ଡେରିରେ ଗଲେ ଆହୁରି ସାଂଘାତିକ । ପହଡ଼ ଭାଂଗୁ ନ ଥିଲା ରଜାଙ୍କର । ଢଳି ଢଳି ଆସୁଛୁ । ମୋଟ ଉପରେ, ଘରେ ମାରଧର କଳି କଜିଆ କରୁଥିଲୁ ବୋଲି ଚାଟଶାଳୀ କି ପଠେଇ ଦିଆହେଉଥିଲା । ଚାଟଶାଳୀରେ ଗୋରୁଗାଈଙ୍କ ଭଳି ମାଡ଼ । ପାଠପଢ଼ା ଖଡ଼ାନାସ୍ତି । ଜେଜେମା' ଚାଲିଗଲେ ଆରପାରିକୁ । କିନ୍ତୁ ସମସ୍ତଙ୍କ ମୁଣ୍ଡରେ ପୂରେଇ ଦେଇଗଲେ– ଏଇଟା ଗଣ୍ଡମୂର୍ଖ ହବ । ମାତ୍ର ମତେ ଯେତେବେଳେ ସାତବର୍ଷ, ମୋ ମଝିଆଁ ମାମୁ ମତେ ଆଣି କେନ୍ଦୁପାଟଣା ମି.ଇ. ସ୍କୁଲରେ ଏକାଥରେ ଚତୁର୍ଥ ଶ୍ରେଣୀରେ ନାଁ ଲେଖେଇଦେଲେ । ଦିଜ ନନା ଓ ମୁଁ ଏକା କ୍ଲାସ୍‌ରେ ପଢୁଥିଲୁ । ଆମ ଘରଠାରୁ କେନ୍ଦୁପାଟଣାକୁ ଯିବାଆସିବା କରିବାର ଭଲ ପାଦଚଲା ରାସ୍ତା ବି ନ ଥିଲା । ମଝିରେ ଏକ ବିରାଟ ଗହୀର– ପାଟ ଜମି । ବର୍ଷାଦିନେ ଚିଲିକାମୟ

ହୋଇଯାଏ । ତା'ପରେ ଏକ କିଲୋମିଟର ଓସାର ଚିତ୍ରୋତ୍ପଳା ନଈ ଏବଂ ତା'ପରେ କେନ୍ଦୁପାଟଣା ମି.ଇ. ସ୍କୁଲ । ଆଖି ପାଏନି । ପ୍ରାୟ ଚାରି କିଲୋମିଟର ରାସ୍ତାରେ ବର୍ଷା-ଶୀତ-ଖରାର ତାଣ୍ଡବଲୀଳା । ଏସବୁକୁ ଦେଖି ଦେଖି ଯାତାୟାତ । ନଈ-ନାଳ-ପାଟ ଅତିକ୍ରମ କରିବାକୁ ପଡ଼େ । ଏସବୁ ଦେହସୁହା ହେଇଗଲା ଚାରିବର୍ଷ ଭିତରେ ।

ସହଜେ ଆମର ଧୋଇୟା ଅଞ୍ଚଳ । ଯାହା ଯେମିତି ଚଳଣି ସେଇ ଚାଷବାସରୁ । ବାପା ମାମୁଙ୍କୁ ଆଗରୁ କହିଦେଇଥିଲେ- ଆରେ ନଟ ! ଦି'ଟା ଛୁଆଙ୍କୁ ସ୍କୁଲରେ ଭର୍ତ୍ତି କରିଦେଲୁ ଯେ, ମୁଁ ଖର୍ଚ୍ଚ ତୁଲେଇ ପାରିବି ତ ? ତୁ ହେଡ୍‌ମାଷ୍ଟ୍ରଙ୍କୁ କହି ଜଣକ ଖର୍ଚ୍ଚ ମାଫ୍ କରାଇ ଦଉନୁ । ମାମୁ କୁହାବୋଲା କଲାପରେ ହେଡ଼ମାଷ୍ଟ୍ରେ କୁଆଡ଼େ ତାଙ୍କୁ କହିଥିଲେ, ଛ'ମାସିକା ପରୀକ୍ଷା ଫଳ ପରେ ଯାହା ଯେମିତି କରିବା କଥା କରିବା ।

ଷାଣ୍ମାସିକ ପରୀକ୍ଷା ଫଳ ବାହାରିଲା । ଡ୍ରଇଁ ବ୍ୟତୀତ ସବୁଥିରେ ମୁଁ ଫାଷ୍ଟ । ମାମୁ କହିଲେ- ଏଥର ତୁ ନିଜେ ଯାଇ ହେଡମାଷ୍ଟ୍ରଙ୍କୁ କହ । ଫାଷ୍ଟ ହେଇଚୁ ଯେତେବେଳେ ସେ ଖୁସି ହେବେ । ତୋର ଫ୍ରି-ସିପ୍ କରିଦେବେ । ମୋର ହେଡ୍‌ସାର୍‌ଙ୍କୁ ପ୍ରାଣେ ଡର । ଭାରି ରାଗୀ ସେ । ବହୁତ ଗାଳି ଦିଅନ୍ତି । ହେଲେ ଆଜି ସେ ଭୟ ନ ଥିଲା । ଅନୁମତି ନେଇ ତାଙ୍କ ପାଖକୁ ଗଲି । ସାହସ ବାନ୍ଧି ସବୁ କଥା କହିଲି । ସେ ସବୁ ଶୁଣିସାରି କହିଲେ, ହଉ । ମୁଁ କିନ୍ତୁ ନଛୋଡ଼ବନ୍ଧା । ସେମିତି ଠିଆ ହୋଇ ରହିଲି । ଫ୍ରି-ସିପ୍ ବିଷୟରେ ମୋର ସ୍ୱଷ୍ଟ ଧାରଣା କିଛି ନ ଥିଲା । ମୁଁ ଭାବିଥିଲି, କିଛି ଗୋଟାଏ ଜିନିଷ ସାର୍ ଦେବେ । ତାକୁ ନେଇ ମୁଁ ଘରେ ବାପାଙ୍କୁ ଦେବି । ହେଡମାଷ୍ଟ୍ରେ ଲେଖାପଢ଼ାରେ ବ୍ୟସ୍ତ ରହିଥିଲେ । କିଛି ସମୟ ପରେ ଦେଖିଲେ ମୁଁ ତାଙ୍କ ରୁମ୍‌ରେ ସେମିତି ଠିଆ ହୋଇରହିଚି । କଠୋର ଗଳାରେ ସେ ପ୍ରଶ୍ନ କଲେ- କ'ଣ ହେଲା ?

ତାଙ୍କ କଠୋର ସ୍ୱରରେ ମୁଁ ଭୟ ପାଇସାରିଥିଲି । ତରତରରେ କହିପକାଇଲି-'ସାର୍, ମୁଁ କ୍ଲାସ୍‌ରେ ଫାଷ୍ଟ ହେଇଚି...'

ପୂର୍ବଭଳି ଟାଣ ସ୍ୱରରେ ସେ କହିଲେ- 'ଫାଷ୍ଟ ହେଇଚୁ ? ଆ, ମୋ ମୁଣ୍ଡ ଉପରେ ବଅ ।' ଭୋ-କିନା କାନ୍ଦିଉଠି ଅତର୍କରେ ରୁମ୍ ବାହାରକୁ ଦୌଡ଼ି ପଳାଇ ଆସିଲି । କାହାକୁ କିଛି କହିଲି ନାହିଁ । ଦି'ଦିନ ସ୍କୁଲକୁ ଗଲି ନାହିଁ । ତୃତୀୟ ଦିନ

ମାମୁ ଆସି ଘରେ ହାଜର । ମୁଁ କ୍ଲାସ୍‌ରେ ଫାଷ୍ଟ ହେଇଚି ଏବଂ ମୋର ଦରମା ଛାଡ଼ ହେଇଛି ବୋଲି ସେ ବାପାଙ୍କୁ କହିଲେ । ସମସ୍ତେ ଖୁସି ହେଲେ । ମାତ୍ର ମୁଁ ଜମା ଖୁସି ହୋଇପାରିଲି ନାହିଁ । ମୋର ସେ ହେଡ଼ମାଷ୍ଟ୍ରେ କରୁଣାକର ଜେନାଙ୍କ ପ୍ରତି ଡ଼ର ହେଇଗଲା ପ୍ରବଳ । ହେଲେ ବାଘ ଭୟ ଯୋଉଠି, ରାତି ସେଇଠି । ଛ'ମାସିକା ପରୀକ୍ଷା ପରେ ଆମର ଡ୍ରଇଂ କ୍ଲାସ୍ ନେଲେ ନିଜେ ହେଡ଼ମାଷ୍ଟ୍ରେ । ଭୟ ଯୋଗୁଁ ମୁଁ ଡ୍ରଇଂ କ୍ଲାସ୍‌ରେ ସବା ପଛରେ ଯାଇ ବସେ । ଥରେ କ୍ଲାସ୍‌ରେ ସାର୍ କହିଲେ, ଗୋଟାଏ ଗାଈର ଚିତ୍ର ଆଙ୍କି ଆଣ । ସମୟ ପନ୍ଦର ମିନିଟ୍ । ସମସ୍ତେ ଚିତ୍ର ଆଙ୍କିବାରେ ଲାଗି ପଡ଼ିଲେ । ମୁଁ ବି ଚେଷ୍ଟା କଲି । କିନ୍ତୁ ଠିକ୍ ଚିତ୍ର ହଉ ନ ଥାଏ । ସମସ୍ତେ ଚିତ୍ର ଆଙ୍କି ସାର୍‌ଙ୍କୁ ଦେଖାଉଥାନ୍ତି । ଶେଷବେଳକୁ ମୁଁ ଗଲି ଡ୍ରଇଂଖାତା ଧରି । ଚିତ୍ରକୁ ଦେଖି ମୋ ଆଡ଼କୁ ସେ କଟମଟ କରି ଚାହିଁଲେ । ତାଙ୍କ ଆଖିକୁ ଚାହିଁ ମୋ ପିଳେହି ପାଣି ।

ପଚାରିଲେ- ଏଇଟା କ'ଣ ?

ମୁଁ କହିଲି- ଗା-ଗାଈ...

ପୁଣି ପଚାରିଲେ- ଏମିତିଆ ଗାଈ କୋଉଠି ଦେଖିଚୁ ?

ମୁଁ କହିଲି- ନାଇଁ...

କହିଲେ- ଲେଖ୍ ତା' ତଳେ, ବିଲାତି ଗାଈ ।

ମୁଁ ଭୟରେ ଲେଖିପକାଇଲି, ବିଲାତି ଗାଈ । ଲେଖିସାରିବା ପୂର୍ବରୁ ପିଠିରେ ବସିଗଲା ଗୋଟାଏ ବାଇଶିପଳିଆ ବିଧା । 'ଇଲୋ ବୋଉଲୋ' ବୋଲି ରଡ଼ିକରି ସେଇ ଖାତା ଉପରେ ମୁହଁମାଡ଼ି ପଡ଼ିଗଲି । ରାହା ବନ୍ଦ ହୋଇଗଲା । ମତେ ବେଞ୍ଚ ଉପରେ ବସେଇ ଖାତାରେ ପଙ୍ଖା କରାଗଲା । ପିଅନ ଜଣେ ଗିଲାସେ ପାଣି ଆଣି ପିଇବାକୁ ଦେଲା । ଦିଜ ନନାଙ୍କୁ ନିର୍ଦ୍ଦେଶ ଦିଆଗଲା, ଯତ୍ନ ସହ ମତେ ଧରିକରି ଘରକୁ ନେବାକୁ ।

ଏ ଘଟଣା ପରେ ମୁଁ ଆଉ କେବେ ମାଡ଼ର ସମ୍ମୁଖୀନ ହୋଇ ନାହିଁ । କେଜାଣି କାହିଁକି, ସେଇ ହେଡ଼ମାଷ୍ଟ୍ରେ ଏ ଘଟଣା ପରେ ମତେ ଅଧିକ ଶ୍ରଦ୍ଧା କଲେ । ଦିନେ ଅଧେ ଯଦି ସ୍କୁଲକୁ ନ ଯାଇଚି, ପରଦିନ ଡ଼ାକି ପଚାରନ୍ତି- 'କ'ଣ ହୋଇଥିଲା କିରେ ! କାଲି କାଇଁ ଆସିଲୁନି ? ଉପଦେଶ ଦିଅନ୍ତି, ମନଦେଇ ପଢ଼ ।'

ପରବର୍ତ୍ତୀ କାଳରେ ହେଡ଼ମାଷ୍ଟ୍ରେ କରୁଣାକର ଜେନା, ମୋ ପାଇଁ ଚିର ଅଭୁଲା ହୋଇ ରହିଗଲେ । ତାଙ୍କ କଥାକୁହା ଢଙ୍ଗ, ହସ-ରୂପ, ପୋଷାକ ଆଉ ଚାଲିବା ଶୈଳୀ ସବୁଦିନ ପାଇଁ ଛାପି ହୋଇଗଲା ମୋ ମନରେ । କଳା ମିଚ୍‌ମିଚ୍ ରୂପ, ପିନ୍‌ପିନ୍ ଧଳା ତାଙ୍କ ଦାନ୍ତ । ଚାଲିରେ ବିରାଡ଼ି ବି ହାର୍ ମାନିବ । ଟିକେ ହେଲେ ଜଣାପଡ଼ିବନି । ଅଧିକାଂଶ ଦିନ ପିନ୍ଧନ୍ତି ଧୋତି, ଧଳା ହାପ୍‌ସାର୍ଟ । କ୍ଲାସ୍‌ରେ ଦୁଇଗୋଡ଼ ଉପରକୁ ଟେକି କରି ଚେୟାରରେ ଝାଡ଼ା ବସିଲା ଭଳି ବସନ୍ତି । ଭାରି ବିଚକ୍ଷଣ ବୁଦ୍ଧି । କ୍ୱଚିତ୍ ହସନ୍ତି । ଖରା ବର୍ଷା ଶୀତ ସବୁଦିନେ ହାତରେ ଛତା ଧରି କୋଲଣପୁରରୁ ଚାଲି ଚାଲି କେନ୍ଦୁପାଟଣା ମି.ଇ. ସ୍କୁଲକୁ ଆସନ୍ତି । ଠିକ୍ ସମୟରେ ସ୍କୁଲରେ ପହଂଚି ପ୍ରାର୍ଥନା କରାନ୍ତି । ସମୟ ସାଂଗେ ତାଳ ଦେଇ ଚାଲନ୍ତି ।

ସମୟର ମଣିଷ ସେ ।

ଯାହା ମନେପଡୁଛି, ସେ ଖଦଡ଼କୁ ବେଶି ପସନ୍ଦ କରୁଥିଲେ । ଧୋତି ଜାମା ସବୁ ସଫା ଖଦଡ଼ । ଚିତ୍ରୋପ୍ତଳା ନଈ ପାଣି ବର୍ଷର କିଛିଦିନ ମଇଳା ଦିଶେ । ଗୋଳିଆ ପାଣି ପେଟରେ ଧରି ସମୁଦ୍ର ଆଡ଼କୁ ଧାଏଁ । କିନ୍ତୁ ହେଡ଼ମାଷ୍ଟ୍ରଙ୍କ ଧୋତି ଜାମା ଦିନେ ବି ମଇଳା ଦିଶେନି । ଆମମାନଙ୍କର ଅଧିକାଂଶଙ୍କ ଜାମାପେଣ୍ଟ ହଳେ ଲେଖାଁ । ରବିବାର ଦିନ ସଫା ହୁଏ । ସପ୍ତାହର ଶେଷଆଡ଼କୁ ମଇଳା କୋଚଟ ଦିଶେ । କିନ୍ତୁ କରୁଣାକର ସାର୍‌ଙ୍କର ଲୁଗାପଟା ସବୁଦିନେ ତୋଫା । ଆମ ଭିତରେ କଥା ପଡ଼େ, ସାର୍ କ'ଣ ସବୁଦିନେ ଲୁଗା ସଫା କରନ୍ତି । ନା ଗୁଡ଼ାଏ ସଫା ଲୁଗାପଟା ତାଙ୍କର ଅଛି । ଏକଥା ପଚାରିବାକୁ କେହି ସାହସ କରିପାରିଲୁ ନାହିଁ, ସ୍କୁଲ ଛାଡ଼ି ଆସିବାଦିନ ଯାଏ ।

ସପ୍ତମ ଶ୍ରେଣୀ ପରୀକ୍ଷା ହେଲା ସାଲେପୁର ହାଇସ୍କୁଲରେ । ଗୋଟାଏ ସପ୍ତାହ ଆମେ ରହିଲୁ ସାଲେପୁରରେ । ଯଦୁ ସାର୍ ଯାଇଥିଲେ ଆମମାନଙ୍କର ଗାର୍ଜନ ହୋଇ । ପ୍ରଥମଦିନ ରାତିରେ କହିଲେ- ପିଲାଏ ! ମନ ଦେଇ ପରୀକ୍ଷା ଖାତାରେ ଲେଖିବ । ଭଲ ପରୀକ୍ଷା ଫଳ ହେଲେ ଏଇ ହାଇସ୍କୁଲରେ ଆସି ପଢ଼ିବ । ପ୍ରଶ୍ନକୁ ଭଲ ଭାବେ ପଢ଼ି ଉତ୍ତର ଲେଖିବ ।

ସତ କହିବାକୁ ଗଲେ, ମୋର ମୋଟେ ପରୀକ୍ଷା ଚିନ୍ତା ନ ଥିଲା । ପାସ୍ କଲେ କେତେ ଫେଲ୍ ହେଲେ କେତେ; ଆଉ ଆଗକୁ ପାଠ ପଢ଼ିବା ମୋ ଭାଗ୍ୟରେ ନାହିଁ । ଘରୁ ସାଲେପୁରକୁ ତ ଯା'ଆସ କରିପାରିବି ନାହିଁ । ହଷ୍ଟେଲରେ ରହି

ପଢ଼ିବା ପାଇଁ ବାପା ଖର୍ଚ୍ଚ ତୁଲେଇବେ ନାହିଁ । ତେଣୁ ଏ ପରୀକ୍ଷା ସରିଲେ ନାନୀ ଘରକୁ ଆସି ଚିତ୍ରୋତ୍ପଳା ନଈରେ ପହଁରା ଶିଖିବି । ସାଂଗମାନଙ୍କ ସହିତ ମଉଜ କରିବି, ବାସ୍ ! କିଛିଦିନ ପାଇଁ ଚିତ୍ରୋତ୍ପଳା କୂଳ...

ପରୀକ୍ଷା ସଇଲା ।

ଘରକୁ ଫେରିଆସିଲୁ ସମସ୍ତେ ।

ଘରେ ଡିଆଁ ଡେଇଁ କରି କିଛିଦିନ କଟିଗଲା । ମନେପଡ଼ିଲା ଚିତ୍ରୋତ୍ପଳା କୂଳ ନାନୀ ଘର... । ବୋଉ ନାଇଁ ନାଇଁ ହେଇ ଶେଷକୁ ଦି'ଦିନ ପାଇଁ ରାଜି ହେଲା । କ'ଣ ଗୋଟାଏ ପୂନେଇ ପରବ ଦିନ ପିଠାପଣା କରି ବୁଲୁଳାଟିଏ ଧରେଇ ଦେଲା । ତାକୁ ଧରି ଚିତ୍ରୋତ୍ପଳା ନଈକୂଳ ଜୟନ୍ତାପୁରେ ଆସି ନାନୀ ଘରେ ହାଜର । ନାନୀ ଭାରି ଖୁସି । ଘର କଥା ପଚାରି ବୁଝିଲା । ମୁଁ ଠିକେ ଠିକେ ସେସବୁ କଥା କହି ନଈ କୂଳରେ ପହଞ୍ଚିଗଲି । କେତେଜଣ ପଢ଼ାସାଂଗ ନଈବାଲିରେ ଖେଳୁଥିଲେ । ମୁଁ ତାଙ୍କ ସାଂଗରେ ମିଶିଗଲି । ହସଖୁସି, ମନଖୋଲା ଚିତ୍କାର... । ଆଃ ! ଅଭୁଲା ସେସବୁ କଥା !

ମୋ ସ୍ୱପ୍ନର ଚିତ୍ରୋତ୍ପଳା ନଈବାଲି–

ଶୀତଦିନ ସକାଳେ ନଈବାଲି ବରଫ ଭଳି ଥଣ୍ଡା । ଖାଲି ପାଦରେ ଚାଲିବା ଭାରି କଷ୍ଟ । ପାଦ କୋଲପି ମାରିଯାଏ । କେଇ ପାଦ ଆଗେଇ ଯାଇ ବାଲି ଆଡ଼େଇ ଠିଆ ହେବାକୁ ପଡ଼େ । ଏମିତି ରହି ରହି ସେପଟକୁ ଯିବାକୁ ହୁଏ । ଖରାଦିନେ କ୍ଲାସ୍ ସାରି ଧୂ–ଧୂ ଖରାରେ ଫେରିଲାବେଳେ ବଜ୍ରମୂଳୀ ଗଛ କିମ୍ବା ଅମରୀ ଗଛଡାଳ ଧରି ନଈବାଲିରେ ଦଉଡୁ । ଗୋଡ଼ ପୋଡ଼ିଗଲେ ଧରିଥିବା ଗଛ ବା ଡାଳ ପକେଇ ଦଣ୍ଡେ ଠିଆ ହଉ । ତା'ପରେ ପୁଣି ଦଉଡୁ । ବହିବସ୍ତାନିକୁ ଉପରକୁ ଟେକିଧରି ନଈଧାରରେ ଆଛା ବୁଡ଼ନ୍ଟିଏ ମାରି ଘରକୁ ଯାଉ । ଘରେ ପହଂଚିଲାବେଳକୁ ପ୍ୟାଣ୍ଟ ସାର୍ଟ ଶୁଖି ସାରିଥାଏ । ଇଏ ଏକ ରୁଟିନ୍ ଜୀବନ ।

ବର୍ଷାଦିନେ ବଡ଼ ବିଚିତ୍ର ଯାତ୍ରା । ଖଣ୍ଡେ ଲେଖାଁ ଛୋଟ ଗାମୁଛା ପିନ୍ଧି ଗହୀର ପାଟ ବିଲ ରାସ୍ତାରେ କାଦୁଅ ପାଣି ଚକଟି ବାହାରିପଡୁ । ମଝିରେ ଲମ୍ବା ପାଣି ଜୋର । ଜୋର ଟପିଲାବେଳେ ଗାମୁଛା ଓଦା ହୁଏନା । ପାଣିର ଗଭୀରତା ଯେତେ ବେଶି ବେଶି ହୁଏ ଗାମୁଛା ସେତେ ଉପରକୁ ଉଠେ । ସେପଟେ ପହଞ୍ଚିଲାବେଳକୁ ଗାମୁଛା ଯୋଡ ଶୁଖିଲାକୁ ସେଇ ଶୁଖିଲା । ଏହାର ଗୋଟାଏ

କାରଣ ବି ଥିଲା । ଓଦା ଲୁଗା ଧରି କ୍ଲାସ୍‌ରେ ବସି ହେବନି । ଫେରିଲାବେଳ କଥା ପୁଣି ଅଛି ।

ବର୍ଷାଦିନେ ବଡ଼ କଷ୍ଟ । ନଈ ଏକୂଳ ସେକୂଳ ଖାଉଥାଏ । ଡଙ୍ଗାପାରି ହେବାକୁ ଦେଢ଼ଘଣ୍ଟା ଦୁଇଘଣ୍ଟା ଲାଗେ । ସକାଳୁ ଦି'ଘଣ୍ଟା ଆଗରୁ ସ୍କୁଲକୁ ବାହାରିବାକୁ ପଡ଼େ ଏବଂ ସନ୍ଧ୍ୟାରେ ଦି'ଘଣ୍ଟା ଡେରିରେ ଘରେ ପହଞ୍ଚିବାକୁ ହୁଏ ।

ଆମ ପାଇଁ ଇଏ ଚିତ୍ରୋତ୍ପଳାର ମାୟା । ଦିନେ ଦିନେ ମୁହଁ ଅନ୍ଧାର ରାତିରେ ଗହୀର ଟପି ଫେରି ଆସିଲାବେଳେ କାଦୁଅ ବିଲରେ ଗେଣ୍ଡା ପାଦ କାଟିଦିଏ । ଧାର ଧାର ରକ୍ତ ବହୁଥାଏ । ସେଇଥିରେ କାଦୁଅ ଚକଟି ଘରମୁହାଁ ହେଇ ଦଉଡ଼ିବାକୁ ପଡ଼େ । ପରଦିନ ସେ ଖଣ୍ଡିଆ ଉପରେ କନାପଟିଟିଏ ବାନ୍ଧି ଯିବାକୁ ପଡ଼େ । ଏ ଜୀବନଯାତ୍ରାରୁ ରକ୍ଷା ନାହିଁ । ସ୍କୁଲ ବନ୍ଦ କଲେ ଜୋରିମାନା ଗଣିବାକୁ ହୁଏ । ବାପା ତ ସହଜେ ପଢ଼ାକୁ ଅମଙ୍ଗ । ସେଥିରେ ଅର୍ଥ ଦଣ୍ଡ ହେଲେ ପଢ଼ା ପୂରା ଠପ୍ । ତେଣୁ ଆଉ ଅନ୍ୟ ଉପାୟ ନ ଥାଏ । କମାରଶାଳ ଭିତରେ କଞ୍ଚା ଲୁହା ଭଳି ପଶିଥିଲୁ । ତାତି ସହିବାକୁ ହେବ । ପାହାର ଖାଇବାକୁ ହେବ । ତେଣିକି ଦରକାରୀ ଦାଆ କଟୁରୀ ହେଲେ ହେଲ; ନ ହେଇପାରିଲେ ନାଇଁ ।

।। ଦୁଇ ।।

# ମାମୁଘର ଗାଆଁ ଦିଶେ

'ଚକା ଚକା ଭଉଁରୀ
ମାମୁଘର ଚଉଁରୀ,
ମାମୁ ମତେ ମାଇଲେ
ମାଇଁ ଦୁଧଭାତ ଖୋଇଲେ'–

ମୋ ପାଇଁ ଇଏ ଥିଲା ଏକ ଲୋଭନୀୟ ନାନାବାୟା ଗୀତ । ମାମୁ କେବେ ଆକଟ କରି ମାରି ନ ଥିଲେ; କିମ୍ଵା ମାଇଁ ଦୁଧଭାତ ଖୁଆଇବା ପାଇଁ ଆସିବା ପରିସ୍ଥିତିରେ ନ ଥିଲେ । ମାମୁଘର ମୋ ପାଇଁ ଥିଲା ଏକ ନାହିଁ ନାହିଁର ଜଗତ । ସବୁ କିଛି କୈଶୋରର ଆଚ୍ଛନ୍ନ ମୁହୂର୍ତ୍ତର କଥା ।

ମାଇନର ସ୍କୁଲ ପାଠପଢ଼ା ବେଳର କଥା ।

କେନ୍ଦୁପାଟଣାରୁ ଆସିଲି ନେମାଳ...

ନେମାଳରେ ନୂଆ କରି ହାଇସ୍କୁଲ ହେଲା ।

ହାଇସ୍କୁଲ ପାଠପଢ଼ା ତ ସ୍ଵପ୍ନର କଥା ଥିଲା ମୋ ପାଇଁ ।

କେନ୍ଦୁପାଟଣାରେ ନଟମାମୁ ଥିଲେ ଶିକ୍ଷକ । ଏଠି ତ କେହି ନାହିଁ । ନିଜ ଶିଙ୍ଗରେ ମାଟି ତାଡ଼ିବାକୁ ହେବ । ତେବେ କେନ୍ଦୁପାଟଣା ମି.ଇ. ସ୍କୁଲ ଛାଡ଼ିଲାବେଳେ ମାମୁଘର ଗାଆଁ ମୋ ପାଇଁ ଅଭୁଲା ସ୍ମୃତି କେନ୍ଦ୍ର ହୋଇପଡ଼ିଥିଲା । ସିଏ ଥିଲା ମଝି ପର୍ଯ୍ୟାୟର କଥା ।

ଆଖି ପାଉ ନ ଥିବା ବିରାଟ ଗହୀର ପାଟ ।

ମାଳ ମାଳ ଚାଷ ଜମି ।

ତା'ର ଶେଷଆଡ଼େ ଆମ୍ବ ନଡ଼ିଆ ଗଛର ଉହାଡ଼ରେ ମୋ ମାମୁଘର ଗାଆଁ ଦିଶେ । ଲମ୍ବାଳିଆ ଦି'ଧାଡ଼ି ଚାଳଘର ଥିବା ବଡ଼ ଗାଆଁ; ଲେଣ୍ଟୁରା ଭଗବାନ୍‌ପୁର ।

ଗାଆଁର ଉତ୍ତରପଟେ ଈଶାଣେଶ୍ୱର ଶିବ ମନ୍ଦିର । ପଣାସଂକ୍ରାନ୍ତି ଦିନ ଏଠି ଗୋଟେ ବଡ଼ ମେଳା ହୁଏ । ପାଟୁଆ ନାଟ ହୁଏ । ଖଣ୍ଡା ପାଟୁଆ, କଣ୍ଟା ପାଟୁଆ ଆଦି ଜଳନ୍ତା ନିଆଁରେ ଚାଲନ୍ତି । ନାନା ପ୍ରକାର କାଠ, ପଥର ଓ ପତର ତିଆରି ଖେଳନା ମିଳେ । ଭଜା ବାଦାମ ଓ ଚଣାବୁଟ ବିକ୍ରି ହୁଏ ।

ଆଉ କେବେ ମାମୁଘର କଥା ମନେପଡୁ ବା ନ ପଡୁ ଏଇ ଦିନ ବେଶି ମନେପଡ଼େ । ବଡ଼ ଭଉଣୀ ସୁନାନାନୀକୁ ମେଳା ବୁଲିଯିବାକୁ ବୋଉ ଅନୁମତି ଦିଏନି । ଦିଜ ନନା ଓ ମୁଁ ଅନୁମତି ପାଇ ଯାଉ, କେନ୍ଦୁପାଟଣାର ପାଠ ପଢୁଆ ପିଲା ହିସାବରେ । ଆମକୁ ଅଣାଏ ଲେଖାଁ ଯାତ୍ରା ଖର୍ଚ୍ଚ ମିଳେ । ସେଥିରେ ବରାଦ ଥାଏ, ନାନୀ ଓ ସାନଭାଇ-ଭଉଣୀଙ୍କ ପାଇଁ ମେଳାରୁ ଭଲ ଜିନିଷ କିଛି କିଛି କିଣି ଆଣିବାକୁ । ଏତେ ପଇସା ଧରି ଯାଉଥିବାରୁ ଆମକୁ ବୋଉ ବାରମ୍ବାର ସତର୍କ କରିଦିଏ । 'ହୁସିଆର'....

ମେଳାରୁ ଫେରିଲା ପରେ...

ଆମେ ମେଳା ଦେଖା ବିବରଣୀ ସଗୌରବେ ଭାଇ ଭଉଣୀମାନଙ୍କ ଆଗରେ ଗପୁ । ଚିନାବାଦାମ ଓ ବୁଟଭଜା ସମସ୍ତଙ୍କୁ ବାଣ୍ଟୁ । ମନେମନେ ଭାବେ, ମୁଁ ବୋଧେ ଗୋଟେ ବଡ଼ ମଣିଷ ହେଇଗଲିଣି । ବାପା ବୋଉ ଯୋଉ ଦାୟିତ୍ୱ ଦେଉଛନ୍ତି, ତାକୁ ତୁଲାଉ ପାରୁଚି । ତା' ସତ୍ତ୍ୱେ ମାମୁଘର ମୋ ପାଇଁ ଆକର୍ଷଣ କେନ୍ଦ୍ର ନ ଥିଲା । କାରଣ କେନ୍ଦୁପାଟଣା ସ୍କୁଲରେ ପାଠ ପଢ଼ିବାବେଳେ ବର୍ଷକୁ ଦୁଇଥର ବାଧ୍ୟତାମୂଳକ ଭାବେ ମାମୁଘରେ ରହିବାକୁ ପଡୁଥିଲା । ଥରକେ ଦୁଇ ସପ୍ତାହ କାଳ । ଛ'ମାସିଆ ପରୀକ୍ଷାବେଳେ ଥରେ; ବାର୍ଷିକ ପରୀକ୍ଷା ବେଳେ ଥରେ ।

ପ୍ରକୃତରେ ଇଏ ମୋ ମାମୁଘର ନୁହଁ-

ଅଜାଘର । ଅଜା ବେଣୁ ନନ୍ଦ ।

ସେ ତାଳପତ୍ର ପୋଥି ଗୋଲ ଗୋଲ ଅକ୍ଷରରେ ଉତାରନ୍ତି । ଜମିଦାର ଘର ଓ ଥିଲାବାଲା ବ୍ରାହ୍ମଣଘର ବରାଦ ଦେଇ ପୋଥି ନକଲ କରାନ୍ତି । ସେଥିପାଇଁ ତାଙ୍କୁ ଏକକାଳୀନ ପଇସା ଦିଅନ୍ତି । ଚାଷଜମି ତାଙ୍କର ଖୁବ୍ କମ୍ । ବ୍ରାହ୍ମଣ ଘର । ତେଣୁ ସେତକ ଭାଗ ଚାଷ ପାଇଁ ଦେଇଥାନ୍ତି । ସେଥିରୁ ଯାହା ମିଳେ ଅଧାବର୍ଷ ଚଳେନି । ଆମ ଘରର ଚାଷଜମି ବେଶି । ବନ୍ୟା ମରୁଡ଼ି ନ ହେଲେ ବର୍ଷକର

ଅମଳ ତିନି ବର୍ଷ ଚଳିଯାଏ । ମୁଁ ଓ ଦିଜ ନନା ଅଜାଘରେ ରହୁଥିବା ଆଳରେ ବାପା ଚାଉଳ, ଆଳୁ, ଡାଲି ଆଦି ପନିପରିବା ପଠାଇ ଦିଅନ୍ତି ଭାରୁଆ ହାତରେ ।

ସେମିତି ଦେଖିଲେ ଅଜାଘରେ ଦି'ଜଣ ଲୋକ । ଅଜା-ଆଈ । ସରସ୍ୱତୀ (ସୋରିଆ) ମାଉସୀ ସବା ବଡ଼ । ତା' ତଳକୁ ମୋ ବୋଉ ଶ୍ରୀମତୀ । ଏମାନେ ବାହାସାହା ହେଇ ଘରସଂସାର କଲେ ତାଙ୍କ ଜଗତରେ ରହି । ଏମାନଙ୍କ ପରେ ତିନି ମାମୁ । ବଡ଼ମାମୁ ମୁରଲୀ ବାହାହେଇ ଶ୍ୱଶୁର ଘର ସମ୍ଭାଳିଲେ । ମାଇଁ ତାଙ୍କ ବାପା ମା'ଙ୍କର ଏକମାତ୍ର ଝିଅ । ନଟମାମୁ ମଝିଆଁ । ସେ ଅଭିରାମ ପରମହଂସ ପରିବାର ଆଶ୍ରିତ । ସେଇ ପରିବାରର ଜଣଙ୍କର ଝିଅକୁ ସେ ବିବାହ କଲେ । କେନ୍ଦୁପାଟଣାରେ ଘର ନେଇ ରହି ସେଇଠି ଶିକ୍ଷକତା କଲେ । ସାନ ବଟମାମୁ । ଘରୁ ରାଗିକରି ଯାଇ ମିଲିଟାରୀରେ ଜଏନ୍ କରିଥିଲେ । ଅକାଳେ ସକାଳେ ଥରେ ଅଧେ ଆସି ଘରେ ବୁଲିଯାଆନ୍ତି ।

ସାନମାମୁ ଆସିଲେ ଆମେ ଭାରି ଖୁସି ହେଉ ।

କାରଣ ସେ ଗାଁକୁ ଆସିଲେ ସବୁ ଭଣଜା-ଭାଣିଜୀଙ୍କ ପାଇଁ ଜାମାପଟା କିଣି ଆଣିଥାନ୍ତି । ହେଲେ କାହାରି ସାର୍ଟପ୍ୟାଣ୍ଟ କାହାକୁ ଠିକ୍ ମାପର ହୁଏନି । ସବୁ ବଡ଼ ସାଇଜ୍‌ର । ସେତେବେଳେ ବେଲ୍‌ଟ ବ୍ୟବହାର ଆମକୁ ଜଣା ନ ଥିଲା । ଆମେ ପ୍ୟାଣ୍ଟ ଉପରେ ଅଣ୍ଟାରେ ବାଣି-ଦଉଡ଼ି ରଶି ବାନ୍ଧି ଘଣ୍ଟା ଦି'ଘଣ୍ଟା ଖୁବ୍ ଡିଆଁକୁଦା କରୁ । ବୋଉ ସତର୍କ କରି କହେ- ଜାମାପଟା ଖୋଲି ରଖିଦିଅ । ବଡ଼ ହେଲେ ପିନ୍ଧିବ । ମାମୁ କେଡ଼େ ଶରଧାରେ ଏତେ ଦୂରରୁ ଆଣିଚି । ଥାଉ, ରଖିଦିଅ । ଝିଅମାନେ ପିନ୍ଧନ୍ତୁ । ତାଙ୍କର ଟିକେ ବଡ଼ ହେଲେ ଚଳିବ ।

ଆମେ ଅଜାଘରେ ଥିଲାବେଳେ ସାନମାମୁ କେବେ ଫେରି ନ ଥିଲେ ମିଲିଟାରୀ କ୍ୟାମ୍ପରୁ । ସେ ଫେରିଯିବାର ଦଶ ପନ୍ଦର ଦିନ ପରେ ଥରେ ଆମେ ଯାଇଥିଲୁ ଅଜା ଘରକୁ । ଆଈର କାନ୍ଦ ସେ ପର୍ଯ୍ୟନ୍ତ କମି ନ ଥିଲା । ମଝିରେ ମଝିରେ ଅସରା ଅସରା କୋହ ଉଠୁଥିଲା । ଆଈର ଅନେକ ଭଲ ଗୁଣ ଥିଲା । ସେ କାହାକୁ 'ରେ' ପଦ କହି ଗାଳି ଦିଏନି । ଭାରି ସ୍ନେହୀ । ବଡ଼ି ସକାଳୁ ସ୍କୁଲ ପରୀକ୍ଷା ଦେବାକୁ ଗଲାବେଳକୁ ସେ ରାତିରୁ ପିଠାପଣା କରି ରଖିଥାଏ । ବଳେଇ ବଳେଇ ଖୁଆଏ । ଚୁଡ଼ାଚକୁଳି ଆଉ ମୁଆଁପିଠା ସେ ଖୁବ୍ ବଢ଼ିଆ କରେ । ପରୀକ୍ଷା ଦେଇ ଘରକୁ ଫେରିଲାଯାଏ ସେ ପିଠା ପେଟରେ ଗଡୁଥାଏ ।

ଆଈର କିନ୍ତୁ ଗୋଟାଏ ଅବିଗୁଣ ଥିଲା ।

ଅବିଗୁଣ ନ କହି ଭୁଲାପଣ କୁହାଯାଇପାରେ ।

ଯେମିତିକି ମତେ ଡାକିବାକୁ ଚାହୁଁଥିଲେ ସେ ବଡ଼ରୁ ସାନଯାଏ ସମସ୍ତଙ୍କ ନାଁ କ୍ରମରେ ଡାକିଯାଏ । ଯେମିତି– 'ଆରେ ମୁରଲୀ... ନଟ... ବଟ... ଦିଜ... ରତନା'... !!

ଇଏ ତା'ର ସବୁ ଦିନିଆ କଥା ।

କେହି ଜଣେ ପାଖରେ ଥିଲେ, ଯାଇ ପଚାରେ– 'କାହାକୁ ଡାକୁଛୁ ତୁ ? କାହା ପାଖରେ କି କାମ ?'

ଅଜା ଚିଡ଼ି ଉଠନ୍ତି ।

ତାଙ୍କ ଲେଖାରେ ବାଧା ଉପୁଜେ ।

'ହା–ତୁମ–ଜନମ'... ଏତିକି ଶୁଣିଲା ମାତ୍ରେ ଧରି ନିଆଯାଏ ଯେ, ଅଜାଙ୍କ ଲେଖାରେ ବାଧା ସୃଷ୍ଟି ହେଲା ।

ଆମେ ଦି'ଭାଇ ଅଜାଘରେ ଥିଲାବେଳେ ଆମ ପାଠପଢ଼ା ଜାଗା ନିଆରା କରି ବାଛି ଦିଆଯାଇଥାଏ । ସ୍କୁଲରୁ ଫେରିଲା ପରେ କିମ୍ୱା ଛୁଟିଦିନ ହୋଇ ଥିଲାବେଳେ ଆମ ପାଠ ପଢ଼ା ଜାଗା ଗୋଟେ ଗୋଟେ ଗଛ ଡାଳରେ ସ୍ଥିର କରି ଦିଆଯାଏ । ଗଛ କହିଲେ ଆମ୍ବଗଛ । ଅଜାଙ୍କ ବାଡ଼ିପଟେ ଚାରି ପାଞ୍ଚଟା ଗଛ ଥାଏ । ସେଇଟା ନିକାଞ୍ଚନ ପାଠଶାଳା । ଆମ ସାଙ୍ଗରେ ପଡ଼ିଶାର ସାନଅଜାଙ୍କ ପୁଅ ଧରଣୀ ମାମୁ ଯୋଚା ଯାଇଥାନ୍ତି । ସେ ମୋର ସମବୟସ୍କ । ଗଛରେ ବସି ପଢ଼ିଲେ ପାଠ ଭଲ ମନେରୁହେ ବୋଲି ଆମକୁ କୁହାଯାଇଥାଏ ।

ମୁଁ ପିଲାଦିନେ ଭାରି ନିଦ୍ରାଳୁ ଥିଲି ।

ଏକଥା ଅଜା ଭଲକରି ଜାଣିଥିଲେ ।

ତେଣୁ ସେ ଆଉ ଗୋଟାଏ ବାଧ୍ୟତାମୂଳକ ନିୟମ କରିଥିଲେ । ଗଛରେ ବସି ପଢ଼ିଲାବେଳେ ସମସ୍ତେ ଗୋଟା ଲେଖାଁ ବଡ଼ ଗାମୁଛାରେ ଡାଳ ସହ ନିଜକୁ ବାନ୍ଧିବେ । ଅସଲ କଥା, କାହାକୁ ନିଦ ଆସିଲେ, ଢୁଳ ମାଡ଼ିଲେ ଗଛରୁ ଖସି ପଡ଼ିବା ଭୟ ରହିବ ନାହିଁ । ଏଣେ ଘରେ ଅଜାଙ୍କ ଲେଖାରେ ଗଣ୍ଡଗୋଳ ବି ହେବ ନାହିଁ ।

ସମସ୍ତଙ୍କୁ ବଡ଼ ପାଟିରେ ପଢ଼ିବାକୁ ନିର୍ଦ୍ଦେଶ ଥାଏ ।

ମତେ ଜମା ଭଲ ଲାଗେନି ଏ ବ୍ୟବସ୍ଥା ।

ତଥାପି ଡରିମରି ଏ କାମ କରି ଚାଲେ ।

ମନରେ ଭାବନା ଥାଏ, ଶୀଘ୍ର କେମିତି ଏ ପରୀକ୍ଷା ସରୁ ।

ପରୀକ୍ଷା ସରିଲେ ଅଧିକା ଦିନେ ଓଳିଏ ମୁଁ ମାମୁଘରେ ରହିବାକୁ ଭଲପାଉ ନ ଥିଲି । ଜିଦି କରି ଆମ ଘରକୁ ଚାଲି ଆସୁଥିଲି । ଅବଶ୍ୟ ଏଠି ଖେଳସାଙ୍ଗ / ପଢ଼ାସାଙ୍ଗ ପିଲା ଅନେକ ଥିଲେ । କିନ୍ତୁ ସୁବିଧା ବେଶି ନ ଥିଲା । ଅଜାଙ୍କ ଲେଖାରେ ଗଣ୍ଡଗୋଳ ହେବାର ଭୟ ଥିଲା ବେଶି ।

ସପ୍ତମ ପରୀକ୍ଷା ଶେଷ ବେଳ ।

ଆମେ ରହିଲୁ ସାଲେପୁରରେ ।

ଏହାପରେ ମାମୁଘରେ ଆଉ ରହିବାକୁ ପଡ଼ିନି ।

ଅଜାଙ୍କୁ ପରେ ଭେଟିଚି ଅନେକ ଥର ।

ସେତେବେଳକୁ ତାଙ୍କ ପିଠିରେ ବଡ଼ କୁଜ ବାହାରି ପଡ଼ିଥିଲା । ସେ ନଇଁ ନଇଁ ଚାଲବୁଲ କରୁଥିଲେ । ଇଚ୍ଛା ହେଉଥିଲା ଥଟ୍ଟା କରି କହି ଦେବାକୁ– ଅଜା, ଯୋଉ ପୋଥି ଜୀବନସାରା ଲେଖୁଥିଲ, ଏବେ ତାକୁ ପିଠିରେ ବୋହି ଚାଲିଚ ।

ମାତ୍ର କହିପାରିଲିନି ଏ କଥା ।

ତାଙ୍କ ଗମ୍ଭୀର ମୁହଁ ତପସ୍ୱୀର ସମ୍ମାନ ଜଣାଇବାକୁ ମତେ ବାଧ କରୁଥିଲା ।

।। ତିନି ।।

# ସୃଜନର ପହିଲି ପୁଲକ

ବାସ୍, ଏଇଠି ମୋ ପାଠରେ ଡୋରି ବନ୍ଧା ହୋଇଥାଆନ୍ତା । ହଠାତ୍ ନେମାଳରେ ହାଇସ୍କୁଲଟିଏ ଆରମ୍ଭ ହେଲା । ସେଥିପାଇଁ ପିଲା ଦରକାର । କିଛି ନେତୃସ୍ଥାନୀୟ ବ୍ୟକ୍ତି ଗାଁ ଗାଁ ବୁଲି ପିଲା ସଂଗ୍ରହରେ ଲାଗିପଡ଼ିଥିଲେ । ବିଶେଷ କରି ସପ୍ତମ ପରୀକ୍ଷା ଦେଇଥିବା କିମ୍ବା ସପ୍ତମ ପାସ୍ କରି ଘରେ ରହିଥିବା ପିଲାଙ୍କ ଘରେ ସେମାନେ ପହଞ୍ଚୁଥିଲେ । ସେଇ ସୂତ୍ରରେ ସେମାନେ ଆମ ଘରେ ପହଞ୍ଚିଥିଲେ । ବାପାଙ୍କୁ ଭେଟିଲେ । କହିଲେ, ଆପଣଙ୍କ ପୁଅ ଘରେ ବସିବା ଅପେକ୍ଷା ପଢ଼ା ପିଲାଙ୍କ ସାଙ୍ଗରେ ବସିବ । ସ୍କୁଲ ଖର୍ଚ୍ଚ କିଛି ନାହିଁ କହିଲେ ଚଳେ । ପୁଅ ନାଁ ଅଷ୍ଟମରେ ଲେଖାଇ ଦିଅନ୍ତୁ । ଏକଥା ବାପାଙ୍କୁ ସେମାନେ କହିଲେ । ପୁଣି କହିଲେ– ମନା କରନି । ହାଇସ୍କୁଲଟା ହେଉ । ଆମ ଅଞ୍ଚଳର ନାଁ ହବ । ଲୋକଙ୍କ କଥାରେ ବାପା ଏକ ପ୍ରକାର ରାଜି ହେଲେ । କିନ୍ତୁ ପୂରା ହଁ ଭରିଲେନି । ତାଙ୍କର ଟଙ୍କା ପଇସା ଚିନ୍ତା । ସ୍ଥିର କଲେ, ବଡ଼ପୁଅ ଘରେ ରହିବ । ସେ ଭଲ ପଢୁନି । ଏଇ ବଡ଼ମଝିଆ କଥା ଦେଖିବା । ଘରୁ ଖାଇପିଇ ନେମାଳ ଯା'ଆସ କରିବ, କରୁ । ଯୋଉ ଯାକେ ଯିବ, ଯାଉ ।

ବଡ଼ ନନାଙ୍କ ପାଠପଢ଼ାରେ ଏଇଠୁ ଡ଼ୋରି ବନ୍ଧା ହେଲା । ସେ ଘରେ ରହିଲେ । ଘରବାଡ଼ି କାମ ଓ ବାପାଙ୍କ କବିରାଜି ଧନ୍ଦାରେ ସହଯୋଗ କଲେ । ମୋ ପାଠ ପଢ଼ାରେ ଏତିକିବେଳେ ଖୁବ୍ ସହାୟକ ହେଲେ ମୋର ବଡ଼ ଭିଣୋଇ ଲକ୍ଷ୍ମୀଧର ଶତପଥୀ । ସେ ଦିନେ ଝଡ଼ ଭଳି ଆସି ପହଞ୍ଚିଗଲେ ଆମ ଘରେ । ମୁଁ ନାନୀ ଘରକୁ ପ୍ରଥମ କରି ଯାଇ ୭/୮ ଦିନ ରହି ଆସିଥିବାରୁ ମୋ ପାଇଁ ନୂଆ ପ୍ୟାଣ୍ଟ ସାର୍ଟ ହଳେ କରିଥିଲେ ସେମାନେ । ମୁଁ ତାକୁ ଆଣି ନ ଥିଲି କିମ୍ବା ପିନ୍ଧି ନ ଥିଲି । କାଳେ ବାପା ରାଗିବେ । ନାନୀ ଘରେ ଦିନକୁ ଦି'ଦିନ ରହିବା ଆମକୁ

ମନା । ଝିଅ ଘରେ ବେଶି ରହିବା-ଖାଇବା ପିଇବା ଅନୁଚିତ ବୋଲି ସେ କହନ୍ତି । ମୁଁ ଆଠଦିନ ରହି ବିଧି ଭାଙ୍ଗିଚି । ତେଣୁ ଲକ୍ଷ୍ମୀଧର ଭାଇନା ଘରେ ନ ଥିଲାବେଳେ ମୁଁ ନାନୀକୁ କହି ଚାଲିଆସିଥିଲି ।

ସେତିକିବେଳକୁ ନେମାଳ ହାଇସ୍କୁଲବାଲା ଘରକୁ ଆସି ବାପାଙ୍କୁ ରାଜି କରାଇବା କାମ ଏକରକମ ସାରିଯାଇଥାନ୍ତି । ଭାଇନା ଠିକ୍ ସମୟରେ ଘରେ ହାଜର । ବାପାଙ୍କୁ କହିଲେ- ମୁଁ କାଲି ସାଲେପୁର ହାଇସ୍କୁଲକୁ ଯାଇଥିଲି । ସପ୍ତମ ପରୀକ୍ଷାଫଳ ଆସି ଯାଇଥିଲା । ରତ୍ନାକର କେନ୍ଦୁପାଟଣା ସ୍କୁଲରୁ ଫାଷ୍ଟ ହେଇଚି । ମୁଁ ତା' ପାଇଁ ଅଷ୍ଟମ ଶ୍ରେଣୀ ପଢ଼ାବହି କିଣି ନେଇଆସିଚି । ସେ ଆଗକୁ ପଢୁ । ନେମାଳରେ ହେଉ କି ସାଲେପୁରରେ ହେଉ ।

ବଡ଼ ଜ୍ୱାଇଁଙ୍କ କଥା । ଏଣେ ସ୍କୁଲରେ ଫାଷ୍ଟ ହୋଇଥିବା କଥା ଶୁଣି ବାପା ରାଜି ହେଇଗଲେ । ମତେ ଡାକି କହିଲେ, ହଇରେ, ଲକ୍ଷ୍ମୀଧର ତୋ ପାଇଁ ପଢ଼ାବହି କିଣି ଆଣିଛନ୍ତି । ବହିଯାକ ନେ । ମନ ଦେଇ ପଢ଼ାପଢ଼ି କର । ଯୋଉଠି ପଢ଼ାରେ ଖଇଚା କରିବୁ, ତୋ ପାଠପଢ଼ା ସେଇଠି ବନ୍ଦ । ଶୁଣ୍, ବହି ଦାମ ହିସାବ କରି ବୋଉକୁ ତୋର କହ, ଜ୍ୱାଇଁଙ୍କ ପଇସା; ଆଗ ଶୁଝିଦବ । ଭାଇନା ବାପାଙ୍କ ସାମ୍ନାରେ କିଛି ଉଁ-ଚୁଁ କହିପାରିଲେନି । କିନ୍ତୁ ବୋଉ ପାଖରେ ଆସି ମୁହଁ ଖୋଲି କହିଲେ- ଇଏ କି କଥା ! ରତ୍ନାକର କ'ଣ ମୋର ସାନଭାଇ ନୁହଁ ! ମୁଁ ଜଣେ ଶିକ୍ଷକ । ପାଠପଢ଼ାରେ ସାହାଯ୍ୟ କରିବା ମଧ୍ୟ ମୋର ଧର୍ମ । ପଢ଼ା ପାଇଁ କେଇଖଣ୍ଡ ବହି ଆଣିଦେଲି । ତା'ର ଦାମ ନେବା ମୋ ପାଇଁ ଅପମାନ କଥା ।

ବୋଉ ବୁଝାସୁଝା କରି ପଇସାତକ ତାଙ୍କ ପକେଟରେ ଗୁଞ୍ଜି ଦେଲା । ଉପର ଓଳି ଭାଇନା ଫେରିଗଲେ । ତା'ପରେ ଆରମ୍ଭ ହୋଇଗଲା ମୋର ଅସଲ କସରତ୍ । ମୁଁ ଆଉ ସେ ବହିକୁ ନ ଛାଡ଼େ । ସତରେ, ନୂଆ ବହିର ଗୋଟାଏ ଅପୂର୍ବ ଆକର୍ଷଣୀୟ ମହକ ଥାଏ । ସେ କି ପ୍ରକାର ମହକ ସାଧାରଣ କଥାରେ କହି ହବନି । ସବୁବେଳେ ପାଖରେ ରଖିବାକୁ ଇଚ୍ଛା ହଉଥିବ, ସୁବିଧା ଦେଖି ଶୁଙ୍ଘିବାକୁ ପ୍ରବଳ ଆଗ୍ରହ ହେଉଥିବ । ସତରେ, ସିଏ ଏକ ନିଆରା ଆକର୍ଷଣ । ନୂଆ ବହିର ମହକ ମତେ ପାଗଳ କରି ଦେଉଥାଏ । ଟିକିଏ ସୁଯୋଗ ପାଇଲେ ବହି ଖୋଲି ଶୁଙ୍ଘି ପକାଏ । ତା'ପରେ ପଢ଼ିବାକୁ ବସି ପଡ଼ିଲେ ଖାଇବା ପିଇବା ଭୁଲିଯାଏ ।

ନେମାଳ ହାଇସ୍କୁଲରେ ଯୋଗଦେବା ପରେ ବେଶ୍ କେତେଜଣ ସାଙ୍ଗ ମିଳିଗଲେ, ନଈ ଏପଟୁ ଚାଲିଚାଲି ଯିବାକୁ । ରବି, ନିଶାମଣି, ନନ୍ଦ ଆଉ ମାୟାଧର । ଏମାନଙ୍କ ସାଙ୍ଗରେ ପରିଚିତ ହେବାକୁ ମତେ ଗୋଟାଏ ଦିନ ବି ଲାଗିଲାନି । ବର୍ଷାଦିନେ ଚିତ୍ରୋପ୍ତଳା କୂଳେ ଏକାଠି ହୋଇ ନଈ ପାରି ହେଉ । ଏଠି ନଈ ଭାରି ଅଣଓସାରିଆ । ଚାହୁଁ ଚାହୁଁ ବର୍ଷାଋତୁ ଚାଲିଯାଏ । ଶୀତ ଆସେ । ନଈ ପାରି ହେବାକୁ ବାଧେନି । ମାତ୍ର କିଛିଦିନ ପରେ ଋତୁମାନେ/ଦେଖିଥିବା ଦୃଶ୍ୟମାଳା ସବୁ ଭାରି ମନେପଡ଼ିଲେ । ସେମାନଙ୍କ ଅନୁଭବ ମୋ ଭିତରେ ବଞ୍ଚି ଉଠି ଡାଳପତ୍ର ମେଲିଲେ । ଆଲୁଅ ଦେଖିବା ପାଇଁ ବିକଳ ହେଲେ । ଏଣେ ପ୍ରତିଦିନ ସନ୍ଧ୍ୟାରେ ଆମ ଭାଗବତ ଘରେ ପୋଥି ପଢ଼ା ମୋ ପାଇଁ ଏକ ବାଧ୍ୟତାମୂଳକ ବିଷୟ ହୋଇସାରିଥିଲା । ଆମ ଭାଗବତ ଘରେ ପ୍ରତିଦିନ ଗାଁରୁ କିଛି ଲୋକ ଆସି ଜମି ଯାଉଥିଲେ । ଆଗେ ବାପା ପୋଥି ପଢୁଥିଲେ । ମୁଁ ପଢ଼ି ପାରିଲା ପରେ ସେ କାମ ମୋର ସବୁଦିନିଆ ହୋଇଗଲା । କଦବା କେମିତି ଗୋଟେ ଅଧେ ଛାପା ବହି ଆମ ଅଞ୍ଚଳରେ ସେତେବେଳକୁ ପହଞ୍ଚି ଯାଇଥିଲେ ବି ତାହା ଧରାଯାଉଥିଲା ପ୍ରମାଦପୂର୍ଣ୍ଣ । ତାହା ପଢ଼ିବା ଧର୍ମ- କାମ ନୁହେଁ ବୋଲି ବାପାଙ୍କର ବିଶ୍ୱାସ । ତେଣୁ ପୋଥିପାଠ ଏକ ଧାର୍ମିକ କାମ ରୂପେ ମୋ ଗଳାରେ ଝୁଲି ପଡ଼ିଲା ।

ତା'ରି ଭିତରୁ ହଠାତ୍ ଦିନେ କବିତାର ଜନ୍ମ । ଅନେକ କବିତା ଲୁଚେଇ ଲୁଚେଇ ଲେଖିଲି । ବାପା-ବୋଉ ଜାଣିଲେ ମୋ ଅବସ୍ଥା ବାରଗଣ୍ଡା ଦି'କଡ଼ା କରି ଦିଅନ୍ତି । ମୁଁ ଦ୍ୱନ୍ଦ୍ୱରେ ପଡ଼େ । ମୋତେ ବୁଝିପାରେନି ଏ କଥାର ରହସ୍ୟ । ପାଠପଢ଼ା ଛାଡ଼ି ପୋଥି ପଢ଼ିଲେ ବେଦ ଅଶୁଦ୍ଧ ହୁଏ ନାହିଁ; ଧାର୍ମିକ କାମ । କିନ୍ତୁ ପାଠ ଛାଡ଼ି କବିତା ଲେଖିଲେ ପିଲା କୁଳାଙ୍ଗାର ହେଇଯାଏ । ମୋ ପଢ଼ାବହି ଓ ଖାତା ଭିତରୁ କବିତାକୁ ଆବିଷ୍କାର କରି ବୋଉ କେତେଥର ମତେ ନିର୍ଘୁମ ପିଟିଚି । ତଥାପି ଏ ବ୍ୟାଧି କବଳରୁ ମୁଁ ନିସ୍ତାର ପାଇପାରିଲିନି । ଥରେ ମୋ ସାଙ୍ଗ ମାୟାଧର ସହିତ ବାଜିରଖି ଆମ ସ୍କୁଲର ଜଣେ ଝିଅର ନାଁକୁ କ୍ରମିକ ଆଦ୍ୟ ଅକ୍ଷରରେ ରଖି ଗୋଟାଏ ଛନ୍ଦ କବିତା ଲେଖି ପକାଇଥିଲି । ମାୟାଧର ସେ କବିତାଟି ଭଲ ହେଇଚି କହି ମୋ'ଠୁଁ ନେଇ ସେ ଝିଅର ବଡ଼ ଭାଇକୁ ଦେଇଦେଲା । ତା' ଭାଇ ମତେ ଗୁଡ଼ିଏ ଭଦ୍ର ଗାଳି ଦେଇଥିଲା ଓ କବିତାଟିକୁ ଚିରି ଫିଙ୍ଗି ଦେଇଥିଲା । ମୋର ସେ ଗାଳି ଶୁଣି ଯେତିକି ମନ ଦୁଃଖ ହେଇନଥିଲା, ତା'ଠୁଁ ବେଶି ଦୁଃଖ

ହେଇଥିଲା ସାଙ୍ଗଟିର କୃତକର୍ମ ପାଇଁ । ଜୀବନରେ ମୁଁ କୋଉଠି କି ଜିତାପଟ ପାଇଲି କି ନା ଏଯାଏ ଜାଣିପାରିଲିନି; କିନ୍ତୁ ମୋର ଏଇ ସାଙ୍ଗଟି ଏକାଧିକ ଥର ଏମ୍.ଏଲ୍.ଏ. ହୋଇ ରାଜନୀତିରେ ବାଜି ଜିତିଥିଲା । ସିଏ ତା' ପାଇଁ ସଫଳତା ।

ଗାଆଁରେ ସନ୍ଧ୍ୟା ଆଠଟା ହେଇଗଲେ ବହୁତ ରାତି । ଖାଇପିଇ ଶୋଇ ପଡୁଥିଲି । ରାତିରେ ଉଠି ପାଠ ପଢ଼ିବା ପାଇଁ ପାଖରେ ମିଞ୍ଜି ମିଞ୍ଜି କରି ଲଣ୍ଠନ ଜଳେଇ ରଖୁଥିଲି । ଯା' ଭିତରେ ଆମେ ଲଣ୍ଠନ ଯୁଗରେ ପହଞ୍ଚି ଯାଇଥିଲୁ । ରାତିରେ ନିଦ ତ ପ୍ରାୟ ଭାଙ୍ଗେନା । ଦିନେ ଦିନେ ଅକସ୍ମାତ୍ ନିଦ ଭାଙ୍ଗିଗଲେ ଦେଖେ, ମାଳମାଳ ଆମ୍ବ ନଡ଼ିଆ ଗଛର ପତ୍ର ଉପରେ ଅଜାଡ଼ି ହେଇ ପଡ଼ିଥାଏ ତରଳା ଜହ୍ନ କିରଣ; କିମ୍ବା ମାଇଲ ମାଇଲ ଲମ୍ବା ଗହୀର ପାଟ ଟପି ନିର୍ଜନତାର ଛାତି ଛୁଇଁ ଶୁଭିଯାଏ କାହାର ଅସହାୟ ଡାକରା । ସେଇ ନିଃସଙ୍ଗ ମୁହୂର୍ତ୍ତ ମତେ ପ୍ରେରଣା ଦିଏ କିଛି ଗୋଟେ ଲେଖି ପକାଇବାକୁ । ସେତିକିବେଳେ ମୁଁ ଲେଖୁଥିଲି ଲୁଚେଇ ଲୁଚେଇ । ମନେ ପଡୁଚି, ଯୋଉ ଥରକ ପ୍ରଜାତନ୍ତ୍ର ମୀନାବଜାରରେ ମୋର କବିତାଟିଏ ବାହାରି ପଡ଼ିଲା– 'ନୂଆ ବରଷର ନୂଆ ସକାଳ'– ସେ ରାତିରେ ମତେ ନିଦ ହେଲାନି ମୋଟେ । ବାରମ୍ବାର ଛାପା ଅକ୍ଷରରେ ମୋ ନାଁଟାକୁ ମୁଁ ଦେଖୁଥିଲି; ଖୁସି ଆନନ୍ଦରେ ବିହ୍ୱଳ ହେଇପଡୁଥିଲି । ଭାବୁଥିଲି, ପୃଥିବୀର (ନାଁ ମ ଓଡ଼ିଶାର) କୋଟି କୋଟି ଲୋକ ଆଜି ମୋ ନାଁ ପଢୁଥିବେ । ସ୍କୁଲରେ କାଲି ମୋର ସାଙ୍ଗମାନେ ମତେ ନାନା କଥା ପ୍ରଶ୍ନ କରିବେ । ଇସ୍, କି ମଜା ହବ ! କିନ୍ତୁ ଏମିତି କିଛି ହେଲା ନାହିଁ । ସ୍କୁଲରେ କେହି ମତେ କିଛି ପଚାରିଲେନି । ଶେଷରେ ମୁଁ କାଗଜଟିକୁ କାଢ଼ି କେତେଜଣକୁ ଦେଖାଇଲି । ଜଣେ ସାଙ୍ଗ କହିଲା, ତା' ମାମୁଘର ଗାଁରେ ରତ୍ନାକର ଚଇନି ନାଁରେ ଆଉ ଜଣେ ଯୁବକ ଅଛି । ସମସ୍ତେ କହନ୍ତି– ସିଏ ଭାରି ପଣ୍ଡିତ । ସେଇ ଏଇଟା ଲେଖିଚି, ମୁଁ ଜାଣେ । ଇଏ ନୁହଁ । ଇଏ ତୁଚ୍ଛା ମୁହଁଟାଣ କାଢୁଚି । ଏସବୁ କଥା ଶୁଣି ମୁଁ ଚୁପ୍ ରହିଲି । ଭାବିଲି, ଗୋଟାଏ ଦିଗରୁ ଭଲ ହେଲା । ବୋଉ ନ ଜାଣୁ ମୁଁ ଲେଖୁଚି ବୋଲି । ଏଣିକି ଜଣାପଡ଼ିଲେ ତା'ରି ନାଁ କହି ପାର ପାଇଯିବି ।

ଅବଶ୍ୟ ପ୍ରଥମ ଅନୁଭୂତି ସ୍ମୃତି ପଖଳା ହେଇ ରହିଯାଏ ଚିରଦିନ । ମଝିରେ ମଝିରେ ସମୟର ବିସ୍ତୃତ ସରହଦ ଟପି ପହଁରି ପହଁରି ସେ ଚାଲିଆସେ ବର୍ତ୍ତମାନ ପର୍ଯ୍ୟନ୍ତ । ସେଦିନର ପ୍ରାଣଛୁଆଁ ସେଇ ଅପୂର୍ବ ଅନୁଭବ ଆଉ କେବେ ମୋ ପାଖକୁ

ଆସିଚି, କାଇଁ ମୋର ମନେପଡୁନି । ରାଶିରାଶି ଲେଖା, ଅସଂଖ୍ୟ ବହି ପ୍ରକାଶ ପାଇଲେ ମଧ୍ୟ ସେଦିନର ଭାବନା ଓ ପୁଲକ ଚିର ଅଭୁଲା ।

ଅବଶ୍ୟ ପାଠକୀୟ ପ୍ରତିକ୍ରିୟା ଲେଖକ ଜୀବନରେ ପ୍ରଚୁର ଆନନ୍ଦ ଓ ପ୍ରେରଣା ଦିଏ । ନାଟ୍ୟକାର ଭାବରେ 'ଶେଷ ଅଶ୍ରୁ', 'ରାଜହଂସ', 'ଅଥଚ ଚାଣକ୍ୟ' ଆଦି ପାଇଁ ଯେଉଁ ପ୍ରଶଂସା ଓ କରତାଳି ପାଇଚି ତାହା ଆତ୍ମବିଶ୍ୱାସର ଏକ ଏକ ସଫଳ ପାହାଚ । ମାତ୍ର ସବୁଠୁଁ ଭଲ ଲାଗିଚି ଅଣଓଡ଼ିଆ ଲୋକଙ୍କର ପାଠକୀୟ ପ୍ରତିକ୍ରିୟା । ଅନେକ ଗଳ୍ପ ଓ ଛୋଟ ନାଟକ ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା, ମାଲୟାଲମ୍, ଅସମୀୟା ଆଦି ଭାଷାରେ ଅନୂଦିତ ହେଇ ପ୍ରକାଶ ପାଇଚି । ବିଭିନ୍ନ ପତ୍ରପତ୍ରିକାରେ ସେଗୁଡ଼ିକ ଆତ୍ମପ୍ରକାଶ କରିବା ପରେ ସେଇ ସେଇ ଅଞ୍ଚଳର ପାଠକଙ୍କ ମତାମତ ଭିତ୍ତିକ ପତ୍ର ବେଶ୍ ଚମତ୍କାର ଲାଗିଚି ।

ଚଉରାଅଶି କି ପଞ୍ଚାଅଶି ଠିକ୍ ମନେ ପଡୁନି । ମୋର ଗୋଟିଏ ଗଳ୍ପ 'ଗୋଟିଏ ଠକ ପିଲାର କାହାଣୀ' ମାଲୟାଲମ ମନୋରମାରେ ପ୍ରକାଶ ପାଇଥାଏ । ପତ୍ରିକାଟି ମୋ ପାଖକୁ ଆସିଲା ପୋଷ୍ଟରେ । ତା' ସହିତ ମାନଦେୟ ଦୁଇଶହ ଟଙ୍କା ମଧ୍ୟ । କିଛିଦିନ ଭିତରେ ଅସଂଖ୍ୟ ଚିଠି । କଟକ କଲେଜ ଛକର 'ସ୍ନାକୋ' ଦୋକାନର ମାଲିକ ଯେ ଜଣେ କେରଳୀ, ମୁଁ ଜାଣି ନ ଥିଲି । ଲେଖାଟି ପଢ଼ି ତାଙ୍କର ଯେଉଁ ଗଦ୍‌ଗଦ୍ ଭାବ, ତାହା ଅବିସ୍ମରଣୀୟ । ସବୁଠୁଁ ଆନନ୍ଦର କଥା, ରହମାନ ସର୍କସ ସେତେବେଳେ କଟକକୁ ଆସିଥିଲା । ତାହାର ମାଲିକ ଶ୍ରୀଯୁକ୍ତ ମେନନ୍ କେରଳରୁ ଏକ ଦୀର୍ଘ ପ୍ରଶଂସାପୂର୍ଣ୍ଣ ପତ୍ର ସହିତ ସର୍କସ ଦେଖିବା ପାଇଁ ଫାମିଲି ପାଶ୍ ପଠାଇଥିଲେ ମୋ ପାଖକୁ ଏବଂ ସେ କଟକ ଆସିଲାବେଳେ ମୋତେ ସାକ୍ଷାତ୍ କରିବା ପାଇଁ ଅନୁମତି ମାଗିଥିଲେ ।

ଏସବୁକୁ ଛାଡ଼ିଦେଲେ, ମୋର ମନେହୁଏ, ଲେଖିବା ଗୋଟାଏ ନିଶା–ଏକ ପାଗଳାମି । ଯେଉଁ ପ୍ରଥମ ପ୍ରେମର ଅନୁଭୂତି ନେଇ, ଲେଖକ ପାଗଳ ହୁଏ, ମରିବା ପର୍ଯ୍ୟନ୍ତ ବୋଧେ ତାହା ସବାର ହେଇ ରହିଯାଏ । କେହି କିଛି ନ କହିଲେ ବି, କେହି ପ୍ରଶଂସା ନ କଲେ ବି, ତାଳି ନ ମାରିଲେ ବି, ଲେଖକ ନିଶ୍ଚୟ ଲେଖିବ । କାରଣ ପ୍ରଥମ ଦିନରୁ ତା'ର ଅତୀନ୍ଦ୍ରିୟ ଚେତନାରେ ଯାହା ସବାର ହେଇଥାଏ, ତାହା ଆଉ କେବେ ଓହ୍ଲାଏନି । ପରେ ତାହା ହୃଦୟରେ ଚିରଦିନ ଅଶାନ୍ତ ଲହରୀ ହୋଇ ରହିଯାଏ । ବିଚାରା ଲେଖକ ଯନ୍ତ୍ରଣାର କଣ୍ଟା–ମୁକୁଟପିନ୍ଧା ଏକ ଅପ୍ରତିହତ ସମ୍ରାଟ ପାଲଟିଯାଏ ।

।। ଚାରି ।।

# ଆମ ପାଢ଼ୀ ସାର୍

ମୋ ପାଇଁ ସୂର୍ଯ୍ୟନାରାୟଣ ପାଢ଼ୀ ଏକ ପବିତ୍ର ନାମ ।

ଯେତେବେଳେ ମୋ ଜାଣତରେ ଅବା ଅଜାଣତରେ ଏଇ ନାଁଟି ଶୁଣେ ବା ଉଚ୍ଚାରଣ କରେ, ଏକ ତ୍ୟାଗପୂତ ପାବନ ବ୍ୟକ୍ତିତ୍ୱଟି ମୋ ଆଗରେ ମୂର୍ତ୍ତିମାନ୍ ହୋଇଉଠନ୍ତି । ଏଇ ଦେବୋପମ ଚେହେରା ମୋର ଅତି ପ୍ରିୟ ପ୍ରଧାନ ଶିକ୍ଷକଙ୍କର । ଯିଏ କଞ୍ଚାମାଟିକୁ ନେଇ କେତୋଟି ଭଲ ମଣିଷର କଣ୍ଢେଇ ଗଢ଼ିବାକୁ ସେଦିନ ସ୍ୱପ୍ନ ଦେଖୁଥିଲେ । ତାଙ୍କ ଆଦର୍ଶ ଓ ନିଷ୍ଠା ଅନୁସାରେ ଆମେମାନେ ଗଢ଼ି ହେଇପାରିଲୁ କି ନାଁ ମୁଁ ଜାଣେନା । ଜାଣିଥିଲେ ଜାଣିଥିବେ ସେ ନିଜେ । ମାତ୍ର ସେ ଚିରକାଳ ପାଇଁ ଆମମାନଙ୍କ ନିକଟରେ ଆଦର୍ଶ ବ୍ୟକ୍ତିତ୍ୱର ଏକ ମାପକ ହୋଇ ରହିଗଲେ ।

କଟକ ଜିଲ୍ଲାର ଚିତ୍ରୋତ୍ପଳା ନଈକୂଳରେ ନେମାଳ ଗାଁ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ଜନନାୟକ ସୁରେନ୍ଦ୍ରନାଥ ପଟ୍ଟନାୟକ ଏଠାରେ ହାଇସ୍କୁଲଟିଏ ଗଢ଼ିବାର ଆଗ୍ରହ କରିଥିଲେ ଓ ସ୍ୱପ୍ନ ଦେଖିଥିଲେ । ସେହି ସ୍ୱପ୍ନକୁ ସାକାର କରିବାକୁ ମିଳିଗଲେ ଗାନ୍ଧିବାଦୀ ଆଦର୍ଶରେ ଅଭିମନ୍ତ୍ରିତ ଏକ ସାଲିସହୀନ ବ୍ୟକ୍ତି ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ପାଢ଼ୀ । ଆଣ୍ଠୁଲୁଚା ଲୁଗା, ଦିହରେ ଖଦଡ଼ର ଫତେଇ; ପାଦରେ କଠଉ । ବଡ଼ ବଡ଼ ଆଖି; ଛୋଟ ଛୋଟ ମୁଣ୍ଡବାଳ । ସୌମ୍ୟକାନ୍ତ ଚେହେରା, ମିଠା ମିଠା କଥା; ଅଥଚ ଭରପୂର ଶାସନ କରିବାର ସ୍ୱର । କିଛି ପାଇବାର ଅଭିଳାଷ ଧରି ସେ ଯେମିତି କୋଉଠି କିଛି କରୁ ନ ଥିଲେ, ମାତ୍ର ଅନେକ କିଛି ଦେଇଯିବାର ସଂକଳ୍ପ ତାଙ୍କର ଥିଲା । ପ୍ରଚୁର ସ୍ନେହ ଓ ସଦିଚ୍ଛା ଥିଲା ତାଙ୍କର ସଂପଦ । ସତେ ଯେମିତି ଜଣେ ବୈଦିକ ଯୁଗର ଆଚାର୍ଯ୍ୟ କୌଣସି ଅଭିଶପ୍ତ

ଜୀବନ ବିତେଇବା ପାଇଁ ଏହି ଅପାଣ୍ଡବା ଅଞ୍ଚଳରେ ଛଦ୍ମ ଭାବରେ ଆସି ପହଞ୍ଚି ଯାଇଛନ୍ତି ।

ପ୍ରତିଦିନ ବିଦ୍ୟାଳୟର ଦିନଚର୍ଯ୍ୟା ଆରମ୍ଭ ହୁଏ ପ୍ରାର୍ଥନାରୁ ।

ମନେପଡୁଚି, ଦୁଇଟି ଆଦର୍ଶ ପ୍ରାର୍ଥନାର କଥା । ଗୋଟିଏ ରାମକୃଷ୍ଣ ନନ୍ଦଙ୍କର 'ଆହେ ଦୟାମୟ ବିଶ୍ୱ ବିହାରୀ' ଏବଂ ଆଉ ଗୋଟିଏ ଗୋପବନ୍ଧୁ ଦାସଙ୍କ 'ଧର୍ମପଦ' ଗ୍ରନ୍ଥରୁ ନିର୍ବାଚିତ 'ନମୋ ନିରଂଜନ, ନିଖିଳ ନିଧାନ, ବ୍ୟାପ୍ତ ସାରା ଚରାଚର ।' ଶିକ୍ଷକ, ଛାତଛାତ୍ରୀ ସମସ୍ତେ ପ୍ରାର୍ଥନା ସଭାରେ ଯୋଗ ଦେବାକୁ ବାଧ୍ୟ ।

ତା'ପରେ 'ଆଜିର କଥା' ବ୍ଲାକ୍‌ବୋର୍ଡ଼ରେ ଲେଖାଯାଏ । ନିଜେ ପ୍ରଧାନ ଶିକ୍ଷକ ସେଦିନର ମୁଖ୍ୟ ଖବର ସବୁକୁ ଲେଖିଦେଇଥାନ୍ତି ଖବରକାଗଜରୁ କିମ୍ବା ରେଡ଼ିଓରୁ ସଂଗ୍ରହ୍ କରି । ରେଡ଼ିଓ ଏତେ ଛୋଟ ଆକାରର ଅଛି ବୋଲି ମୋର ଧାରଣା ନ ଥିଲା । ପାଢ଼ୀ ସାର୍‌ଙ୍କ ଛୋଟ ରେଡ଼ିଓ ଦେଖିବା ପରେ ମୁଁ ଜାଣିଲି । ଖାଇବା ଛୁଟିବେଳେ ସେ ରେଡ଼ିଓରୁ ଗୀତ ଓ ସଂବାଦ ଶୁଣିବାକୁ ଆମେ ସୁଯୋଗ ପାଉଥିଲୁ ।

ଆମ ଅଞ୍ଚଳ ସାରା ପାଢ଼ୀ ସାର୍ ଜଣେ ଆଦର୍ଶ ଶିକ୍ଷକ ଓ ଭଲ ମଣିଷ ରୂପେ ପରିଚିତ ହୋଇଯାଇଥିଲେ । ଭଲରେ ମନ୍ଦରେ ଲୋକେ ତାଙ୍କ ପାଖକୁ ପରାମର୍ଶ ପାଇଁ ଆସି ଯାଉଥିଲେ । ବିବାହ ବ୍ରତ କିମ୍ବା ଉତ୍ସବମାନଙ୍କରେ ତାଙ୍କୁ ନିମନ୍ତ୍ରଣ କରି ନେବା ଏକ ଆଭିଜାତ୍ୟର ଉଦାହରଣ ହୋଇଯାଇଥିଲା । ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନ ନେମାଳରେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଦିବ୍ୟଦର୍ଶନର ପର୍ବ ପାଳିତ ହୁଏ । ତିନିଦିନ ଧରି ମେଳା ମହୋତ୍ସବ ଚାଲେ । ହଜାର ହଜାର ଲୋକଙ୍କ ମେଳନ ଘଟେ । ଥରେ ପାଢ଼ୀ ସାର୍ ସେତିକିବେଳକୁ ନାଟକାଭିନୟର ବନ୍ଦୋବସ୍ତ କଲେ । ଉଦ୍ଦେଶ୍ୟ ଥିଲା କିଛି ପାଣ୍ଠି ସଂଗ୍ରହ କରି ସ୍କୁଲ ଘର କାମରେ ଲଗେଇବା । ଆମକୁ ପାର୍ଟ କରିବାକୁ ପ୍ରେରଣା ଦେଇଥିଲେ ସେ । ଅଭିନୟ ଶିଖାଇଥିଲେ । ମାୟାଧର ସେଠି ମୋର ସହପାଠୀ ଥିଲା । ଅଳ୍ପଦିନ ତଳେ ଦୁର୍ଘଟଣାରେ ତା'ର ଅପମୃତ୍ୟୁ ଘଟିଗଲା । ବହୁବାର ଏମ୍.ଏଲ୍.ଏ. ହୋଇଥିଲା ସେ । ତାକୁ ପାଢ଼ୀ ସାର୍ ଗୋଟେ ଟାଉଟର ରୋଲ୍ ଦେଇଥିଲେ । ଆମେ ତାକୁ ଚିଡ଼ୋଉଥିଲୁ– ତୋ ଗୁଣ ଚିହ୍ନି ସାର୍ ତତେ ଟାଉଟର ରୋଲ୍ ଦେଇଛନ୍ତି । ବିଚାରା ଆମ୍ ଗହଣରୁ ଚାଲିଗଲାଣି ।

ହସି ଦିଏ । ସାର୍‌ଙ୍କ ବିଷୟରେ ପଦେ କଥା କିଛି କହିବାର ସାହସ କାହାର ନ ଥିଲା । ତା'ର ବି ନ ଥିଲା ।

ସାର୍‌ଙ୍କ ପାଠପଢ଼ା ଧାରା ଏକବାରେ ନିଆରା । ଏମିତି ପଢ଼ାନ୍ତି ଯେ, ମନଦେଇ ଶୁଣିଥିଲେ ଆଉ ବିଶେଷ ପଢ଼ିବାକୁ ଦରକାର ପଡ଼େ ନାହିଁ । ତାଙ୍କ ପାଠପଢ଼ା ମନରେ ଛାପି ହୋଇ ରହିଯାଏ । ପାଢ଼ୀ ସାର୍ ଇଂରାଜୀ ପଢ଼ାନ୍ତି । ମୋର ଇଂରାଜୀ ଭଲ ହଉ ନ ଥିଲା । ଆମ ବେଳେ ନୋଟ୍ ବହି ବା ଟେଷ୍ଟ୍ ପେପର୍ ଦେଖିବାକୁ ମିଳି ନ ଥିଲା । ସାର୍‌ଙ୍କ ପଢ଼ା ହିଁ ଏକମାତ୍ର ଅବଲମ୍ବନ । ମାଟ୍ରିକ୍ୟୁଲେସନରେ ଭଲ ନମ୍ବର ରଖି ପାଶ୍ କରିଥିଲି । କିନ୍ତୁ ଇଂରାଜୀରେ ବେଶି ନମ୍ବର ନ ଥିଲା । ପାଢ଼ୀ ସାର୍ ଉପଦେଶ ଦେଇଥିଲେ- 'ସାଇନ୍‌ସ ପଢ଼ । ଟେକ୍‌ନିକାଲ ଲାଇନ୍ ଧର । ଇଂରାଜୀରେ ଭଲ କରୁନ;  ଆଡ଼ମିନିଷ୍ଟ୍ରେସନ ଲାଇନ୍‌ରେ ଉଧେଇ ପାରିବନି ।'

ପାଢ଼ୀ ସାର୍ କେବଳ ପିଲାମାନଙ୍କୁ ଜାଣୁ ନ ଥିଲେ, ଜାଣୁଥିଲେ ତାଙ୍କ ପରିବାର ଓ ପରିବେଶକୁ । କାହାର କି ପରିସ୍ଥିତି, ପାରିବାରିକ ସ୍ୱଚ୍ଛଳତା କିପରି, ସବୁକିଛିର ଚିତ୍ର ଥିଲା ତାଙ୍କ ନଖଦର୍ପଣରେ । ପିଲାଟି ତାଙ୍କ ଆଖି ଆଗରୁ ଫାଙ୍କି ଦେଇ କୁଆଡ଼େ ଯିବା ସମ୍ଭବ ନ ଥିଲା । ପାରିବାପଣିଆ ଓ ପରିସ୍ଥିତିକୁ ଦୃଷ୍ଟିରେ ରଖି ସେ ପିଲାଙ୍କୁ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଉଥିଲେ । ତାଙ୍କ କଥାରେ ରୁକ୍ଷତା ନ ଥିଲା; ମାତ୍ର ଗୁରୁଜନ ସୁଲଭ ଆଦେଶ ରହୁଥିଲା । ଅନେକ ହସ-ଖୁସି ମୁହୂର୍ତ୍ତରେ ସେ ନିଜ ସାନଭାଇ କିଶୋରଙ୍କ କଥା ଓ ଆସନ୍ନପ୍ରସବା ଗୁରୁପତ୍ନୀଙ୍କ କଥା ଲଘୁ ପରିହାସ ଛଳରେ ଉପସ୍ଥାପନ କରୁଥିଲେ । ଗୋଟେ ଆଦର୍ଶ ପାରିବାରିକ ଜୀବନର ଝଲକ ତାଙ୍କର ସେ କଥା ଭିତରୁ ଫୁଟି ଉଠୁଥିଲା ।

ଦିନକର କଥା, ମୁଁ କଦାପି ଭୁଲି ପାରିବି ନାହିଁ ।

ସ୍କୁଲ ସରକାରୀ ମଂଜୁରୀ ପାଇବା ଅବସରରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ଅତିଥି ରୂପେ ଆସୁଥାଆନ୍ତି । ପନ୍ଦର ଦିନ ଆଗରୁ ସବୁ ପ୍ରସ୍ତୁତି ଚାଲିଥାଏ । ପାଢ଼ୀ ସାର୍ ଭାରି ବ୍ୟସ୍ତ ହୋଇପଡ଼ିଥାନ୍ତି । ତାଙ୍କ କ୍ଲାସ୍ ମଝିରେ ମଝିରେ ଅନ୍ୟ ସାର୍ ନେଉଥାନ୍ତି । ଆମକୁ ଏ କଥା ଆଶ୍ଚର୍ଯ୍ୟ ଲାଗୁଥାଏ । ଏଭଳି କେବେ ହୁଏ ନାହିଁ । ସେ କେବେ କ୍ଲାସ୍‌କୁ ଡେରିରେ ଆସନ୍ତି ନାହିଁ; କିମ୍ବା କ୍ଲାସ୍ ଛାଡ଼ି ଅଧାରୁ ଯାଆନ୍ତି ନାହିଁ । ଦେହ ଖରାପ ଯୋଗୁଁ ଛୁଟିରେ

ରହିବା କଥା ଆମେ କେହି କେବେ ଶୁଣିନାହୁଁ । ତେଣୁ ସାର୍ ସ୍କୁଲରେ ଥାଇ କ୍ଲାସ୍‌କୁ ନ ଆସିବା ଆମକୁ ଅଖାଡୁଆ ଲାଗୁଥିଲା । ମୁଖ୍ୟମନ୍ତ୍ରୀ ଆସିବାର ଦି' ଦିନ ପୂର୍ବରୁ ସାର୍ ହଠାତ୍ ମତେ କହିଲେ— ତମେ ମୁଖ୍ୟମନ୍ତ୍ରୀଙ୍କ ବେକରେ ଫୁଲମାଳ ଦେବ । ତମେ ତମ କ୍ଲାସ୍ ପିଲାଙ୍କ ଭିତରେ ଡେଙ୍ଗା ଅଛ । ସେଦିନ ସଫାସୁତୁରା ଜାମାପେଣ୍ଟ ପିନ୍ଧି ଆସିବ ।

ସାର୍‌ଙ୍କ ଆଦେଶ । ଉଁ–ଚୁଁ ହେବାର ଯୁ ନାହିଁ । ଦି'ଦିନ ଆଗରୁ ସବୁ ପ୍ରସ୍ତୁତ । ମହତାବଜୀ କଫି ଖାଆନ୍ତି । କଫି କିଏ ତିଆରି କରି ଜାଣେ, ଖୋଜା ପଡ଼ିଲା । ଆମ ଅଞ୍ଚଳର ଲୋକେ କଫି ନାଁ ଶୁଣିଥିଲେ । କିନ୍ତୁ କଫି କ'ଣ ଓ ତାହା କେମିତି ତିଆରି ହୁଏ କେହି ଜାଣି ନ ଥିଲେ । ତା' ଛଡ଼ା ମୁଖ୍ୟମନ୍ତ୍ରୀ ଆସିଲାବେଳକୁ ତାହା ଗରମ ରହିବ କିପରି, ସେ ଚିନ୍ତା ସାର୍‌ଙ୍କ ମୁଣ୍ଡକୁ ତେନ୍ତୁଳିଆ ବିଛା ଭଳି କାମୁଡୁଥିଲା । ଶେଷକୁ ସୁରେନ୍ଦ୍ର ପଟ୍ଟନାୟକଙ୍କ ପୁଝାରୀଙ୍କୁ ଡକାଗଲା । ସେ କଫି ତିଆରି କରିବାକୁ ପ୍ରସ୍ତୁତ ହୋଇ ରହିଲେ । ଗୋଟିଏ କିରୋସିନ ଷ୍ଟୋଭ୍ ମଧ୍ୟ ଅଣା ହେଲା । ପିଲାମାନେ ରାସ୍ତା ଦୁଇପଟେ ଦୁଇଧାଡ଼ି ହୋଇ ଠିଆହୋଇ ରହିଲେ । ମୋ କାମ ପ୍ରଧାନ ଶିକ୍ଷକଙ୍କ ପାଖରେ ବଡ଼ ଫୁଲମାଳଟିଏ ଧରି ଠିଆ ହେବା । ସାର୍ ଯେତେବେଳେ କହିବେ, ଯାହା ବେକରେ ମାଳା ପକାଇବା ପାଇଁ, ମୁଁ ପକାଇବି ।

ସେଦିନର ଦିନ ତିନିଟା ପାଖାପାଖି ବେଳ ।

ହରିବୋଲ ଓ ଜିନ୍ଦାବାଦ ଧ୍ୱନିରେ ଚାରିଆଡ଼ ଉଚ୍ଛୁଳି ଉଠିଲା ।

ଆଗେ ଆଗେ ଗୋଟିଏ ଗାଡ଼ି । ପଛରେ ଆହୁରି କେତେଟା ଗାଡ଼ି । ପ୍ରଥମ ଗାଡ଼ିଟି ଆସି ସ୍କୁଲ ଗେଟ୍ ପାଖରେ ଅଟକିଗଲା । ସେଥିରୁ ଓହ୍ଲାଇ ପଡ଼ିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ୍ । ଅନ୍ୟମାନେ ଫୁଲମାଳ ଦେବା ପୂର୍ବରୁ ଛାତ୍ରମାନଙ୍କ ତରଫରୁ ମତେ ଫୁଲମାଳ ଦେବାକୁ ପଡ଼ିବ । ପାଢ଼ୀ ସାର୍ ନିର୍ଦ୍ଦେଶ ଦେଲେଣି– 'ରତ୍ନାକର ! ଫୁଲମାଳ ।' କିନ୍ତୁ ଇଏ କ'ଣ ? ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚି ସାରିଥିଲେ ବି ତାଙ୍କ ବେକ ପାଖକୁ ମୋ ହାତ ପାଉନି । ମୁଁ କ'ଣ କରିବି ଭାବିପାରିଲିନି । ଆଖିରେ ଲୁହ ଭରିଗଲା । ପଛରୁ ସାର୍‌ଙ୍କ ନିର୍ଦ୍ଦେଶ ଶୁଭୁଥାଏ ବାରମ୍ବାର– 'ରତ୍ନାକର ! ଫୁଲମାଳ ।'

କାନ୍ଦି ପକାଇଲି ମୁଁ । ମୁଖ୍ୟମନ୍ତ୍ରୀଙ୍କ ବେକ ତ ମୋ ହାତ ଅପହଞ୍ଚ ସୀମାରେ । ମୋର ଉପାୟ କ'ଣ ? ସାର୍ ରାଗିଲେ ବି ମୁଁ କିଛି କରିପାରୁ ନାହିଁ । ମୁଁ ଡେଙ୍ଗାପିଲା

ବୋଲି ସାର୍ ସିନା ମତେ ବାଛିଲେ; କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ଉଚ୍ଚା ବ୍ୟକ୍ତିତ୍ୱ ପାଖରେ ପହଂଚିବାରେ ମୁଁ ତ ବାମନ ! ହଠାତ୍ ମୁଁ ଦେଖିଲି, ଦୁଇଟା ହାତ ଶୂନ୍ୟେ ଶୂନ୍ୟେ ମତେ ଉପରକୁ ଟେକି ନେଉଚି ଏବଂ ମୁଁ ଆହ୍ଲାଦିତ ହୋଇ ମୁଖ୍ୟମନ୍ତ୍ରୀଙ୍କ ବେକରେ ଫୁଲମାଳ ପକାଇ ଦେଉଚି । ଘନଘନ କରତାଳିରେ ପରିବେଶ ମୁଖରିତ ହୋଇଉଠିଲା । ତଳେ ଆସି ଠିଆ ହେବା ପରେ ଜାଣିଲି, ସେ ବଳିଷ୍ଠ ହାତ ଦୁଇଟି ଥିଲା ମୁଖ୍ୟମନ୍ତ୍ରୀଙ୍କର । ଆଗରେ ଠିଆହୋଇ ପାଢ଼ୀ ସାର୍ ଆନନ୍ଦରେ କୁରୁଳି ଉଠୁଥିଲେ । ଜନତା ଖୁସି; ମୁଖ୍ୟମନ୍ତ୍ରୀ ଖୁସି; ପାଢ଼ୀ ସାର୍ ଖୁସି ।

ସବୁ ଖୁସିକୁ କିନ୍ତୁ ଏପଟ ସେପଟ କରିଦେଲା କଫି । ମୁଖ୍ୟମନ୍ତ୍ରୀ କଫି ଦି'ଢୋକ ପିଇ ରଖିଦେଲେ । ଜଣା ପଡ଼ିଲା, ସେଥିରେ କିରୋସିନ୍ ହାତ ବାଜି ଯାଇଛି । ପାଢ଼ୀ ସାର୍ଙ୍କ ମନ ଭାରି ଖରାପ । ସ୍କୁଲ ସରକାରୀ ମଂଜୁରୀ ପାଇବ କି ନ ପାଇବ ସିଏ ଅଲଗା କଥା । ମାତ୍ର ଅତିଥିଙ୍କୁ କପେ ଭଲ କଫି ଦେଇପାରି ନ ଥିବାରୁ ସେ ଦୁଃଖ ପ୍ରକାଶ କରିଥିଲେ ଅନେକ ଥର ।

ଯେଉଁ ଦିନ ସରକାରୀ ମଂଜୁରୀ ଚିଠିଟି ସ୍କୁଲରେ ଆସି ପହଂଚିଲା– 'ପାଢ଼ୀ ସାର୍ କହି ଉଠିଲେ, ସିଏ ଏକ ମହାନ୍ ବ୍ୟକ୍ତିତ୍ୱ । ଆମର ସାମାନ୍ୟ ଭୁଲ ତ୍ରୁଟିକୁ ସେ ମନରେ ଧରି ନାହାନ୍ତି ।'

ସ୍କୁଲ ଛାଡ଼ିଲା ପରେ ପାଢ଼ୀ ସାର୍ ଅନେକ ଥର ସ୍ମୃତିକୁ ଆସିଛନ୍ତି । ନେମାଳ ଛାଡ଼ିଲା ପରେ ତାଙ୍କର ପରବର୍ତ୍ତୀ ଜୀବନ ପର୍ଯ୍ୟାୟକୁ ଜାଣିବାକୁ ପ୍ରବଳ ଇଚ୍ଛା ହୋଇଛି ।

ପୁଣି ଆକସ୍ମିକ ଭାବେ ସାର୍ କଟକ ଆସି ମତେ ଦେଖାଦେଇ କୃତାର୍ଥ କରିଛନ୍ତି । ସେଦିନ ମନେହୋଇଛି, ମୁଁ ମୋର ସ୍କୁଲ ଜୀବନ ଫେରିପାଇଛି । କାରଣ ମୋ ଆଗରେ ମୋର ଅତି ପ୍ରିୟ ପାଢ଼ୀ ସାର୍ଙ୍କୁ ମୁଁ ଦେଖୁଚି ।

ପୁଣ୍ୟଶ୍ଲୋକ ସୂର୍ଯ୍ୟନାରାୟଣ ପାଢ଼ୀଙ୍କୁ ଚିରକାଳର ଛାତ୍ର ରତ୍ନାକର ପ୍ରଣତି ବାଢୁଛି ।

।। ପାଞ୍ଚ ।।

# ନିଷିଦ୍ଧ ଇଲାକାରେ ଚାର୍ବାକ

ସ୍କୁଲ ଜୀବନର କେତୋଟି ଘଟଣା ମୋ ପାଇଁ ଏକାନ୍ତ ସ୍ମରଣୀୟ । ଚେଷ୍ଟା କଲେ ବି ସେ କଥା ଭୁଲି ହବନି । ସେ ଘଟଣାଗୁଡ଼ିକ ସହିତ କେଜାଣି କାହିଁକି ପାଢ଼ୀ ସାର୍ ଆପଣାଛାଏଁ ଆସି ଯୋଡ଼ି ହୋଇଯାଆନ୍ତି । ଝାପ୍‌ସା ଭାବରେ ଦିଶିଯାଏ ମୁରବୀପଣ ଖୁନ୍ଦି ହୋଇଥିବା ତାଙ୍କର ଉଜ୍ଜ୍ୱଳ ମୁହଁ । ସବୁ କଥା ଯେମିତି ତାଙ୍କରି ନିର୍ଦ୍ଦେଶରେ ହେଇ ଚାଲିଥିଲା । ସେ ଏସବୁ କରିବାକୁ କହି ନ ଥିଲେ । ତଥାପି ମତେ ଲାଗୁଥିଲା– ସେ ଥିଲେ ମୋ କାମର ଅଦୃଶ୍ୟ ନିର୍ଦ୍ଦେଶକ ।

ହଠାତ୍ ଦିନେ ଝୁଙ୍କ୍ ଉଠିଲା ଆମ ଅପାଣ୍ଡବା ଗାଁରେ ଗୋଟାଏ ଲାଇବ୍ରେରୀ କରାଯିବ । ଗାଁର କିଛି ବାନରସେନାଙ୍କୁ ମେଳିକରି ଆରମ୍ଭ କରିଦେଲି ମୁଷ୍ଟିଭିକ୍ଷା । ଘର ଘର ଆଦାୟ ହେଲା ଚାଉଳ, ନଚେତ୍ କିଛି ପଇସା । ଗାଁରେ ଗୋଟେ ନିଅଂଶୀ ଡ଼ିଅରେ ଆରମ୍ଭ ହେଲା ଏକ ଚାଳଘର । କେହି ଜଣେ ତା'ର ଦରକାରରେ ଆସୁ ନ ଥିବା ଏକଫାଳିଆ କବାଟ ପଟେ ଆଣି ଥୋଇଦେଲା । ଘରଟିଏ ତିଆରି ହେଲା । କବାଟ ଲାଗିଲା । ବୋଉ ପାଖରେ ଅଳି ଅର୍ଦ୍ଦଳି କରି ଗୋଟେ ଅଧାଭଙ୍ଗା କାଠ ଆଲମାରୀ ନେଇ ସେ ଘରେ ରଖିଲି । ଅବଶ୍ୟ ତା'ର ଅସ୍ଥାୟୀ ମରାମତି କରା ହେଇଥିଲା ।

ତା'ପରେ ଚାଲିଲା ବହି ସଂଗ୍ରହ ।

ଯାହା ଘରେ ଯୋଉ ବହି ଥିଲା ତାହା ଆଣି ସେ ଆଲମାରୀରେ ଥୁଆ ହେଲା । ବିଶି ପାତ୍ରଙ୍କ ଘରେ ଗୋଟିଏ ସେଟ୍ ମୁଦ୍ରିତ ମହାଭାରତ ଥିଲା । ତାଙ୍କୁ କୋଉ ଜ୍ୟୋତିଷ କହି ଦେଇଥିଲା, ଘରେ ମହାଭାରତ ରଖନି । ସବୁଦିନେ ପରିବାର ଭିତରେ କଳି ଲାଗି ରହିବ । ସିଏ ଏକଥାକୁ ହସରେ ଉଡ଼େଇ ଦେଇଥିଲେ । ମାତ୍ର କାକତାଳିକ ନ୍ୟାୟରେ, କିଛିବର୍ଷ ପରେ ତାଙ୍କ ଭାଇ–ଭାଇ ମଧ୍ୟରେ ଜମିଜମାକୁ

ନେଇ କଳିଗୋଳ ଲାଗିଲା । ସେ ଜ୍ୟୋତିଷ କଥା ସତ ମଣିଲେ । ମହାଭାରତ ସେଟ୍‌ଟିକୁ ସେ ଆମ ଲାଇବ୍ରେରୀକୁ ଦେଇଦେଲେ ।

କ୍ରମଶଃ ବହି ସଂଖ୍ୟା ବଢ଼ିଲା । ପିଲାଙ୍କ ପାଠପଢ଼ା ବହି ବେଶି । ପୁରୁଣା ପାଞ୍ଜି; ଓଷାବ୍ରତର ଚଟିଚଟି ବହି । ସବୁ ବହିକୁ ଆମେ ଜମେଇ ରଖିଲୁ । କିନ୍ତୁ ପଢ଼ିଲାବାଲା କିଏ କାହିଁ ! ଆମ ସାଙ୍ଗରେ ଆସି ଜୁଟିଲା ଦାମୋଦରପୁରର ଜଟିଆ । ତା' ମାମୁଘର ଆମ ଗାଁରେ । ସେ ଆମରି ସମବୟସ୍କ । ପ୍ରଥମେ ସେ କେଇଖଣ୍ଡ କଲିକତୀ ନଭେଲ ଆଣିଦେଲା । ଆମେ ସମସ୍ତେ ସେଇଥିରୁ ଖଣ୍ଡେ ଖଣ୍ଡେ ନେଇ ଘରେ ଲୁଚେଇ କରି ପଢ଼ିଲୁ । ଆମେ ଜାଣିଥିଲୁ ସେ ବହି ପଢ଼ିବା ଦେଖିଲେ ଘରେ ଖଣ୍ଡପ୍ରଳୟ ହେବ । ସେ ବହି ଲାଇବ୍ରେରୀରେ ରହିବା ବି ମନା । ସେସବୁ ଆମ ପାଇଁ ନିଷିଦ୍ଧ ବହି । ଆମ ଲାଇବ୍ରେରୀ ଉପରେ ଝଡ଼ ଉଠିପାରେ । ତେଣୁ ଆମେ ସେ ବହିର ମଲାଟ ଛିଣ୍ଡେଇ ଦେଲୁ । ଫଳରେ ହଠାତ୍ ଧରାପଡ଼ି ଯିବାର ଭୟ ଆଉ ରହିଲା ନାହିଁ । କେହି ଜାଣିବାର ଯୁ ମଧ ରହିଲା ନାହିଁ ।

ଦିନେ ଜଟିଆ ଗୋଟାଏ ଚାଞ୍ଚଲ୍ୟକର ଖବର ଶୁଣେଇ ଆମକୁ ଚମକେଇ ଦେଲା । ଖବରଟି ହେଲା– ସରକାର ଗୋଷ୍ଠୀ ଉନ୍ନୟନ କେନ୍ଦ୍ର ନାମରେ ଗାଁ-ଗହଳକୁ ଗୋଟାଏ ଲେଖାଁ ବଡ଼ ରେଡ଼ିଓ ସେଟ୍ ନାମମାତ୍ର ମୂଲ୍ୟରେ ଦେଉଛନ୍ତି । ଆମର ଏ ପାଠାଗାର ସହିତ ଗୋଟାଏ ଯୁବକ ସଂଘର ନାଁ ଯୋଡ଼ି ଦିଆଯାଉ । ସେଇ ନାଁରେ ଗୋଟାଏ ରବରଷ୍ଟାମ୍ପ ହେବ । ଜଟିଆ କାହା ପାଖରୁ ଗୋଟେ ଦରଖାସ୍ତ ଲେଖେଇ ଆଣିବ । ସେଥିରେ ରବରଷ୍ଟାମ୍ପ ମାରି କୋଡ଼ିଏ ବାଇଶିଟା ଲୋକଙ୍କର ଦସ୍ତଖତ କରି ସେଇ ଜଟିଆକୁ ଦେଲେ ଆଉ ସବୁ କାମ ସେ କରିଦବ । କିଛି ଟଙ୍କା ଧରି ଶେଷକୁ ଆମେ କଟକ ଯାଇ ରେଡ଼ିଓ ଆଣିବା କଥା ।

ଆମେ ସବୁ ଏକଥା ଶୁଣି ଭାରି ଖୁସି ହେଲୁ ।

ମାତ୍ର ଅସଲ ଚିନ୍ତା ହେଲା, ଦସ୍ତଖତ କରି ଜାଣିଥିବା କୋଡ଼ିଏ ଜଣ ଲୋକ କୋଉଠୁ ମିଳିବେ । ରବରଷ୍ଟାମ୍ପ ଗୋଟେ କରେଇ ଆଣିବା ପାଇଁ କଟକ ଯା-ଆସ କରୁଥିବା ତାଙ୍କ ଗାଁର ଜଣକୁ ଜଟିଆ ବରାଦ ଦେବା ଦାୟିତ୍ୱ ନେଲା । ଆମ ସମସ୍ତଙ୍କୁ କିନ୍ତୁ ସେ ଗୋଟାଏ ବିଷୟରେ ସତର୍କ କରାଇ ଦେଲା । – 'ଦେଖ, ଏକଥା ଯେମିତି ପଦାକୁ ନ ଫିଟେ । ସମସ୍ତଙ୍କ ବିଦ୍ୟା ରାଣ । ରେଡ଼ିଓ ଆସିଗଲେ ଆମେ ସମସ୍ତଙ୍କୁ ଚମକେଇ ଦେବା ।'

ଜଟିଆକୁ ଗୁରୁ ମାନି ଆମେ ସମସ୍ତେ ସବୁ କଥା ଗୋପନ ରଖିଲୁ । କେବଳ ରୀତିମତ ମୁଷ୍ଟିଭିକ୍ଷା ଚାଲିଥିଲା । ପାଣ୍ଠି ଯୋଗାଡ଼ କରିବା ହେଲା ମୂଳ ଉଦ୍ଦେଶ୍ୟ । ଇତିମଧ୍ୟରେ ରବରଷ୍ଟାମ୍ପ ତିଆରି ହୋଇ ଆସିଗଲା । ଦରଖାସ୍ତରେ ଦସ୍ତଖତ କଲୁ ଆମେ ଗାଏମୋଟ ଛଅ ଜଣ । ସ୍କୁଲର ସାଙ୍ଗମାନଙ୍କଠୁଁ ଗୁଡ଼େ ନାଁ ଦସ୍ତଖତ କରି ଆଣି ହେଇଥାନ୍ତା । କିନ୍ତୁ ଗୁରୁ ବାଣୀ ମାନିବାକୁ ହେଲା । ଗୋପନୀୟତା ରଖିବାକୁ ପଡ଼ିଲା । ଗାଁରେ ଆଉ କେତେଜଣ ଅଳ୍ପ ଶିକ୍ଷିତ ଲୋକ ଅନ୍ତତଃ ନିଜ ନାଁ ଲେଖି ଜାଣିଥିଲେ । କିନ୍ତୁ ସେମାନଙ୍କୁ ଦସ୍ତଖତ କରିବା କଥା କହିଲେ, ଗୋପନୀୟତା ନ ରହିବାର ଭୟ ଥିଲା । ଶେଷକୁ ଅବଶିଷ୍ଟ ଦସ୍ତଖତ ପୂରଣ କରିବାର ଦାୟିତ୍ୱ ସେଇ ଜଟିଆ ଉପରେ ଛାଡ଼ି ଦିଆଗଲା । ଜଟିଆ ଆମ ପାଇଁ ଲୋକଗଳ୍ପର ନେଉଳ ଭାଇ ପାଲଟିଗଲା । ଯାହା ଆମ ପକ୍ଷେ ଅସମ୍ଭବ ତାହା ଜଟିଆ କରିବ ।

ସ୍ଥିର ହେଲା, ଯୁବକ ସଂଘର ମୁଁ ହେବି ସେକ୍ରେଟାରୀ ।

ଚିଠିପତ୍ର ଯାହା ଆସିବ, ମୋ ନାଁରେ ଆସିବ ।

ଏସବୁ ହେଇଗଲା ପରେ କିଛି ଦିନ ନୀରବତାରେ କଟିଗଲା । ବଟ ସେଠୀ ଆମ ଦଳର ଜଣେ ମାତ୍‌ପରିଆ ସୈନିକ । ସେ ଟିକେ ବୟସ୍କ ଜଣାପଡ଼େ । ମାତ୍ର ମୋଟା ବୁଦ୍ଧିଆଟିଏ । କିଛି ଦିନପରେ ହଠାତ୍ ଦିନେ ହାଟ ମଝିରେ ହାଣ୍ଡି ଭାଙ୍ଗି ଦେଲା ସେ । କହିଲା– ନନା, ତମ ରେଡୁଅ କୁଆଡ଼େ ଗଲା ? କୁକୁଡ଼ା କ'ଣ ଡିମ ଉଷୁମୋଉଚି; କେବେ ଯାଇ ଛୁଆ ହବ ! ଏ ନନା ମୁଣ୍ଡରେ କିଏ ଗୋଟା ମିଛ ଭୂତ ଚଢ଼େଇଚି । ହଇହୋ, ସରକାର କ'ଣ ଏଡ଼େ ଭକୁଆ; ବିନା କାଗଜପତ୍ରରେ ଆମକୁ ଦାମିକା ସରକାରୀ ଚିଜଟା ଦେଇଦେବ । ଗଲା, ଯେତେ ଚାନ୍ଦା ପଇସା ଯୋଗାଡ଼ କରି ଦେଇଥେଲ, ସିଏ ବୁଡ଼ିଲା । ୟା' ସାଙ୍ଗକୁ ଏଣିକି ଲାଜ-ଅପମାନରେ ଆମେ ବୁଡ଼ିବା । ଏବଠୁଁ କିଛି ଗୋଟାଏ ବାଟ ଖୋଜ । ମୋର ହେଜ ପଡ଼ିଗଲା ବିଲି କହି ପକେଇଲି ।

ବଟ କଥା ଶୁଣି ଆଉମାନେ ଭୁଟ୍‌ଭାଟ୍ ହେଲେ । କେତେକ କହିଲେ, ସେ ସତ କହୁଚି । ପ୍ରାୟ ଦି'ମାସ ହେଇଗଲାଣି । ଜଟିଆର ଦେଖା ନାହିଁ; କି ତା'ର ରେଡ଼ିଓର ଦେଖା ନାହିଁ । ଜଣେ ଅଧେ ମତେ ଉପଦେଶ ଦେଲେ, ରବିବାରିଆ ଛୁଟି ଦେଖି ତମେ ଟିକେ ଦାମୋଦରପୁର ମାଡ଼ିଯା' । ଘଟଣାର ଟେର୍ ନିଅ । ନ ହେଲେ ଆମେ ଭାଣ୍ଡିଆ ହେବା ଯେ ! ଲୋକେ କେତେ କ'ଣ କହିବେ !

ହଠାତ୍ ମୁଁ ଚମକିପଡ଼ି କହିଉଠିଲି- ଲୋକେ ? ଲୋକେ ଏକଥା ଜାଣିଲେ କେମିତି ?

ଚଗୁଲି ପାତ୍ର କହିଲା, କକେଇ ! ସମସ୍ତେ କଥାକୁ ଗୋପନ ରଖି କେବଳ ଚୁପ୍‌କରି ନିଜ ନିଜ ଘରେ କହି ପକାଇଥିବେ । କଥାଟା ଖାଲି ତମ ଆଗରେ ଫିଟି ନ ଥିଲା । ଆଜି ଫିଟିଗଲା । ଛାଡ଼, ମୁଁ ଯାହା ଖବର ରଖିଚି, ଜଟିଆ ଭାଇ କି ହାଡ଼ଫୁଟି ହେଇଚି ପନ୍ଦର-କୋଡ଼ିଏ ଦିନ ହେଲାଣି । ସେଇଥିପାଇଁ ସେ ଆସୁନି । ଟିକେ ସମ୍ଭାଳି ଯା' । ସେ ଭଲ ହେଇସାରି ଆସୁ । ଦିହ ମୁଣ୍ଡ କଥା । ଆମେ ଏତେ ଆତୁରିଆ ହେଲେ କ'ଣ ଚଳିବ !

ସତକୁ ସତ, ଚାରି ପାଞ୍ଚଦିନ ପରେ ଜଟିଆ ଆସି ହାଜର । ସେ ଭାରି ଦୁର୍ବଳ ଦିଶୁଥିଲା । ହାତ ମୁହଁରେ ହାଡ଼ଫୁଟି ଚିହ୍ନ । ସାଇକେଲରେ ବସି ଜଣକ ସାଙ୍ଗରେ ଆସିଥିଲା । ମତେ ଗୋଟାଏ କଡ଼ପଟିଆକୁ ଡାକି ନେଇ କହିଲା, ରହ୍ନା ମାମୁ, ଶୁଣ ! ତମ ନାଁରେ ଚିଠିଟା କେତେ ଦିନ ହେଲା ଆସିଲାଣି । ସରକାରୀ କଥା; କୋଉଠି ପଡ଼ିଥିବ ତା'ର ଠିକ୍ ଠିକଣା ନାହିଁ । ଧ୍ରୁବା'ଇ କାଲି ରାତିରେ ଏକଥା ମତେ କହିଲା । ଆମ ପାଇଁ ରେଡ଼ିଓ ସାଙ୍କସନ୍ ହେଇଯାଇଚି । କାଲି ସୁଦ୍ଧା ଯେମିତି ହେଲେ ଆଣିବାକୁ ହବ । ଏକତିରିଶ ଟଙ୍କା କି ବତିଶି ଟଙ୍କା ସରକାରୀ ତହବିଲରେ ଦାଖଲ କରିବାକୁ ହବ । ତା ବେଟ୍ରିଟା କୁଆଡ଼େ ଖୁବ୍ ଓଜନିଆ । ଦି'ତିନି ଜଣ ସାଙ୍ଗ ହେଇ ଯା । ଧ୍ରୁବା'ଇ ଯୋଉ ଅଫିସରେ କାମ କରେ, ଏ ଅଫିସ୍ ସେଇଠି । ସେ ତମକୁ ଚିହ୍ନିଚି । ହଁ, ତାକୁ ଦେଖା କଲେ ସେ ସବୁ କାମ କରେଇ ଦବ । ସାଙ୍ଗରେ ସେ ରବରଷ୍ଟାମ୍ପଟା ନିଶ୍ଚୟ ନେଇକରି ଯିବ । ମୁଁ ତମ ସାଙ୍ଗରେ ଯାଇଥାନ୍ତି; କିନ୍ତୁ ଏଇଠୁ ଏତକ ଆସିବାକୁ ମୋ ଫକାଶି ଉଡ଼ିଯାଉଚି । କେହି ନ ମିଳିଲେ ତମେ ଆଉ ଚଗୁଲି ଯାଅ । ହେଲା; ମୁଁ ଯାଉଚି-

ଜଟିଆ ଯେମିତି ଝଡ଼ଭଳି ଆସିଥିଲା, ସେମିତି ଫେରିଗଲା । ମତେ ଏସବୁଯାକ କଥା ସପନ ଭଳି ମନେହେଲା । କିଛି ସମୟ ଗୁମ୍‌ମାରି ବସି ରହିଲି । ଚଗୁଲି ଆସି ପଚାରିଲା, କକେଇ, କଥା କ'ଣ ? ଏମିତି ବସିଲ କାହିଁକି ? କିଛି ଅସୁବିଧା ହେଇଥିଲେ ଆମେ ସତ କଥା ସମସ୍ତଙ୍କୁ ଖୋଲି କରି କହିଦବା । ଦେଖ, ଆମେ ତ ଚୋରିନାରୀ କରିନେ । ଯାହା ହବ, ଦେଖାଯିବ । ଚିନ୍ତା କାହିଁକି କରୁଚ ?

ମୁଁ ଚଗୁଲି କି କହିଲି, ଆରେ ଶୁଣ, ଆସନ୍ତା କାଲି ଆମେ ଦିହେଁ କଟକ ଯିବା । ବଡ଼ ଓଜନିଆ ଜିନିଷ ଆଣିବାକୁ ପଡ଼ିବ । ଆମେ ପାରିବା ତ ?

ଚଗୁଲି ଆନନ୍ଦରେ କୁରୁଳି ଉଠିଲା । ପୁଣି ଖୁସି ଆନନ୍ଦକୁ ଚାପିରଖି କହିଲା, ନାଇଁ ନାଇଁ କକେଇ, ନିହାତି ଆମେ ଦି'ଜଣ ଏକଥାକୁ ଗୋପନ ରଖିବା । ଆଉ କେହି ନ ଜାଣନ୍ତୁ । ଆମେ ଦିହେଁ ଯିବା । ଦି'ଜଣଯାକ ଯେତେ କଷ୍ଟ ହଉ ବସ୍‌ରେ ଧରି ଫେରିବା । ସାଲେପୁରରୁ କାହାକୁ କହି ମୁଣ୍ଡବୋଝିଆ କରି ଗାଁକୁ ନେଇ ଆସିବା । ସହଜେ କାଲି ସାଲେପୁର ହାଟପାଳି । ଲୋକ ମିଳିଯିବେ । ତମେ ଚିନ୍ତା କରନି । 'ବର୍ଜୁ ଚଇନି ପୁଅ ଜିନ୍ଦାବାଦ' !

ମୁଁ ତାକୁ ଚୁପ୍ ରହିବାକୁ କହିଲି । ସେଦିନ ରାତିରେ ମୁଁ ଠିକ୍ ଭାବେ ଶୋଇପାରିଲି ନାହିଁ । ବାରମ୍ବାର ନିଦ ଭାଙ୍ଗିଲା । ସକାଳୁ ଉଠି ଗାଧୁଆପାଧୁଆ ସାରି ଗଣ୍ଡେ ଗଣ୍ଡେ ପଖାଳ ଖାଇ ଦି'ଜଣ ଯାକ ସ୍କୁଲ ଯିବା ନାଁରେ ବାହାରି ପଡ଼ିଲୁ । ସାଲେପୁର ଆସି ବସ୍ ଧରି କଟକରେ ହାଜର । ସହଜେ ଖରାଦିନିଆ ସକାଳୁଆ ଅଫିସ୍ । ତା' ଧ୍ରୁବଭାଇକୁ ପ୍ରଥମେ ଦେଖା କଲୁ । ସେ ତା' ଅଫିସ୍ ଭିତରେ ଆମକୁ ବସାଇ ମୋଠୁଁ ଟଙ୍କା ନେଲା । ବାରଟା ଗୋଟାଏ ବେଳକୁ ସବୁ କାମ ଫତେ । ଆମକୁ ସେ ଅଫିସକୁ ଯିବାପାଇଁ ସେ ମନା କଲା । କହିଲା, ତମେମାନେ ପିଲାଲୋକ । ସେ ଅଫିସର୍ ତମକୁ ଦେଖିଲେ ରେଡ଼ିଓ ଦେବାକୁ ମନା କରିପାରେ । ମୁଁ ଜଣେ କିରାଣୀ ଭାଇକି ଚାହା-ପାଣି ଦେଇ କାମଟା କରେଇ ନେଲି । ତମେ ଜିନିଷକୁ ଏଇଠୁ ନବ । ଶୁଣ, ସବୁ ଜିନିଷ ପ୍ୟାକେଟ୍ ହେଇଚି । ବ୍ୟାଟେରି ପ୍ୟାକେଟଟା ଟିକେ ଓଜନିଆ । ହୁସିଆରି ନବ । ଛଅ'ମାସ ପରେ ପୁଣି ବ୍ୟାଟେରି ପାଇଁ କିଛି ଖର୍ଚ୍ଚ କରିବାକୁ ପଡ଼ିବ ।

ରେଡ଼ିଓ ସେଟ ପାଇଁ ଆମେ ଭୋକଶୋଷ ଭୁଲିଗଲୁ । ବସରେ ଜିନିଷ ଧରି ସାଲେପୁରରେ ଆସି ପହଞ୍ଚିଗଲୁ । ବିକଳ କର ଦୋକାନରେ ବରା ତରକାରୀ ଖାଇ ଟିକେ ଆଶ୍ୱସ୍ତ ହେଲୁ । ତା'ପରେ ହାଟରେ ପଶି ମୁଁ ଆମ ଗାଁ ପାଖ ଲୋକଙ୍କୁ ଖୋଜିଲି । ଯୋଗ ଭଲ; ପରିବା ବିକିବା ପାଇଁ ଆସିଥିବା ଦି'ଜଣ ଲୋକ ମିଳିଗଲେ । ସେମାନେ ହାଟବାହୁଡ଼ା । ଫେରିବାକୁ ସଜିଲ୍ ହେଉଥିଲେ । ମୋଠୁଁ ଆମ ଗାଁକୁ ରେଡ଼ିଓ ଯିବାକଥା ଶୁଣି ଖୁସିରେ ମୁଣ୍ଡରେ ଧରି ଯିବାକୁ ରାଜି ହେଇଗଲେ । ଆମେ ଗଡ଼ ଜିଣିଲା ବୀର ଭଳି ଆଗେ ଆଗେ ଚାଲିଲୁ ।

ବାଟରେ ଜଟିଆ ଘର ପଡ଼ିଲା ।

ତାକୁ ସବୁକଥା କହିବାରୁ ସେ ଅଣ୍ଟାଭିଡ଼ି ବାହାରିଲା ।

ଅସୁସ୍ଥତା ଭୁଲିଗଲା ।

ପ୍ରକୃତରେ ସେ ଆମ ସାଙ୍ଗରେ ଆସିବାରୁ ସୁବିଧା ହେଲା ।

ସେ ରେଡ଼ିଓ ସଂଯୋଗ କାମ ଦେଖି ଦେଖି ଶିଖି ଯାଇଥିଲା । ରେଡ଼ିଓର ଲାଉଡ଼ ସ୍ପିକରଟା ଖୁବ୍ ଉଚ୍ଚ ଜାଗାରେ କୁଆଡ଼େ ରହେ । ଯେତେ ଉଚ୍ଚରେ ରହିବ, ସେତେ ଦୂରକୁ ଶୁଭିବ । ଜଟିଆ ଦି' ଜଣକୁ ଆମ୍ବଗଛର ଉଚ୍ଚ ଡାଳକୁ ଚଢ଼ାଇ ସ୍ପିକରକୁ ମଜବୁତ କରି ବନ୍ଧାଇ ଦେଲା । ଧୂପ ଲାଗିଲା । କଳସ ବସିଲା । ସେତେବେଳକୁ ଲାଇବ୍ରେରୀ ଘର ପାଖରେ ଶହଶହ ଲୋକଙ୍କ ଭିଡ଼ । ପିଲାଛୁଆ, ମିଣିପେ-ମାଇପେ, ବୁଢ଼ାବୁଢ଼ୀ ସମସ୍ତେ ରୁଣ୍ଡ । ଦେଢ଼ଶୁର-ଭାଇବୋହୂ ଛୁଆଁଛୁଇଁ ଭେଦ ଭୁଲିଗଲେ । ସମସ୍ତେ ଆଲୋଚନା କଲେ- ଆମ ଗାଁ ପିଲାମାନେ ଗୋଟେ କଥାକୁହା ଯନ୍ତ୍ର ଆଣିଚନ୍ତି । ସିଏ ଆମ୍ବ ଗଛର ଉଁଚା ଡାଳରେ ବସି କଥା କହିବ; ଗୀତ ଗାଇବ । ଚାଲ ଚାଲ ଶୁଣିବା । ଆମ ପିଲାଙ୍କ ବୁଦ୍ଧିକି ତାରିଫ୍ କରିବା କଥା ।

'ଆଗ ନଡ଼ିଆ ବାଡ଼ିଆ ହବ । ତା' ପରେ ରେଡ଼ିଓ ବାଜିବ ।' -ଗମ୍ଭୀର ଗଳାରେ ଏକଥା ଘୋଷଣା କଲା ଜଟିଆ । ତା' କଥାକୁ ରେଡ଼ିଓ କଥା କହିଲା ବୋଲି ଭାବି ଲୋକେ ଚୁପ୍‌ଚାପ୍ ହେଇଗଲେ । ସେ ପୁଣି କହିଲା- 'ନଡ଼ିଆ ବାଡ଼େଇ କରି ରେଡ଼ିଓ ବଜେଇବେ ରତ୍ନା- ମାମୁ । କାରଣ ସବୁ କାମ କରିବା ମୂଳରେ ସିଏ ।'

ଲୋକେ ଜୋରରେ ହଁ, ହଁ ବୋଲି କହିଲେ ।

ମତେ ଗୋଟେ ସିନ୍ଦୂରଲଗା ନଡ଼ିଆ ଧରେଇ ଦେଲା ଜଟିଆ ।

କହିଲା- ଜୋର୍‌ରେ... ଏକାଥରକେ... ଦି'ଫାଳ ହବ-

ସେତେବେଳକୁ ମୋ ହାତ ଥରିବା ଆରମ୍ଭ କରି ଦେଇଥାଏ ।

ତଥାପି ସାହସ ସହିତ ଶିଳପୁଆ ଉପରେ ପିଟିଦେଲି ନଡ଼ିଆକୁ ।

ଏକା ପାହାରକେ ନଡ଼ିଆ ଛତ୍ରଛାଳ...

ହଠାତ୍ ହରିବୋଲ ହୁଳହୁଳି ଧ୍ୱନି ଲହରେଇ ଉଠିଲା ।

ତା'ରି ଭିତରେ ବାଜିଉଠିଲା ରେଡ଼ିଓ । ହଠାତ୍ ପୁଣି ଚୁପ ହେଇଗଲେ ସମସ୍ତେ । କିଛି ସମୟ କଟିଗଲା ଆଚମ୍ବିତ ଭାବରେ । ତା'ପରେ ଧୀରେ ଧୀରେ ଭୁଟ୍‌ଭାଟ୍ ଶୁଣାଗଲା । ଶେଷରେ ଅଲିଆ ବାଉରି ଗୋଟାଏ ଅଜବ ପ୍ରଶ୍ନ

ଉଠେଇଲା । କହିଲା, ଆଚ୍ଛା ଗୋସେଇଁ, ଗୋଟେ କଥା ଜମାରୁ ବୁଝିହଉନି; – ଏତେ ସରୁଆ ତାରରେ ଏତେ ଲୋକ କେମିତି ଆମ୍ବଗଛ ଉପରକୁ ଉଠି, ସେଠି ବସି କଥାବାର୍ତ୍ତା ହଉଚିନି; ଏ ତ ବଡ଼ ଆଚମ୍ବିତ କଥା !

ପିଲାମାନେ ସବୁ ହସି ଉଠିଲେ । ଏମାନେ ପାଠପଢ଼ା ପିଲା । ସିଏ ମୂର୍ଖ ଅପାଠୁଆ । ତାକୁ ଅବଶ୍ୟ ଲାଜ ମାଡ଼ିଲା । ତା' ପ୍ରଶ୍ନ ପୁଡ଼ାଟିକୁ ମନରେ ଅସମାହିତ ରଖି ସେ ଚାଲିଗଲା । ମାତ୍ର ଗୀତ ଓ କଥା ଶୁଣିଲା କିଛି ଦୂରରେ ଠିଆ ହୋଇ । ରାତି ଗଭୀର ହେବାକୁ ବସିଲା । ଲୋକେ ଧୀରେ ଧୀରେ ନିଜ ନିଜର ଧନ୍ଦା କଥା ହେଜି ଘରକୁ ଫେରିଗଲେ । ରେଡ଼ିଓ ବାଜୁଥିଲା । ବହୁ ଦୂର ପର୍ଯ୍ୟନ୍ତ ଶୁଭୁଥିଲା ତା'ର ଧ୍ୱନି । ଆମେ ଘରକୁ ଫେରିବାର ନାଁ ଧରୁ ନ ଥିଲୁ ।

ସେତିକିବେଳେ ବଟ ସେଠୀ ମୋ ଆଗରେ ଆସି ଠିଆ ହେଇଗଲା । ତା'ପରେ କହିଲା, ନନା ! ମୋ ଉପରେ ରାଗିଚ ? ହେଇତି ଅନାନି । –ତା'ପରେ ଢୋ–ଢା କରି ଦିଇଟା ଚାପୁଡ଼ା ନିଜର ଦି' ଗାଲକୁ ମାରିଲା । ପୁଣି କହିଲା, ତେମେ ତ ଜାଣିଚ, ମତେ ଟିହାଇ ଦେଲେ ମୁଁ ହୁ–ଦସ୍ତ ଗଛରେ ଚଢ଼ିଯାଏ । ଭୁଲ କରି ପକେଇଚି । ତାର ପ୍ରାୟଶ୍ଚିତ୍ତ କାଲି କରିବି । କାଲି ଏଇଠି ଫିଷ୍ଟ ହବ । ଦିଇଟା ବଡ଼ ଗଞ୍ଜା କୁକୁଡ଼ା ବାପାକୁ କହି ମୁଁ ଆଣିଦେବି । ଆଉ ସବୁ କଥା ତେମେମାନେ ବୁଝ । ଅରୁଆ ଭାତ କୁକୁଡ଼ା ଝୋଳ । ବଢ଼ିଆ ହବ । ମୁଁ ଚାଲିଲି । କାଲି ସଂଜକୁ ଦେଖା–

ମୁଁ ଚଗୁଲିକୁ ଡାକି କହିଲି, ଶୁଣ, ବଟ କହିଗଲାଣି ମାନେ ଆସନ୍ତାକାଲି କୁକୁଡ଼ା କାଟି ମାଂସ ଧରି ପହଞ୍ଚି ଯିବ ସଂଜ ଆଗରୁ । ତମେମାନେ ସେ କଥା ବୁଝ । କିଏ ରାନ୍ଧିବ, କୋଉଠି କେମିତି ରାନ୍ଧିବ, ହାଣ୍ଡି କଡ଼େଇ କୋଉଠୁ ଆଣିବ– ସେସବୁ ଯୋଗାଡ଼ କର । ମୋଠୁଁ କିଛି ସାହାଯ୍ୟ ଆଶା କରିବନି । ଆମ ଘରେ କୁକୁଡ଼ା ପଶେ ନାହିଁ । ମୁଁ ଆଜିଯାଏ କୁକୁଡ଼ା ଅଣ୍ଡା କି ମାଂସ ଚାଖି ନାହିଁ । କୁକୁଡ଼ା କଥା ଶୁଣିଲେ ମୋ ବୋଉ ବାସନକୁସନ କିଛି ଦବନି । ତେଣୁ ତମେସବୁ ସେକଥା ବୁଝ ।

ଦିନଯାକ ଏପଟ ସେପଟ ହୋଇ ଭାରି କ୍ଳାନ୍ତ ହୋଇ ପଡ଼ିଥିଲି ।
ଘରେ କ'ଣ ଦି'ଟା ଖାଇ ନିଘୋଡ଼ ନିଦରେ ଶୋଇ ପଡ଼ିଲି ।
ସକାଳୁ ଉଠିଲି ଡେରିରେ ।

ତରତରରେ ନିତ୍ୟକର୍ମ ସାରି ଦୌଡ଼ିଲି ସ୍କୁଲକୁ । ଦି'ଦିନ ଧରି ପାଠପଢ଼ାରେ ଖଇଚା । ପାଢ଼ୀ ସାର୍ ନିଶ୍ଚେ ପଚାରିବେ କାହିଁକି ଅନୁପସ୍ଥିତ ଥିଲି । ସ୍କୁଲରେ ପହଞ୍ଚିଲାବେଳକୁ ପ୍ରାର୍ଥନା ଚାଲିଥିଲା । ପଛରେ ଯାଇ ଠିଆହେଇ ପଡ଼ିଲି । ପାଢ଼ୀ ସାର୍ ମତେ ଦେଖିପାରିଲେ; କିନ୍ତୁ କିଛି କହିଲେ ନାହିଁ । ଖେଳଛୁଟିରେ ମତେ ଡକେଇ ପଠେଇଲେ । ଟିକିଏ ଶଙ୍କିତ ହେଇ ମୁଁ ଗଲି ତାଙ୍କ ଆଗକୁ । ତାଙ୍କ ପାଖରେ ଅନିରୁଦ୍ଧ ସାର୍, ହରି ସାର୍ ଥିଲେ । ସେ ମତେ ପାଖକୁ ଡାକିଲେ । ମୋ ପିଠି ଥାପୁଡ଼େଇ ସେ ସମସ୍ତଙ୍କୁ କହିଲେ– 'ଜାଣିଚନ୍ତି ଆପଣମାନେ ! ରତ୍ନାକର ତାଙ୍କ ଗାଁବାଲାଙ୍କ ପାଇଁ ଅତି ଚମତ୍କାର ସେବା କାମ କରିଚି । ମୁଁ ଭାରି ଖୁସି । ପାଠାଗାର ଆଉ ରେଡ଼ିଓ ସୂଚନା ଆମ ଗ୍ରାମୀଣ ଲୋକଙ୍କ ପାଇଁ ନିହାତି ଜରୁରୀ । ତୁମକୁ ଧନ୍ୟବାଦ ଦଉଚି । ମତେ ଆଜି ସକାଳୁ ମାୟାଧର ଆସି କହିଲା । କାଲି ରାତିରେ ତମର ସେଠିକା ରେଡ଼ିଓ ଧ୍ୱନି ଶୁଣି ତାଙ୍କ ଗାଁ ଲୋକେ କଥାବାର୍ତ୍ତା ହେଉଥିଲେ ବୋଲି କହୁଥିଲା । ମୁଁ ତାକୁ କହିଲି, ତମେ ଚେଷ୍ଟାକରି ତମ ଗାଁକୁ ଗୋଟେ ରେଡ଼ିଓ ସେଟ୍ ଆଣ ।

ମୁଁ ଖୁସି ମନରେ ପାଢ଼ୀ ସାର୍‌ଙ୍କ ରୁମ୍‌ରୁ ବାହାରି ଆସିଲି । ମୁଁ ଜାଣିଥିଲି, ମାୟାଧର ହେଡ଼ମାଷ୍ଟରଙ୍କଠାରୁ ଗାଳି ଶୁଣେଇବ ବୋଲି ସବୁ କଥା ଆଗରୁ ଆସି କହିଥିଲା । ଜାଣିଲା, ତାହା କିଛି ଫଳ ଦେଲାନି । ସେ ମୋ ପାଖକୁ ଆସି ଭଲେଇ ହେଇ କହିଲା, ସେ ଆମ ଘରକୁ ଯିବ; ବୁଝିବ, ରେଡ଼ିଓ ଗାଁକୁ ଆଣିବାର ବାଟ କ'ଣ !

ମୁଁ ତାକୁ ଆସିବାକୁ କହିଲି ।

ସେଦିନ ସନ୍ଧ୍ୟାରେ ସେ ଆସିଲାନି ।

ମାତ୍ର ସେଦିନ ସନ୍ଧ୍ୟାରେ ଗୋଟାଏ ଯନ୍ତ୍ରଣାଦାୟକ ଘଟଣା ଘଟିଗଲା । ଘଟଣାଟି ମୋ ଜୀବନରେ ଦୁଃଖର ରେଖା ଟାଣିଦେଲା ସବୁଦିନ ପାଇଁ । ସେ କଥାକୁ ମୋର ସେଇ ସାଙ୍ଗମାନେ ହୁଏତ ଭୁଲିଯାଇଥାଇ ପାରନ୍ତି; ହେଲେ କେଜାଣି କାହିଁକି ମୁଁ ଏଯାଏ ଭୁଲିପାରି ନାହିଁ ।

ବଟ କୁକୁଡ଼ା ମାଂସ ଆଣିଥିଲା । ଚଗୁଲି ହାଣ୍ଡି କଡ଼େଇ ଯୋଗାଡ଼ କରିଥିଲା । ବୈଷ୍ଣବ ଭାତ ରାନ୍ଧି ଛାଣି ସାରିଥିଲା । ଲାଇବ୍ରେରୀ ଘର ସାମ୍ନାରେ କଡ଼େଇରେ ମାଂସ ରନ୍ଧା ଆରମ୍ଭ କରିଥିଲା । ମୁଁ ଲାଇବ୍ରେରୀ ଘରେ ରେଡ଼ିଓ

ବଜେଇ ଏମାନଙ୍କ କାମ ଦେଖୁଥିଲି । ହଠାତ୍ ଝଡ଼ଭଳି ସେଠି ମୋ ବୋଉ ପହଞ୍ଚିଗଲା । ଏକପ୍ରକାର ଗର୍ଜନ କରିକରି ଭାତ ଝୁଡ଼ିକୁ ମାଟିରେ ଅଜାଡ଼ି ଦେଲା । ମାଂସ କଡ଼େଇ ସହ ଜଳନ୍ତା ଚୁଲିରେ ଭୁସ୍‌କିନା ବାଲ୍‌ଟିଏ ପାଣି ଢ଼ାଳି ଦେଲା । ଶେଷକୁ ଗୋଟାଏ କାଠଫାଳିଆରେ ମତେ ପାହାରେ ପକାଇଲା । ସେମିତି ଗର୍ଜିଲା ସ୍ୱରରେ କହିଲା- ଧରମଛଡ଼ା ! ବାପ ମୁଠାମୁଠା ଟଙ୍କା ଖରଚ କରି ତତେ ବ୍ରତ କରିଥିଲା କ'ଣ ଏଇୟା କରିବାକୁ- ହେଡ଼ା ଖାଇବାକୁ ? ପଞ୍ଚଗବ୍ୟ ନ ହେଲେ, ପଇତା ନ ବଦଳେଇଲେ ତୁ ମୋ ଘର ପିଣ୍ଡା ମାଡ଼ିବୁନି ।

ଦୁମଦୁମ୍ ପାଦ କଚାଡ଼ି ସେ ଚାଲିଗଲା ।

ମୁଁ ପିଲାଙ୍କ ଭଳି ରାହା ଧରି କାନ୍ଦୁଥିଲି ।

ସାଙ୍ଗମାନେ ନୀରବରେ ଯେ ଯାହା ଘରକୁ ଖସିଗଲେ ।

ସାରା ରାତି ମୁଁ ସେଇଠି ବସି ସକେଇ ସକେଇ କାନ୍ଦୁଥିଲି । ଏବଂ ନିଜକୁ ପ୍ରଶ୍ନ କରୁଥିଲି- ମୋର ଭୁଲ୍ କ'ଣ ? ମୁଁ ତ କୁକୁଡ଼ା ଖାଇନି । କୁକୁଡ଼ା ଖାଇବା କ'ଣ ଏତେ ବଡ଼ ଅପରାଧ ?

।। ଛଅ ।।

# ଏକାକୀ ପଦାତିକ

ଜୀବନର ବହୁବର୍ଣ୍ଣୀ ରୂପ ସଂପର୍କରେ ଏକ ଝାପ୍‌ସା ପରିଚୟ ହେଲା ପବିତ୍ର ଖ୍ରୀଷ୍ଟ କଲେଜ ଜଠରରେ ବଢୁଥିବା/ପଢୁଥିବା ସମୟରେ । ନିଜ ଗୋଡ଼ରେ ଠିଆହେବା, ନିଜ ଶିଙ୍ଗରେ ମାଟିତାଡ଼ି ମଣିଷ ହେବାର ନିଶା ଏଇଠି ମୋ ଭିତରେ ଗୋଟାଏ ଝୁଙ୍କ୍‌ରେ ପରିଣତ ହୋଇଗଲା । ମୁଁ ପାଠ ପଢ଼ିବି; ମୋ ଆଗରେ କି ପଛରେ କେହି ନ ଥାନ୍ତୁ ପଛକେ, ମତେ ଆଗକୁ ଆଗେଇବାକୁ ପଡ଼ିବ । ଘରୁ ଗୋଡ଼ କାଢ଼ି କଟକ ସହର ଆଡ଼କୁ ମୁହାଁଇଲା ଦିନ ବାରମ୍ବାର ମନେପଡ଼ି ଯାଇଥିଲା ବାପାଙ୍କର ସେଇ କେଇପଦ କଥା– 'ଘରେ ତମେ ସାତ ସାତଟା ପିଲା । ବଢ଼ି ମରୁଡ଼ିର ମାଡ଼ ଫି–ବରଷ ଲାଗିରହିଚି ଆମକୁ । ଆମ ଚଳ଼ଣି ତ ସବୁକିଛି ଏଇ ବିଲବାଡ଼ି ଫସଲରୁ । ଏ ବର୍ଷର ହାଲ ତ ଦେଖୁଚୁ । ତୁ ମାଟ୍ରିକ୍ ପାସ୍ କଲୁ । ଆମ ଗାଁରୁ, ଆମ ଘରୁ କେହି ଏତେ ବାଟଯାଏ ଯାଇ ନ ଥିଲେ । ଇଏ ମୋ ପାଇଁ ଗର୍ବର କଥା । ହେଲେ ଆଉ ଆଗକୁ ପଢ଼େଇବାର ଅବସ୍ଥା ମୋର ନାହିଁ । ତୁ ଏଣିକି ଚାକିରି–ବାକିରି କର । ସାନମାନଙ୍କ ବୋଝ ମୁଣ୍ଡା ।'

ମୋ ମାଟ୍ରିକ୍ ପଢ଼ା ସେ କାଳର ଏକାଦଶ ଶ୍ରେଣୀ ପାସ୍ । ବୋର୍ଡ଼ ପରୀକ୍ଷାରେ ହାୟର୍ ସେକେଣ୍ଡ କ୍ଲାସ୍ ହେଇଥାଏ । ଫାଷ୍ଟ କ୍ଲାସରେ ସାରା ଓଡ଼ିଶାରେ ସତୁରି ଜଣ ପିଲା ବି ନ ଥିଲେ । ସେତେବେଳକୁ ମତେ ବୟସ ପନ୍ଦର ଚାଲିଥିଲା । ଚାକିରି କରିବା ପାଇଁ ସର୍ବନିମ୍ନ ବୟସ ଅଠର ହେବା ଦରକାର । କ'ଣ କରିବି, କିଛି ବୁଦ୍ଧିବାଟ ଦିଶୁ ନ ଥିଲା । ଚାକିରି ଖୋଜିବାକୁ ଯଦି ମୁଁ କଟକ ଗଲି, ସେହି ସହରରେ ଯାଇ ରହିବି କେଉଁଠି ? ଖାଇବି କ'ଣ ? ଚଳିବା ପାଇଁ ପଇସା ଦବ କିଏ ? ମୋ ସାଙ୍ଗ ରବି ଭୂୟାଁ କଟକ ରେଭେନ୍ସା କଲେଜରେ ନାଁ ଲେଖାଇ ଇଷ୍ଟ ହଷ୍ଟେଲରେ ରହି ପଢୁଥାଏ । ଦିନେ ସେ ମତେ ଖଣ୍ଡେ ଚିଠି ଦେଲା– ତୁ କଟକ

ଚାଲିଆ । ମୋ ଦାଦା ପୋଲିସ କଲୋନୀରେ କ୍ୱାର୍ଟର ପାଇ ଏକୁଟିଆ ରହୁଛନ୍ତି । ଖୁଡ଼ୀ ଏବେ ଗାଁରେ । ତାଙ୍କୁ କହିଚି ତୋ କଥା । ସିଏ ତୋ ପାଇଁ ଗୋଟେ ଦି'ଟା ଟିଉସନ ବୁଝିଦେବେ । ଏବେ ତାଙ୍କରି ଘରେ ରହିଯିବୁ । ତା'ପରେ ଅନ୍ୟ ବାଟ ଦେଖିବା । କେବେ ଆସୁଚୁ ମତେ ଜଣା ।

ବୁଡ଼ିଯାଉଥିବା ଲୋକ କୁଟାଖଣ୍ଡିଏ ଆଶ୍ରା ପାଇଗଲା ଭଳି ମତେ ସାହସ ଟିକେ ମିଳିଗଲା । କିଛି ଗୋଟାଏ କିନାରା ପାଇଥିବାରୁ ମୁଁ ଭାରି ଖୁସି ହେଇଗଲି ମନେମନେ । ବାପାଙ୍କୁ ନକହି ବୋଉକୁ କହିଲି– 'ମୁଁ କଟକ ବାହାରିଲି । ସେଠି କୋଉଠି କ'ଣ କରିବି, ଜାଣେନା । ବାପାଙ୍କୁ ଟଙ୍କା ମାଗିବାକୁ ମୁଁ ଚାହେଁନା । ସେ ପୁଣି ସାତଟା ଛୁଆ ଆଉ ପ୍ରତିବର୍ଷର ବନ୍ୟା–ମରୁଡ଼ି କଥା ମତେ ଶୁଣେଇବେ । ତୁ ମତେ କିଛି ଟଙ୍କା ଦେଇପାରିବୁ କି ? ତୋ ସଞ୍ଚିତ ଧନରୁ'–

ବୋଉର ଆଖି ଛଳଛଳ ହେଇଗଲା ।

ମୋର ଝାପ୍‌ସା ହେଇ ମନେପଡୁଚି, ଆମେ ସାତଟା ଭାଇଭଉଣୀ ଘରେ ଏକାଠି ହେଇଗଲେ ଘର ଉଠୁଥାଏ, ପଡୁଥାଏ । ହୋ–ହା ଘୋ–ଘା ସଦାବେଳେ ଲାଗି ରହିଥାଏ । ମରାମରି ପିଟାପିଟି ହେଉ । ସେତିକିବେଳେ ବୋଉ ଭାରି ବିରକ୍ତ ହୁଏ । ମତେ କହେ– 'ତତେ ଆଗ ବୋଡ଼ିଂରେ ରଖେଇ ଦେଲେ ଯାଇ ମତେ ନିସ୍ତାର ।' ସେତେବେଳେ ମୁଁ ବୋଧେ ବେଶି ଦୁଷ୍ଟାମି କରୁଥିଲି । ହେଲେ ସେକଥା କେବେ କରିବ, ତାହାର ପ୍ରୟାସ ମଧ୍ୟ ସେ କେବେ କରି ନାହିଁ । ଏହା ନ କରିବାର କାରଣ ହୁଏତ ଆମ ପରିବାରର ଆର୍ଥିକ ଦୁଃସ୍ଥିତି ହେଇପାରେ ; କିମ୍ୱା ନିଜ ପିଲାମାନଙ୍କୁ ଅତ୍ୟଧିକ ଭଲ ପାଉଥିବା ହେତୁ କୃତ୍ରିମ କ୍ରୋଧ ପ୍ରକାଶ ପାଇଁ ସେ ଏସବୁ କହିଥାଇପାରେ ।

ଆଜି ଯେତେବେଳେ ଘର ଛାଡ଼ି ଦୂରକୁ ଯିବା ନିଷ୍ପତ୍ତି କଥା ମୁଁ ଶୁଣାଇଲି, ମାଆ ମନର କୋହ ଉଦ୍‌ବେଳିତ ହୋଇଉଠିଲା । ପିଲାମାନଙ୍କ ମଧ୍ୟରେ ମୁଁ ବଡ଼ମଝିଆ । ମୋ ଉପରେ ଜଣେ ବଡ଼ ଭଉଣୀ ଓ ଜଣେ ବଡ଼ଭାଇ । ବଡ଼ପୁଅ କି ସାନପୁଅର ଗେହ୍ଲା ମତେ କେବେ ମିଳେ ନାହିଁ । ମୋର ଧାରଣା ହେଇଯାଇଥିଲା– ଏ ମଝିଆଁ ପିଲାଗୁଡ଼ାକ ମଲେ କି ଗଲେ ବାପା–ମାଆଙ୍କର ବିଶେଷ ଚିନ୍ତା ନ ଥାଏ । ମାତ୍ର ଏବେ ବୁଝୁଚି, ମାଆ ମନରେ ସବୁ ପିଲାଙ୍କ ପ୍ରତି ସ୍ୱତନ୍ତ୍ର ଦରଦ ଥାଏ । ସେ ମୁହଁରେ ଯାହା ପ୍ରକାଶ କଲେ ମଧ୍ୟ ତା'ର ହୃଦୟରେ

ବାତ୍ସଲ୍ୟ ଭରି ରହିଥାଏ । ବୋଧେ ସେଠି ସବୁ ପିଲାଙ୍କ ପାଇଁ ଅଲଗା ଅଲଗା କୋଠରି । ବାହାରକୁ ସେ କେବଳ ମାଆଟିଏ ।

ବୋଉ କିଛି ନ କହି ତା' କାଠ ଆଲମାରୀର ଗୋପନୀୟ ଠଣାସବୁ ଉଣ୍ଡାଳିଲା । ବହୁ କଷ୍ଟରେ ଗୋଟାଏ ଟଙ୍କା ଓ କିଛି ଚାରଣି, ଅଣି, ଦୋଅଣି ପାଇଗଲା । ମୋ ଆଗରେ ସେତକ ପଇସା ଥୋଇଦେଇ କହିଲା- 'ମୋ ସଞ୍ଚିଲା ଧନ ଏତିକି । ଏଥିରୁ ତୁ ଯାହା ନବାର ନେ । ଅଧିକା କିଛି ଦେଇ ପାରିବାର କ୍ଷମତା ଏବେ ମୋର ନାହିଁ ।' ମୁଁ କିଛି ନ ନେଇ କଟକ ବାହାରି ପଡ଼ିଲି । ବୋଉ ମୋ ପଛେପଛେ ଆସି ମୋ ପ୍ୟାଣ୍ଟ ପକେଟରେ ଟଙ୍କାଟିଏ ଗୁଞ୍ଜି ଦେଲା । କହିଲା- ପାଖରେ ଥାଉ; ନିହାତି ଦରକାର ପଡ଼ିଲେ ଖରଚ କରିବୁ । କୋଉଠି ରହିଲୁ, କେମିତି ରହିଲୁ, ଟିକେ ଖବର ଜଣେଇବୁ । ମୋ ବାପାଟା ପରା !

ଆଉ ପଛକୁ ଫେରି ଚାହିଁ ନାହିଁ ମୁଁ । ବୋଉର କୋହ ଥମ୍‌ଥମ୍ ସ୍ୱର ମତେ ଦୁର୍ବଳ କରି ଦେଇପାରେ । ପୁଣି ଘରମୁହାଁ ହେଲେ ମୋ ଲକ୍ଷ୍ୟ ପଥରେ ଆଗେଇ ପାରିବି ନାହିଁ । ଘରୁ ବାହାରିବାମାତ୍ରେ ମନେ ପଡ଼ିଗଲା, ଆମ ଗାଁର ଦୁଇପଟେ ନଈ । ଦକ୍ଷିଣପଟେ ମହାନଦୀ; ଉତ୍ତରପଟେ ଚିତ୍ରୋତ୍ପଳା । ଦୁଇଟାଯାକ ନଈ ବନ୍ୟା ପାଣିରେ ଏବେ ଭରାପେଟ- ଉଛୁଳୁମୁଛୁଳୁ । ନଈ ପାରି ହେଲା ପରେ ମତେ ଚାଲି ଚାଲି କଟକଯାଏ ଯିବାକୁ ପଡ଼ିବ । ତେଣୁ ଅପେକ୍ଷାକୃତ କମ୍ ବାଟ ପଟେ ଯିବାକୁ ସ୍ଥିର କଲି । ଦକ୍ଷିଣପଟେ କିଶୋରନଗର ନଈବନ୍ଧ । ସେ ବାଟେ ଗଲେ ପାଞ୍ଚ ଛଅ କିଲୋମିଟର ବାଟ କମ୍ ପଡ଼ିବ । ସେଇୟା କଲି । ସେଇ ବାଟେ ଆସିଲି ।

ନଈକୂଳେ ପହଞ୍ଚିଲାବେଳକୁ ଡଙ୍ଗା ଆରପଟେ । ଘଣ୍ଟାଏ ଲାଗିବ ନିଶ୍ଚେ ଏପଟେ ଫେରିଆସି ପହଞ୍ଚିଲା ବେଳକୁ । ନଈ ଘାଟରେ ଠିଆ ହେଲି ଅନ୍ୟମାନଙ୍କ ଭଳି । ଉଛୁଳା ନଈ । ଗୋଳିଆ ପାଣି । ସେପାରିକି ଆଖି ପାଉ ନ ଥାଏ । ସେତିକିବେଳେ ଆକାଶରେ ଚକ୍କର ମାରୁଥାଏ ଗୋଟାଏ ଉଡ଼ାଜାହାଜ । ଲୋକେ କୁହାକୁହି ହେଉଥାନ୍ତି, ଇଏ ଆମ ନୂଆ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ- ଆକାଶରେ ଉଡୁଚି । ଆକାଶରୁ ବନ୍ୟା ପରିସ୍ଥିତି ମାପୁଚି । ବୋରାବୋରି ତ କହୁଚି, କାହାରି ଛପର ଘର ରଖିବି ନାଇଁ । ଦେଖାଯାଉ, କ'ଣ କରୁଚି ।

ପାଖରେ ଜଣେ ମଳିମୁଣ୍ଡିଆ ଅଧାବୟସିଆ ଲୋକ ଠିଆ ହେଇଥିଲା ।

କ'ଣ ବୁଝିଲା କେଜାଣି, ହୁଦସ୍ତ ପଚାରିଦେଲା ଜଣକୁ– ଆଚ୍ଛା ଅଲ୍ୟାଇ, ଆମ ଛପର ଉଡ଼େଇ ଦେଇ ଏ ମନ୍ତିରୀ କ'ଣ ଭଲ କରିବ ? ଭଲା କଥା– ଆମେ ଏବେ ରଇବୁ କୋଉଠି ? ଇଏତ ବଡ଼ ଆଚମ୍ଭିତ କଥା କଉଚି । ନାଇଁ ତେମେ କ'ଣ କଉଚ, କଉନା ।

ସେତିକିବେଳକୁ ଡଙ୍ଗା ଏପଟେ ଆସି ପହଞ୍ଚି ଯାଇଥିଲା । ଆମେ ଜଣ ଜଣ କରି ଡଙ୍ଗାରେ ଉଠିଲୁ । ଡଙ୍ଗାରେ ବସି ନଈ ପାର ହେଉଥିବା ବେଳେ ସାଧାରଣ ଲୋକଙ୍କର ରାଜନେତାଙ୍କ ଭାଷଣବାଜିର ଅର୍ଥ ତର୍ଜମାକୁ କୌତୂହଳୀ ହୋଇ ଚିନ୍ତା କରୁଥିଲି । ଆମ ରାଜନେତାମାନେ କେବେ ସାଧାରଣ ଲୋକଙ୍କ ସ୍ତରକୁ ଆସିବେ । କେବେ ସେମାନେ ଲୋକଙ୍କ ସ୍ତରକୁ ଆସି ତାଙ୍କ କଥାର ବାସ୍ତବତା ସହିତ ପରିଚିତ ହେବେ । ଆଉ ଆମ ଲୋକେ କେବେ ରାଜନେତାଙ୍କ କଥାର ଅସଲ ମର୍ମ ବୁଝିବେ । ଏ କଥାର ଆଦି-ଅନ୍ତ ଖୋଜି ଖୋଜି ମୁଁ ନଈପାରି ହେଇ ଚାଲିଥିଲି ।

ଚାଲି ଚାଲି କଟକ ଆସିବା ଇଏ ମୋର ଦ୍ୱିତୀୟ ଥର । ଅଷ୍ଟମ ଶ୍ରେଣୀ ପରୀକ୍ଷା ଦେଇସାରି ସାଲେପୁର ମାଛୁଆଡିରୁ ଥରେ କଟକ ଆସିଥିଲି ବାଧବାଧକତାରେ । ସାଙ୍ଗରେ ଥିଲେ ମୋ ନାନୀର ଶ୍ୱଶୁର । ନାନୀ ଅସୁସ୍ଥ । କଟକରେ ଚିକିତ୍ସିତ ହେଉଥିଲା । ତାକୁ ଦେଖିବାକୁ ପ୍ରବଳ ଇଚ୍ଛା ହେଲା । ଘରୁ ଟଙ୍କା ଧରି ଆସିଥାଏ । କ'ଣ ପାଇଁ କେଜାଣି ସେଦିନ ବସ୍ ଧର୍ମଘଟ ହେଇଥିଲା । ଦିଆସିଲି ଖୋଳ ଭଳି କୁଜୀ ବସ୍‌ରେ ଠିଆ ହେବାର ରାହା ନ ଥିଲା । ସେତେବେଳେ ରାସ୍ତାରେ ଖୁବ୍ କମ୍ ବସ୍ ଚାଲୁଥିଲା ।

ଏଠି ଆଉ ଠିଆହୋଇ ଲାଭ ନାହିଁ । ଆଗ ଷ୍ଟପେଜ୍‌କୁ ଯିବା– ଏମିତି କହି କହି ବହୁଗ୍ରାମ, ଖଇରା ପୋଲ, ଜଗତପୁର ଟପି ମହାନଦୀ ରେଲପୋଲ ଉପରେ ଚାଲି ଚାଲି କଟକରେ ଯାଇ ପହଞ୍ଚିଥିଲୁ । ଭାରି ବାଧିଥିଲା ସେଥରକ । ଗୋଡ଼ ଫୁଲି ଯାଇଥିଲା । କିନ୍ତୁ ନାନୀକୁ ଦେଖିବା ପରେ ଅନେକ ଆଶ୍ୱସ୍ତି ମିଳିଥିଲା । ମାତ୍ର ଏଥରକ ଚାଲିଥିଲି ଏକୁଟିଆ । ଆଶ୍ୱାସନା ଦେବାକୁ କେହି ନ ଥିଲେ । ଆଗରେ ଆଉ ସାଙ୍ଗରେ ମୋର ଥିଲା ସୀମାହୀନ ହତାଶା ।

ତଥାପି ଭାଙ୍ଗିପଡ଼ି ନ ଥିଲି ।

ପଚିଶି କିଲୋମିଟର ରାସ୍ତା ।

କଟକରେ ପହଞ୍ଚିଲାବେଳକୁ ଦିନ ରତରତ ।

ବକ୍ସିବଜାର ଟପି ଶୈଳବାଳା କଲେଜ ବାଟ ଦେଇ ତୁଳସୀପୁରକୁ ଗଲାବେଳେ ଗୋଟାଏ ଦୃଶ୍ୟ ମୋ ମନକୁ ଚହଲେଇ ଦେଇଥିଲା । ଏଣେ ପେଟରେ ଅସୁମାରି ଭୋକ । ତଥାପି ସେ ଦୃଶ୍ୟଟି ଗୋଟାଏ ଭିନ୍ନ ଇଲାକାକୁ ମୋ ମନକୁ ଟାଣି ନେଇଥିଲା । ବୋଧହୁଏ ଏଇଟା ହିଁ ଜୀବନର ସବୁଠୁଁ ବଡ଼ ରହସ୍ୟମୟ ବିରୋଧାଭାସ । କ୍ଷୁଧା ଏବଂ ପ୍ରେମର ଅପହଞ୍ଚ ଜଗତରେ ବେଳେବେଳେ ହୁଏ ମଣିଷର ସ୍ୱପ୍ନାଭିସାର । ମୁକ୍ତ ମନର ଅନନ୍ତ ଆକାଶ ପରିକ୍ରମା କରିବାର ଇଚ୍ଛା । ସ୍କୁଲରେ ପାଠ ପଢ଼ିଲା ସମୟରେ ଆମମାନଙ୍କୁ ବଡ଼ବଡ଼ିଆମାନେ ମନା କରି ଦେଇଥିଲେ ଉପନ୍ୟାସ ପଢ଼ିବାକୁ । ଭାବବିଭୋର ହୋଇ ଦିବାସ୍ୱପ୍ନ ଦେଖିବାକୁ ମନା । ସମବୟସ୍କା ଝିଅମାନଙ୍କ ସହିତ ଏକୁଟିଆ କଥାବାର୍ତ୍ତା ହେବାକୁ ବି ପୂରାପୂରି ମନା । କାରଣ ଏହାଦ୍ୱାରା ଚରିତ୍ର ନଷ୍ଟ ହେଇଯାଏ । ସେମାନେ ସତର୍କ କରି କହୁଥିଲେ– ଥରେ ଚରିତ୍ର ଖରାପ ହେଇଗଲେ ଆଉ ଠିକ୍ ହେବା ଭାରି କଠିନ ବ୍ୟାପାର ।

ମାତ୍ର ନେମାଳ ହାଇସ୍କୁଲରେ ପଢ଼ିବାବେଳେ ଏଥିରେ ବ୍ୟତିକ୍ରମ ଆଣିବାରେ ପ୍ରଥମ ପ୍ରୟାସ କରି ଦେଇଥିଲେ ମୋର ପୂଜ୍ୟ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ପାଢ଼ୀ । ସେ ଆମକୁ ଲାଇବ୍ରେରୀ ବହି ପଢ଼ିବାକୁ ବାଧ କରୁଥିଲେ । କାହ୍ନୁଚରଣଙ୍କ ଅଧିକାଂଶ ବହି ମୁଁ ସେତିକିବେଳେ ପଢ଼ିସାରି ଦେଇଥିଲି । ଏହାଛଡ଼ା କିଛି କଲିକତୀ ଶସ୍ତା ନଭେଲ ପଢ଼ିବାର ଦୁର୍ବାର ଲାଳସା ମୁଁ ଛାଡ଼ିପାରି ନ ଥିଲି । ସେଇ ବହିରେ କୋଉଠି ଗୋଟେ ପଢ଼ିଥିଲି– 'ସଂଜ ହେଲେ କଟକ ସହର ରାସ୍ତାରେ କୁହୁକିନୀ ନାରୀମାନେ ଉଡ଼ି ବୁଲନ୍ତି । କଟକ ବାଟ ବଡ଼ ଖସଡ଼ା ।' ସେଇ କଥା ହୁଦସ୍ତ ଆସି ମନକୁ ଛୁଇଁଦେଲା । ଏବେ ଆସନ୍ନ ସନ୍ଧ୍ୟା । କୁହୁକିନୀ ନାରୀ ବୋଧେ କଟକ ରାସ୍ତାରେ ବୁଲିଲେଣି ।

ଆଗରେ ଯୁବତୀ ଜଣେ ରିକ୍ସାରେ । ସାଇକେଲରେ ଯାଉଥାଏ ଜଣେ ଯୁବକ । ଯଥାସମ୍ଭବ ପାଖାପାଖି ଚାଲିଛନ୍ତି ସେମାନେ । ଯୁବକଜଣକ କିଛି ଗୋଟାଏ ଜିନିଷ ଯୁବତୀଟିକୁ ଦେଉଚି । କିନ୍ତୁ ସେ ନେଉନି । କିଏ ଦେଖୁଥିବ– ଆଖିରେ ଏଇ ଭାବ ! (ସେ କିଏ, ଏ ପଥଚାରୀ ମୁଁ ନୁହେଁ ନିଶ୍ଚେ । ମୁଁ ତ କଟକ ସହରର ସଂସ୍କୃତିର ଅଂଶ ନୁହେଁ– ବହିରଙ୍ଗଟିଏ) କଲେଜ ଗେଟ ସାମ୍ନାରେ

ଯୁବତୀଜଣକ ଓହ୍ଲେଇଲେ ରିକ୍ସାରୁ । ଯୁବକଟି ଆଡ଼କୁ ଚାହିଁ ଆଞ୍ଜୁଳାଏ ହସ ଫିଙ୍ଗିଦେଲେ । ହାତ ହଲାଇ ବିଦାୟ ସଂକେତ ଦେଲେ । ଦୁହିଁଙ୍କ ଭିତରୁ ଜଣେ କିଏ କହିଲା– 'ବାଏ, ପୁଣି ଦେଖା ହେବ ସେଇଠି ।'

ସେମାନଙ୍କୁ ପଛରେ ଛାଡ଼ି ମୁଁ ଆଗେଇଲି ଆଗକୁ ।

ମୋ ଆଶ୍ରୟସ୍ଥଳ ପାଖ ହେଇ ଆସିଲାଣି ।

କିନ୍ତୁ ମୋ ଭାବନାରେ ପୂର୍ଣ୍ଣଚ୍ଛେଦ ନ ଥିଲା ।

କାହିଁ, ଏମାନଙ୍କ ଚରିତ୍ର ତ ନଷ୍ଟ ହେଉନି ଏଠି ।

ବୋଧେ କଟକରେ ଚରିତ୍ର ଭିନ୍ନେ ଚିଜ ।

ବାଟରେ ପଡ଼ିଲା ଖ୍ରୀଷ୍ଟ କଲେଜ ।

କେଜାଣି କାହିଁକି ମୋ ମୁଣ୍ଡ ନଇଁଗଲା ସେଇଠି ।

ଏଠିକି ଦିନେ ଆସିପାରନ୍ତି କି !

କଲେଜ କ'ଣ କେମିତିଆ ଦେଖନ୍ତି–

ଜୀବନର ଏକ ଅବଦମିତ ଇଚ୍ଛା...

'ନିଶ୍ଚେ ଆସିବି'– ମନରେ ପୁଣି ହାବୁକାମରା ବିଶ୍ୱାସ ।

ଏଥର ଖୁବ୍ ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଆଗେଇଲି । ମତେ ତୁଳସୀପୁର ପୋଲିସ କଲୋନୀରେ ପହଞ୍ଚିବାକୁ ହେବ । ସଂଜ ହେଇ ଆସୁଚି । ରବିର ଦାଦାଙ୍କ କ୍ୱାର୍ଟର ଖୋଜି ପହଞ୍ଚିବାକୁ ହେବ । ରବିଟା ମୋ ଚିଠି ପାଇଥିବ କି ନା ଜଣା ନାଇଁ । ପାଇଥିଲେ ସେ ନିଶ୍ଚେ ଆସିଥିବ । ସିଏ ତ ଏସବୁ ଘଟଣାର ସୂତ୍ରଧର ।

ନ ପାଇଥିଲେ, ହତାଶ–

ମତେ ରାମଭାଇଙ୍କ କ୍ୱାର୍ଟର ମିଳିଯାଇପାରେ ।

କିନ୍ତୁ ସେ ଅଫିସ୍‌ରୁ ଫେରି ନ ଥିବେ । ଏକୁଟିଆ ଲୋକ । ଘରକୁ ତରତର ହେଇ ଫେରିବାର କାରଣ କିଛି ନାହିଁ । ମୁଁ ଆଜି ଆସିବି ଓ ତାଙ୍କ କ୍ୱାର୍ଟରରେ ରହିବି ସେ ଏକଥା ଜାଣିବେ କେମିତି । ମତେ ଶେଷକୁ ତାଙ୍କ କ୍ୱାର୍ଟର ବାରଣ୍ଡାରେ ଅପେକ୍ଷା କରିବାକୁ ପଡ଼ିବ ।

ଦେଖାଯାଉ–

ଯାହା ଠାକୁରଙ୍କ ଇଚ୍ଛା–

।। ସାତ ।।

# ଖଣ୍ଡ ଖଣ୍ଡ ଦୁଃଖମାନେ

ଚିଠିପତ୍ରମାନେ ସେ କାଳରେ ଠିକ୍ ସମୟରେ ଯା'ଆସ କରୁଥିଲେ । ଆଜିକାଲିକା ଭଳି ହଜି ଯାଉ ନ ଥିଲେ; କିମ୍ୱା ତାଙ୍କ ଇଚ୍ଛା ମୁତାବକ ଗତି କରୁ ନ ଥିଲେ । ଗାଁରୁ ମୁଁ ପଠାଇଥିବା ଚିଠିଖଣ୍ଡକ ତା' ପରଦିନ ରବିକୁ ମିଳିଯାଇଥିଲା । ତେଣୁ ସେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅନୁମତି ନେଇ ଚାରିଟାବେଳକୁ ଆସି ତା' ଦାଦା ଘରେ ବସିଥିଲା । କେବଳ ମତେ ଅପେକ୍ଷା କରିଥିଲା । ଆଗରୁ ଚିଠିରେ ସେ ପୋଲିସ କଲୋନୀରେ ତା' ଦାଦାଙ୍କ କ୍ୱାର୍ଟର ନମ୍ବରଟି ମତେ ଜଣେଇ ଦେଇଥିଲା ।

ତେଣୁ ସେ କ୍ୱାର୍ଟର ଖୋଜି ପାଇବା ବେଶି କଷ୍ଟ ହେଲାନି । ବରଂ ସେଠି ରବିକୁ ଦେଖି ମତେ ବେଶି ଖୁସି ଲାଗିଲା । ଠାକୁରଙ୍କୁ ଅଶେଷ ପ୍ରଣାମ ଜଣାଇଲି । ମୋ ଚିନ୍ତା ଗଲା । ଦୁଇ ବନ୍ଧୁ ଅନେକ ସମୟ ଧରି ଏକାଠି ବସି ନାନା ପ୍ରକାର ଯୋଜନା କଲୁ । ରାତି ଆଠଟା ବେଳକୁ ତା' ରାମ ଦାଦା ଆସିଲେ । ସେ ମୋ ପାଇଁ ଦୁଇଟା ଟିଉସନ ଯୋଗାଡ଼ କରିଥିବା କଥା କହିଲେ । ସବୁଠୁଁ ସାହାଯ୍ୟକାରୀ ଘଟଣାଟିଏ ମଧ୍ୟ ସେ ଯୋଡ଼ିଲେ । ସେ କହିଲେ, ତମ ପାଇଁ ପ୍ରଥମ ଟିଉସନ– ଏଇ କଲୋନୀରେ ଜଣେ ଡିଏସ୍‌ପିଙ୍କ ଦୁଇଟା ପିଲା । ସେଇଟା କିଛି ଅସୁବିଧା ହବନି । ଆରଟି ମୋ ଭଣଜା । ସେ ଯାଇ ତଳତେଲେଙ୍ଗା ବଜାରରେ । ସେଠିକି ଯା–ଆସ କରିବା ପାଇଁ ସାଇକେଲଟାଏ ନିହାତି ଦରକାର । ପ୍ରଥମ ଦିନ ପାଇଁ ମୋ ବଡ଼ ଭଣଜାକୁ କହିଚି; ସେ ଆସି ଏଠୁ ତମକୁ ତାଙ୍କ ଘରକୁ ନେଇଯିବ । ସେ କହୁଥିଲା, ତାଙ୍କର ଗୋଟେ ପୁରୁଣା ସାଇକେଲ ଅଛି । ବିଶେଷ ଦରକାରରେ ଆସୁନି । ବର୍ତ୍ତମାନ ପାଇଁ ସେଇଥିରେ ତମେ ଯିବାଆସିବା କର । ମୁଁ ଭାବୁଚି– କିଛି ଦିନ ଚଳିଯିବ ।

ଏକଥା ଶୁଣି ଚାଲି ଚାଲି ଏତେ ବାଟ ଆସିଥିବାର କ୍ଳାନ୍ତି ମୁଁ ପୂରା ଭୁଲିଗଲି । ମୁହଁରେ ଟିକିଏ ହସ ଫୁଟିଉଠିଲା । ଆଶା ଉଜ୍ଜ୍ୱଳି ଉଠିଲା । କୃତଜ୍ଞତା ଜଣାଇବା କଥା ରବିକୁ- ରାମଭାଇଙ୍କୁ । ହଁ, ଗୋଟାଏ କଥା ଭୁଲିଯାଉଚି । ରବିର ମାଆ ମୋ ବାପାଙ୍କର ଧର୍ମ-ଝିଅ । ସେଇ ସୂତ୍ରରେ ରବି ମୋର ଭଣଜା । ଆମେ ହାଇସ୍କୁଲରେ ପଢ଼ିଲାବେଳେ ମାମୁ-ଭଣଜା ଡକାଡକି ହେଉ । ସେ ସଂପର୍କରେ ମୁଁ କୃତଜ୍ଞତା ଜଣାଇବାର ପ୍ରଶ୍ନ ଉଠୁଚି କୋଉଠୁ ? ରବିକୁ ଆସିଲାବେଳର ସବୁ କଥା କହି ସାରିଥିଲି । ରାତି ନଅଟା ପାଖାପାଖି ହେଲା । ରବି ହଷ୍ଟେଲ ଫେରିଯିବାକୁ ବାହାରିଲା । ମୁଁ ତାକୁ ବାଟେଇ ଦବାକୁ ଆସିଲି । ସେ ରିକ୍‌ସାରେ ବସିବା ପୂର୍ବରୁ ହଠାତ୍ ବିଳିବିଳେଇଲା ଭଳି ହୋଇ ତା' ପକେଟରୁ କୋଡ଼ିଏ ଟଙ୍କା ବାହାର କରି ମୋ ପକେଟରେ ଗୁଂଜି ଦେଲା । ମୁଁ କ'ଣ କ'ଣ ବୋଲି ପଚାରିବା ବେଳକୁ ସେ କହିଉଠିଲା- 'ଆରେ ମୁଁ ଭୁଲି ଯାଇଥିଲି । ଅକସ୍ମାତ୍ ମନେ ପଡ଼ିଗଲା । ରଖ, ଇଏ ମୋର ପକେଟ ଖର୍ଚ୍ଚା ପଇସା । ବାପାଙ୍କୁ ଲୁଚେଇ ପ୍ରତି ମାସରେ ବୋଉ କିଛି କିଛି ଟଙ୍କା ଦିଏ । ସେ ଜାଣେ, ମୁଁ ପ୍ରତିଦିନ ୭/୮ ଥର ଗୁଡ଼ାଖୁ ଘଷେ । ସେଥିପାଇଁ ସେ ମତେ ଅଲଗା ଟଙ୍କା ଦିଏ । କଲେଜରେ ପାଠପଢ଼ା ଜଞ୍ଜାଳରେ ଦୁଇଥରରୁ ତିନିଥର ଗୁଡ଼ାଖୁ ସେବା ହେବା କଷ୍ଟ । ମୋ ପ୍ରକୃତି ତ ଜାଣିଚୁ । ଦାନ୍ତମୂଳେ ଟେଳାଏ ଗୁଡ଼ାଖୁ ଗୁଂଜି ଏବେ କ୍ଲାସକୁ ଚାଲିଯାଉଚି । ଅବଶ୍ୟ ଥରେ ଧରା ପଡ଼ିସାରିଲିଣି । ଗଣିତ ସାର୍ କଡ଼ାପାନ ଭାବି ତାଗିଦ କରି ଛାଡ଼ି ଦେଇଛନ୍ତି ।

ତା' କଥା ଶୁଣିସାରି ମୁଁ କହିଲି, ତୋ ଅଭ୍ୟାସ କଥା ତ ମୁଁ ଜାଣେ । କିନ୍ତୁ ତୋର ଏ ପଇସା କଥା-

ରବି କହିଲା- ତୁ ବ୍ୟସ୍ତ ହଅନା । ମୁଁ ଏ ପଇସା ବ୍ରାହ୍ମଣକୁ ଦାନ କରୁ ନାହିଁ । ମୁଁ ତୋଠୁଁ ଏତକ ନିଶ୍ଚୟ ଫେରେଇ ନେବି । ଏଇନା ହଷ୍ଟେଲରେ ଭାରି ଚୋରି ହଉଚି । ଏଠି ତ ତୋ ପାଖରେ ଚୋରି ହବନି । ମୁଁ ଠିକ୍ ବେଳେ ତୋଠୁଁ ମାଗିନେବି, ହେଲା; ଡେରି ହେଇଗଲାଣି । ରବିବାରିଆ ଖରାବେଳେ ମୁଁ ଆସିବି । ସେତେବେଳେ ବସି କଥା ହେବା, ଏବେ ଯାଉଚି-

ରବି ଚାଲିଗଲା ହଷ୍ଟେଲ ।

ମୋ ମୁଣ୍ଡ ଉପରେ ଦେଖା ଦେଇଥିବା କଳା ବାଦଲ ଏକପ୍ରକାର ଘୁଞ୍ଚିଗଲା ଭଳି ଲାଗିଲା । କ୍ଳାନ୍ତି ଯୋଗୁଁ ରାତିରେ ଭଲ ନିଦଟେ ହେଇଗଲା । ସକାଳୁ ଉଠି

ନିତ୍ୟକର୍ମ ସାରିଲା ବେଳକୁ ରାମଭାଇଙ୍କ ବଡ଼ ଭଣଜା ମଣ୍ଟୁ ସାଇକେଲ ଧରି ହାଜର । ତାକୁ ସହରରେ ସାଇକେଲ ଚଲାଇ ବୁଲିବାକୁ ମନ । ତା'ର ଗୋଟେ ନୂଆ ରାଲେ ସାଇକେଲ କିଣା ହେଇ ଅଛି । ସେ ସାଇକେଲ ଚଲାଇବା ବେଳେ ଭାରି ଅନ୍ୟମନସ୍କ ହୁଏ । ସେଥିରେ ନାନା ଏକ୍ସପେରିମେଣ୍ଟ କରେ । ତେଣୁ ପ୍ରାୟ ପ୍ରତିଦିନ ଆକ୍ସିଡେଣ୍ଟ କରେ । ରାମଭାଇ ତାକୁ ପ୍ରଥମେ ପଚାରିଲେ, ଆସିଲାବେଳେ କୋଉଠି ଆକ୍ସିଡେଣ୍ଟ କରିନୁ ତ ? ସେ ବୀର ଦର୍ପରେ କହିଲା, ମାମୁ ! ମୁଁ ପରା ବଡ଼ ପିଲା ହେଇଗଲିଣି । ତମ ଭଳି ମାମୀ ତୁଛାଟାରେ ଡରି ମତେ ସାଇକେଲ ଦଉନି । ହେଇ ଦେଖ, ଆଜି ପୁଣି ଦେଲା ତ ! ଦରକାର ପଡୁନି ବୋଲି ମୁଁ ସାଇକେଲ ବାହାର କରୁନି । ମୁଁ ସାଇକେଲ ଧରି ବାହାରିଲେ ସେ କ'ଣ ମତେ ଅଟକେଇ ପାରିବ ?

ମତେ ଚାହିଁ ମଣ୍ଟୁ କହିଲା, ହଉ ମାମୁ, ତେମେ ଚାଲ; ଆମ ଘରେ ପହଞ୍ଚି ମାମୀକୁ ମୋ ସାଇକେଲ ଚାଳନାର ଦକ୍ଷତା ବିଷୟରେ ଟିକେ ଭଲ କରି ବୁଝେଇ ଦବ । ମତେ ଏଣିକି ସବୁଦିନେ ମୋ ନୂଆ ସାଇକେଲଟା ମିଳିଯିବ । ମୁଁ କ'ଣ ଆଉ ଛୋଟ ପିଲା ହେଇ ରହିଚି ।

ମଣ୍ଟୁ କଥା ଶୁଣି ମୁଁ ପ୍ରମାଦ ଗଣିଲି । ତା' ସାଇକେଲ ଚାଳନାର ଦକ୍ଷତା ବିଚାର କରିବା ଅର୍ଥ ମୁଁ ଅନୁମାନ କରିନେଲି । ଅର୍ଥାତ୍ ସେ ସାଇକେଲ ଚଲେଇବ; ଆଉ ମୁଁ ତା' ପଛରେ ବସିକରି ଯିବି । ମୁଁ ତାକୁ ବୁଝାଇବାକୁ ଚେଷ୍ଟା କଲି । ଶୁଣ, ମୁଁ ସାଇକେଲ ଚଲାଇବି; ତମେ ବସିକରି ଚାଲ । ମାତ୍ର ସେ ନଛୋଡ଼ବନ୍ଧା । ଓଲଟା ଯୁକ୍ତି କଲା, ମୁଁ ସାଇକେଲ ନ ଚଲେଇଲେ ଆମ ଘର ବାଟ ଦେଖେଇବ କିଏ ? ତେମେ ତ କଟକ ସହରରେ ନୂଆ । ବାଟଘାଟ ଗଳି ରାସ୍ତା ସବୁ ଜାଣିନା । ହଁ, ଜାଣିଗଲା ପରେ ଚଲେଇ କରି ଯିବ । ଏବେ ଚାଲ– ବସ ।

ଅଗତ୍ୟା ତା' ପଛରେ ବସିକରି ଗଲି । ମଣ୍ଟୁ ବାଟଯାକ ସାଇକେଲ ଚାଳନାର ନାନା କୌଶଳ ଦେଖାଇ ସେ ବିଷୟରେ ଲମ୍ବା ଲମ୍ବା ଭାଷଣ ଦେଇ ଚାଲିଥିଲା । ଗୋଟାଏ ହାତରେ ସାଇକେଲ ଚଳାଇବାର କୌଶଳ ଦେଖାଉ ଦେଖାଉ ଜଣେ ଚୁଲା ପରିବା ବିକାଳି ବୁଢ଼ା ସାଙ୍ଗରେ ଧକ୍କା କଲା । ତା'ର ପରିବାଯାକ ରାସ୍ତାରେ ଛିନ୍ନଛତ୍ର ହେଇ ପଡ଼ିଲା । ଆମେ ଦୁହେଁ ଚିତ୍‌ପଟାଙ୍ଗ । ମୋ ଆଣ୍ଠୁ ଛିଡ଼ି ରକ୍ତାକ୍ତ । ମଣ୍ଟୁ ଖସି ପଳାଇବା କଥା କହିସାରି ମୋ ଆଣ୍ଠୁ ଅବସ୍ଥା ଦେଖି ଚୁପ୍ ହେଇଗଲା ।

ମୁଁ ସେଇଥିରେ ଉଠିପଡ଼ି ଆଗ ସେ ବୁଢ଼ାକୁ ଧରି ଠିଆକଲି । ତା' ପରିବାତକ ଗୋଟେଇ ଝାଡ଼ିଝୁଡ଼ି ତା' ଟୋକେଇରେ ଭରିଲି । ତା'ର କିଛି ଖଣ୍ଡିଆଖାବରା ହେଇଚି କି ବୋଲି ପଚାରି ବୁଝିଲି । ସେ କହିଲା, ନାଇଁ, ବାଁ ହାତ କହୁଣିଟା ଟିକେ ଆଞ୍ଚୁରି ହେଇଯାଇଚି । ସେ କିଛି ନୁହଁ । ତେମେ ଭଲ ଘରର ପିଲା । ଯା... ଯା...

ଆମେ ମଣ୍ଟୁ ଘର ପାଖରେ ପହଞ୍ଚିଲା ପରେ ମଣ୍ଟୁ କହିଲା, ମାମୁ, ମୋ ମାମୀକି ଏକଥା କହିବ ନାଇଁ । ତେମେ ଫେରିଲାବେଳକୁ ମୁଁ ଗଜ୍‌କନା ତୁଳା ଓଷଦ ପୁଡ଼ିଆ ଆର ସାଇକେଲରେ ଆଣି ଝୁଲାଇ ଦେଇଥିବି । ଘରକୁ ଫେରି ବ୍ୟାଣ୍ଡେଜ୍ ବାନ୍ଧିଦବ । ୟାଙ୍କ ସେ ବୁଢ଼ାଟାକୁ ଭଲକରି ଦିଶୁନି ମ ! ଦେଖି ନ ପାରି ସାଇକେଲ ଆଗକୁ ପଳେଇ ଆସିଲା । ମାମୁ, ସରି... !

ପ୍ରୋଗ୍ରାମ ମୁତାବକ ମଣ୍ଟୁ ସବୁ କାମ ଠିକ୍‌ଠାକ୍ କରିଥିଲା ।

ମୋ ଆଣ୍ଠୁ ଖଣ୍ଡିଆ ପ୍ରସଙ୍ଗ ମୁଁ ଗୋପନ ରଖିଥିଲି ।

କିନ୍ତୁ ଯନ୍ତ୍ରଣାକୁ ଗୋପନ ରଖିପାରୁ ନ ଥିଲି ।

ଏ ଘଟଣାର ପରଦିନ ସାଇକେଲ ଚଳାଇବାକୁ ଭାରି କଷ୍ଟ ହେଲା ।

ଅଜାଗା ଘା; ଦେଖେଇ ହବନି କି କାହାକୁ କହି ହବନି । କଷ୍ଟକୁ ଆପଣାର କରି ହଜମ କରିବାକୁ ଚେଷ୍ଟା କଲି । ରବିବାର ଦିନ ଦି'ପହରକୁ ରବି ଆସିଲା । ମୋ ଢଙ୍ଗରୁ ସେ ଜାଣିପାରିଲା ଦୁର୍ଘଟଣା ବିଷୟରେ । ମୁଁ ମଣ୍ଟୁ କଥା ନ କହି ନିଜେ ପିଚି ହୋଇ ପଡ଼ିଯିବା କଥା ତାକୁ କହିଲି । ସେ ମତେ ସାଙ୍ଗରେ ନେଇ ଦେଉଳସାହି ଛକର ଏକ ଔଷଧ ଦୋକାନକୁ ଗଲା । ଗୋଟାଏ କି ଅଏଣ୍ଟମେଣ୍ଟ କିଣି ଆଣି ଲଗେଇବାକୁ ବାଧ କଲା । କହିଲା, ଦିନକୁ ଦି'ଥର ଲଗେଇଲେ ଆଗ ଦିନକୁ ଦରଜ ନ ଥିବ ।

ତାହାହିଁ ହେଲା ।

ମୁଁ ରବିକୁ ଧନ୍ୟବାଦ ଜଣାଇଲି ।

ତା'ର ଏ ବିଚକ୍ଷଣ ବୁଦ୍ଧିକୁ ପ୍ରଶଂସା କଲି । ଆମେ ଦୁହେଁ ଏକା ଗ୍ରାମୀଣ ପରିବେଶରେ ଜନ୍ମ । ଏକା ସ୍କୁଲରେ ଆମର ପାଠପଢ଼ା । କିନ୍ତୁ ସେ ଚଉଆଖିଆ । କିଛି ଗୋଟାଏ ହେଲେ ଔଷଧପତ୍ର କଥା ହଟାଦସ୍ତ ତାଙ୍କ ଘରେ ଚିନ୍ତା କରନ୍ତି । ଆମ ଘରେ ତା' ହଉ ନ ଥିଲା । ସବୁ କିଛି ଆପଣାଛାଏଁ ଭଲ ହବ– ଏଇ ବିଶ୍ୱାସ

ଥିଲା । ଏକଥା ମୁଁ ସେତେବେଳେ ଭାବି ପାରି ନ ଥିଲି ଯେ, ରବି ତା' ବାପା ମାଆଙ୍କର ଗୋଟାଏ ବିଲି ପୁଅ । ଆମେ ତ ଚାରିଚାରିଟା । ତେଣୁ ଆମ ପାଇଁ ବେଶି ଯତ୍ନ ଦରକାର ପଡୁ ନ ଥିଲା ।

ରବି ପ୍ରାୟ ପ୍ରତି ରବିବାର ଓ ଛୁଟିଦିନମାନଙ୍କରେ ଦି'ପହରେ ମୋ ପାଖକୁ ଛୁଟିଆସେ । ସେ ଜାଣିଥିଲା, ସକାଳ ଓଳି ମୁଁ ତଳତେଲେଙ୍ଗା ବଜାର ଯାଏ; ସନ୍ଧ୍ୟାବେଳେ ପୋଲିସ କଲୋନୀରେ ଟିଉସନ କରେ । ମୋର ମାସିକ ଆୟ ବାଇଶି ଟଙ୍କା । ସକାଳ ପାଇଁ ବାର ଟଙ୍କା; ସନ୍ଧ୍ୟା ପାଇଁ ଦଶ ଟଙ୍କା । ସେ ସମୟରେ ଦେଉଳସାହି ଛକରେ ଗୋଟିଏ ଭାତ ହୋଟେଲ ଥିଲା । ତା' ସାଙ୍ଗରେ ମୁଁ ଚୁକ୍ତି କରିଥାଏ, ଦି'ଓଳି ପାଇଁ ସେ ସର୍ବନିମ୍ନ ଅଠର ଟଙ୍କା ନବ । ଭାତ ଡାଲି ଭଜା । ମାସକୁ ଦି'ଥର ମାଛ କିମ୍ବା ମାଂସ ଖାଇଲେ ଆଉ ଟଙ୍କାଏ ଅଧିକା । ହୋଟେଲବାଲାର ଲକ୍ଷ୍ମଣରେଖାକୁ ଜଗି ଦି'ମାସ ଚଳିଲି । ଖର୍ଚ୍ଚ ପେଟ ପିଠିକି ନିଅଣ୍ଟ ପଡ଼ିଲେ ଗୋଟାଏ ଗୋଟାଏ ରାତି ଉପାସ ଶୋଇ ଯାଉଥିଲି । ଦିନେ ଦିନେ ରାତିଓଳି ଅଣାକର ଗୁଲୁଗୁଲା (ଅଟା ଓ ଗୁଡ଼ରେ ତିଆରି କଟକୀ ବସ୍ତିବାଲାଙ୍କ ପ୍ରିୟ ଖାଦ୍ୟ; ଗୋଲାକାର ତେଲଛଣା ଜିନିଷ; ଅଣାକରେ ପାଞ୍ଚଟା ମିଳୁଥିଲା)– ଖାଇ ଢକେ ପାଣି ପିଇ ଶୋଇ ଯାଉଥିଲି । ରାତି ଦିଇଟା ତିନିଟା ବେଳକୁ ଭୋକରେ ପେଟ କଁ-କଁ ହୁଏ । ନିଦ ଭାଙ୍ଗିଯାଏ । ଉଠିପଡ଼େ । ପୁଣି ଢୋକେ ପାଣି ପିଇ ଶୋଇବାକୁ ଚେଷ୍ଟା କରେ । ଏମିତି ଚାଲିଥିଲା ଜୀବନ ଚର୍ଯ୍ୟା ।

ଏ ନୂଆ ରୁଟିନ୍‌ବନ୍ଧା ଜୀବନରୁ ମୁକୁଳିବା ପାଇଁ ନାନା ବାଟ ଚିନ୍ତା କଲି ମୁଁ । ସକାଳ ଓ ସନ୍ଧ୍ୟାବେଳ ଛଡ଼ା ଦିନବେଳାକୁ କିଛି କାମରେ ଲଗେଇବା ପାଇଁ ଭାବିଲି । ରବିର ଆଉ ଜଣେ ଦାଦା ବଟଭାଇ ଉତ୍କଳ ବିଶ୍ୱବିଦ୍ୟାଳୟର ଶ୍ରୀରାମଚନ୍ଦ୍ର ଭଂଜ ପ୍ରେସରେ ଲାଇନୋ ଅପରେଟର୍ ଭାବେ କାମ କରୁଥିଲେ । ଗାଁରୁ ତାଙ୍କ ସାଙ୍ଗରେ ଘନିଷ୍ଠତା ବଢ଼ି ଯାଇଥିଲା । ଦି'ପହର ଖାଇବା ପରେ ତାଙ୍କ ପାଖରେ ଯାଇ ବସୁଥିଲି । ଏ ପ୍ରେସଟି ସେତେବେଳେ ପୋଲିସ କଲୋନୀ ପାଖରେ ଲାଗିକରି ଥିଲା । କେତେଥର ଗଲା ପରେ ଭାବିଲି, ତାଙ୍କୁ କହିବି କିଛି ଗୋଟାଏ କିନାରା ଖୋଜି ବାହାର କରିବା ପାଇଁ । ଅଠର ବର୍ଷ ନ ହେଲେ ତ କୌଣସି ସରକାରୀ ଚାକିରି ବାକିରି ମିଳିବ ନାହିଁ । ତେବେ କୌଣସି ଘରୋଇ ସଂସ୍ଥାରେ ଅନ୍ତତଃ କିଛି କାଳ ମୁଣ୍ଡ ଗୁଞ୍ଜି ଆଗକୁ ଆଗେଇବାର ବାଟ ଖୋଜି ହୁଅନ୍ତା ।

ଦିନେ ବଟଭାଇଙ୍କି ଏକଥା ଖୋଲି କହିଲି । ସେ ତତ୍‌କ୍ଷଣାତ୍ କହିଉଠିଲେ, ମୁଁ ତମକୁ ସେଇ କଥା କହିବି ବୋଲି ଭାବୁଥିଲି । ତମେ ଇଂଗ୍ରାଜି ପ୍ରୁଫ୍ ରିଡ଼ିଙ୍ଗ୍ ଶିଖୁନା । ଓଡ଼ିଆ ଅପେକ୍ଷା ଇଂଗ୍ରାଜି ପ୍ରୁଫ୍ ରିଡର୍‌ଙ୍କ ଡିମାଣ୍ଡ ଟିକେ ବେଶି । ଅବଶ୍ୟ ଇଂରାଜିଟା ଜାଣିଲେ ଓଡ଼ିଆ ଶିଖିଯିବା କଷ୍ଟ ନୁହେଁ । ଇଏ ଟେକ୍‌ନିକାଲ୍ କାମ । ବୟସକୁ ଏତେ ରିଜିଡ୍ କରି କେହି ଦେଖିବେନି । ଆମର ଏଇଠି ବି ମଝିରେ ମଝିରେ ସେଭଳି କର୍ମଚାରୀ ଦରକାର ହଉଛନ୍ତି । ଆସୁନା, ତମକୁ ଆମ ମ୍ୟାନେଜର ଲାଲା ନଗେନ୍ଦ୍ରନାଥ ରାୟଙ୍କ ସାଙ୍ଗରେ ଚିହ୍ନା କରେଇଦେବି । ଖରାବେଳ ସମୟରେ ଏଇଠି ଆସି ଶିଖିବ । ଲାଲାବାବୁ ଜଣେ ସାହିତ୍ୟିକ ଲୋକ । ତମେ ଲେଖାଲେଖି କରୁଚ ବୋଲି ଜାଣିଲେ ସେ ମନା କରିବେନି । ବରଂ ଖୁସି ହେବେ ।

ସବୁ କଥା ବଟଭାଇ କହିବା ଅନୁସାରେ ହେଇଗଲା । ପ୍ରୁଫ୍ ରିଡ଼ିଙ୍ଗ୍ ଶିଖିବାକୁ ଅନ୍ୟୂନ ତିନିମାସ ଲାଗିବ ବୋଲି ଉଭୟେ କହିଲେ । ପ୍ରଥମେ ପ୍ରଥମେ ଏ କାମ ମତେ ଭାରି ଅଡୁଆ ଲାଗିଲା । ମାତ୍ର ମାସକ ପରେ ଏହା ଆଉ ଅସୁବିଧା ମନେହେଲା ନାହିଁ । ସେତିକିବେଳକୁ ଏଠିକାର ଜଣେ ପ୍ରୁଫ୍ ରିଡ଼ର ଗୋଟେ ସରକାରୀ ଚାକିରି ପାଇ ପ୍ରେସ୍ କାମ ଛାଡ଼ି ଚାଲିଗଲା । ଲାଲାବାବୁ ଚିନ୍ତାରେ ପଡ଼ିଥିଲେ । ଦିନେ ସେ ମୋ ପ୍ରୁଫ୍ ରିଡିଙ୍ଗ୍‌ର ପରୀକ୍ଷା ନେଲେ । ମୋ କାମ ଦେଖି ସେ ପ୍ରଶଂସା କଲେ; କିନ୍ତୁ ଚାକିରିରେ ନିଯୁକ୍ତି ପାଇଁ ସୁପାରିଶ କଲେ ନାହିଁ । କମ୍ ବୟସର ପିଲାକୁ ନିଯୁକ୍ତି ଦେବା ଅପରାଧ । ମାତ୍ର ଠିକାରେ ଫର୍ମାକୁ ପ୍ରୁଫ୍-ଦେଖା ପ୍ରାପ୍ୟ ଦି' ଟଙ୍କା ଚୁକ୍ତି କଲେ । କହିଲେ, ଏ ବାଟରେ ଦି' ପଇସା ମିଳିବ । ତମ ପାଇଁ କି ମୋ ପାଇଁ ଝିନ୍‌ଝଟ ରହିବ ନାହିଁ । ରାଜି ଯଦି, ଆସ ।

ରାଜି ନ ହୋଇ ମୋର ଅନ୍ୟ ବାଟ ନ ଥିଲା ।

ଏଥିରେ ମାସକୁ ତିରିଶ ଚାଳିଶ ଟଙ୍କା ଅଧିକ ମିଳିଗଲା ।

ସମୟ ମୋ ପାଇଁ ନିର୍ଦ୍ଧାରିତ ହୋଇ ରହିଲା ନାହିଁ ।

ସୁବିଧା ଅନୁସାରେ ଗଲି, ଅଇଲି ।

ଏ ଭିତରେ ମୋର କଟକ ସହରରେ କିଛି ବନ୍ଧୁ ହେଇସାରିଥିଲେ । ଦିନେ ଜଣେ ବନ୍ଧୁ ମତେ ଗୋଟେ ସମ୍ବାଦ ଦେଲେ । ଚାନ୍ଦିନୀଚୌକରେ ଛାତ୍ରସାଥୀ ପ୍ରେସ୍ ଅଛି । କିଛି ଦିନ ତଳେ ଏହାର ଦୁଇ ମାଲିକ ଅଲଗା ହୋଇଯାଇଚନ୍ତି । 'କଟକ ଛାତ୍ରସାଥୀ ପ୍ରେସ'ର ମାଲିକ ବିଦ୍ୟାଧର ନାୟକ । ତାଙ୍କରି ପ୍ରେସର ଜଣେ ମ୍ୟାନେଜର ଦରକାର । ଲୋକଟି ପ୍ରେସ୍ ଲାଇନ୍‌ର ହେବା ଆବଶ୍ୟକ । ଏକଥା

ଦୁଇ ତିନି ଦିନ ତଳେ ଶୁଣିଥିଲି । ଆଜି ଯାଇ ତମେ ତାଙ୍କୁ ସାକ୍ଷାତ୍ କର । ଦି'ଜାଗା ଟିଉସନ କରିବା ଆଉ ଏଠି ପ୍ରୁଫ୍ ଦେଖିବା– ଏସବୁ ବଡ଼ ଜଞ୍ଜାଳ । ତା' ଅପେକ୍ଷା ଗୋଟାଏ ଜାଗା ହେଲେ ଭଲ ।

ସେତେବେଳକୁ ରାମଭାଇଙ୍କ ଭଣଜା ଟୁନା ଓ କଲୋନୀ ଡି.ଏସ୍.ପି.ଙ୍କ ଝିଅର ମାଟ୍ରିକ୍‌ପରୀକ୍ଷା ସରିଯାଇଥାଏ । କେବଳ ରାତିରେ ଡି.ଏସ୍.ପି.ଙ୍କ ପୁଅର ଟିଉସନ । ସେ ବି ଗୋଟାଏ ପିଲାକୁ ଦଶଟଙ୍କା ଟିଉସନ ପାଇଁ ଖର୍ଚ୍ଚ କରିବାକୁ କୁଣ୍ଠକୁଣ୍ଠ ହେଉଥିଲେ । ଟିଉସନ ନ ଥିଲେ ବି ପ୍ରୁଫ୍ ଦେଖା ପଇସାରେ ଚଳି ଯାଉଥିଲି । ଛାତ୍ରସାଥୀ ପ୍ରେସ କଥା ମନକୁ ପାଇଲା । ସେଦିନ ଏଗାରଟା ବେଳେ ଯାଇ ବିଦ୍ୟାଧରବାବୁଙ୍କୁ ଦେଖାକଲି । ସେ ସାଙ୍ଗେସାଙ୍ଗେ ରାଜି ହେଇଗଲେ । କହିଲେ, ମାସକୁ ପଚାଶ ଟଙ୍କା ଦେବେ । କିନ୍ତୁ ଶନିବାର ରବିବାର ନାଇଁ । ଏ ପ୍ରେସର ସବୁ କଥା ତମକୁ ବୁଝିବାକୁ ହେବ ।

ଅଗତ୍ୟା ରାଜି ହେଲି ।

ମୋ ପାଇଁ ଅନ୍ୟ ଉପାୟ ନ ଥିଲା ।

ଖରାଦିନ । ମନରେ କଲେଜ ମାଡ଼ିବାର ପ୍ରବଳ ଝୁଙ୍କ୍ ଆସୁଥାଏ । କିଛି ଦିନ ରହିବା ପରେ ଜାଣିଲି, ବିଦ୍ୟାଧରବାବୁ ବଡ଼ଧରଣର ରୋଗୀ । ତାଙ୍କର ଟି.ବି. ବେମାରି । କାଶ ଲଟାଲିଆ । କାଶୁ କାଶୁ ରକ୍ତ ବାନ୍ତି କରି ପକାନ୍ତି । ଏମିତି ଅବସ୍ଥାରେ ଡାକ୍ତର ତାଙ୍କୁ ବେଡ୍ ରେଷ୍ଟ ନେବାକୁ ବାଧ କଲେ । ସେ ନ ଆସିଲେ ପ୍ରେସ ଅଚଳ ହୋଇଯିବ । ତେଣୁ ସବୁଦିନେ ପ୍ରେସ ଖୋଲା ରଖିବାକୁ ସେ ମତେ କହିଲେ । ଏଇ ସମୟରେ ତାଙ୍କର ଚାଲେ ପ୍ରଶ୍ନପତ୍ର ବେପାର । ବିଭିନ୍ନ ସ୍କୁଲକୁ ପ୍ରଶ୍ନପତ୍ର ଛାପି ସେ ଯୋଗାନ୍ତି । ମତେ ତାଙ୍କର କେତେକ ଗୋପନ ଧାରା ବିଷୟରେ ସେ ବୁଝାଇଦେଲେ । ମୁଁ ସେସବୁ ମୋ ସାଧମତେ କଲି । ଘରେ ଥାଇ ସେ ବାହାରର ଟିକିନିଖି ଖବର ରଖୁଥିଲେ । ଏ କାରବାର ପ୍ରାୟ ଦେଢ଼ମାସର । ସବୁ ଠିକ୍‌ଠାକ୍ ଚାଲିବା ଖବର ଜାଣି ସେ ଆଶ୍ୱସ୍ତ ହେଲେ ।

ସମସ୍ତେ କହନ୍ତି, ସେ ଭାରି ଟିଙ୍ଗ୍‌ଶୁଳିଆ ।

ମାତ୍ର ମୋ ପାଇଁ ସେ ପ୍ରଥମରୁ ହେଲେ ଜଣେ ମୁଗ୍ଧ ପ୍ରଶଂସକ ।

ବାସ୍, ସେତିକିରେ ମୋ ଆନନ୍ଦ ।

|| ଆଠ ||

# ସଂଘର୍ଷମୟ ଯାତ୍ରା

ବିଚିତ୍ର ସଂଘର୍ଷମୟ ଏଇ ସମୟର ଜୀବନ ।

ଦୁଃଖର ବଉଦ ଖଣ୍ଡ ଖଣ୍ଡ ହୋଇ ମାଡ଼ି ଆସି ମୋ ଜୀବନ ଆକାଶକୁ ଆଚ୍ଛନ୍ନ କରୁଥିଲେ ବାରମ୍ବାର । ପୁଣି ବେଳେବେଳେ ମେଘମୁକ୍ତ ହେଇ ଯାଉଥିଲା ସେ ପରିସ୍ଥିତି ସବୁ । ଆଗରୁ କହିଚି, କଟକ ଛାତ୍ରସାଥୀ ପ୍ରେସରେ ମ୍ୟାନେଜର କାମ କଲି । ଆର୍ଥିକ ସ୍ଥିତି ବହୁ ପରିମାଣରେ ସୁଧୁରିଗଲା । ଗୋଟାଏ ମଣିଷର ଜୀବନ ଜୀଇଁଲା ଭଳି ଏବେ ମତେ ଲାଗିଲା । ଭାରି ଇଚ୍ଛା ହେଉଥାଏ, ଥରେ ଘରକୁ ଯାଇ ବୁଲି ଆସନ୍ତି; ବାପା ବୋଉଙ୍କୁ ଦେଖନ୍ତି । କିନ୍ତୁ ଏବେ ମୋ ପାଇଁ ଦିନରାତି ସମାନ । ଦିନଟିଏ କୁଆଡ଼େ ଯିବା ଅସମ୍ଭବ । ଦାୟିତ୍ୱର ଖୁଣ୍ଟରେ ବନ୍ଧା ଦାମୁଡ଼ି ନା ବଳଦ !!

ବିଦ୍ୟାଧର ବାବୁ ପ୍ରେସର ମାଲିକ । ସେ ଅସୁସ୍ଥ । ଯକ୍ଷ୍ମାରୋଗୀ । ସେ ଟିକିଏ କ୍ରୋଧୀ ପ୍ରକୃତିର ଲୋକ । ରାଗିଗଲେ ତାଙ୍କର କାଶ ଉଠେ । ବେଶି କାଶିଲେ ରକ୍ତ ବାନ୍ତି କରିପକାନ୍ତି । ସେଥିପାଇଁ ଡାକ୍ତର ତାଙ୍କୁ ପ୍ରେସ୍‌କୁ ଆସିବାକୁ ବାରଣ କଲେ । ଫଳରେ ମୋ କାମ ବଢ଼ିଗଲା । ସକାଳ ଆଠଟାରେ ତାଙ୍କ ଘରେ ପହଞ୍ଚେ, ଚାବି ଆଣେ । ରାତି ସାଢ଼େ ନଅଟା ଦଶଟା ବେଳେ ଚାବି ଓ ପଇସାପତ୍ର ତାଙ୍କ ଘରେ ଜମା ଦିଏ । ଗୋଟାଏ ଦୋକାନ ଚଳେଇଲା ଭଳି କାମ । ଭାରି ବାଧୁଥାଏ ଏ ରୁଟିନ୍‌ବନ୍ଧା ଜୀବନ । କିନ୍ତୁ ନିରୁପାୟ । ସାଙ୍ଗସାଥୀ ଓ ପ୍ରିୟ ଲୋକେ ଉପଦେଶ ଦେଉଥାନ୍ତି– ''ହୁସିଆର ! ଟିବି ଡିଆଁ ରୋଗ । ଟିକେ ସତର୍କ ଥିବ ।''

ମୁଁ କିନ୍ତୁ ନାଚାର । ମତେ ଅଠର ବର୍ଷ ହେଇନାହିଁ । ତେଣୁ କୌଣସି ସରକାରୀ ସଂସ୍ଥାରେ ପଶିପାରିବି ନାହିଁ । ମନରେ ପୁଣି ପାଠ ପଢ଼ିବାର ନିଶା । ସବୁ କଥା

ଚିନ୍ତା କରିବାକୁ ପଡୁଥାଏ । ଏଣେ ଯୋଉ ସଂସ୍ଥାରେ ମୁଣ୍ଡ ଗୁଞ୍ଜିଚି, ସେ ମାଲିକ ଏବେ ଅସୁବିଧାରେ ପଡ଼ିଛନ୍ତି । ମୋ ଉପରେ ସଂପୂର୍ଣ୍ଣ ନିର୍ଭର କରୁଛନ୍ତି । ଏଠୁ ଛାଡ଼ି ଯିବାଦ୍ୱାରା ତାଙ୍କୁ ଓ ତାଙ୍କ ଅବସ୍ଥା ପ୍ରତି ଧୋକା ହବ । ତେଣୁ ଭାବିଲି, ଯାହା ହବ ଦେଖାଯିବ । ଠାକୁରେ ଭରସା । ଅନ୍ତତଃ ବିଦ୍ୟାଧର ବାବୁ ଟିକେ ସୁସ୍ଥ ହୋଇ ଆସନ୍ତୁ । ତା'ପରେ ଅନ୍ୟ କୁଆଡ଼େ ଯିବା କଥା ଚିନ୍ତା କରିବି ।

ଚାହୁଁ ଚାହୁଁ କେତେ ମାସ ବିତିଗଲା ।

ଏହା ଭିତରେ କିସ୍ତିରେ ମୁଁ ଗୋଟାଏ ସାଇକେଲ କିଣି ପକାଇଲି । ଜଣେ ମାରୁଆଡ଼ି ବ୍ୟବସାୟୀ ଶହେ ଟଙ୍କାରେ ଏକ ନର୍ଟନ ସାଇକେଲ ଦେଇଥାନ୍ତି । ଅବଶିଷ୍ଟ ପଇସା ମାସକୁ ଦଶଟଙ୍କା ଲେଖା ନିଅନ୍ତି । ଅନେକ ଯୁବକ ଏ ସ୍କିମ୍‌ରେ ସାଇକେଲ ନେଇଥିଲେ । ଗୋଟାଏ ଦିଇଟା କିସ୍ତି ଦେଇ କିଏ କୁଆଡ଼େ ଆଉ ଧରାଛୁଆଁ ଦେଲେନି । ମୋ ଭଳି କେଇଜଣ ଥିଲେ, ସାତ ଆଠଟା କିସ୍ତି ଦେଲାପରେ ଯାଇ ଦେଖିଲୁ- ନେଲା ଲୋକ ନବାକୁ ଆଉ ଆଗ୍ରହ ଦେଖାଉ ନାହିଁ । ମୋର ଧାରଣା ହେଲା, ବୋଧହୁଏ ସାଇକେଲ ଦାମ୍ ସେ ନେଇସାରିଲାଣି । ସୁଧ ବାବଦରେ ଆଉ ଶୋଷିବାକୁ ସେ ଚାହୁନି । ତା'ପରେ ମୁଁ ଆଉ ଯାଇନି ସେ ଦୋକାନକୁ ।

ଏହା ଭିତରେ ବିଦ୍ୟାଧର ବାବୁ କିଛି ପରିମାଣରେ ସୁସ୍ଥ ହୋଇଗଲେ । ସେ ପ୍ରେସ୍‌କୁ ଅଳ୍ପ ସମୟ ପାଇଁ ଯା-ଆସ କଲେ । ଫଳରେ ମୋ ଦାୟିତ୍ୱ ଅନେକଟା ହାଲୁକା ଲାଗିଲା । ଜୁନ୍‌ମାସ ଶେଷ ସମୟ । କଲେଜ ଆଡ଼ମିଶନ୍‌ର ବିଜ୍ଞାପନ ମାଳମାଳ ବାହାରିଲା । ମନ ଛକପକ ହେଲା । ଫର୍ମ କିଣି ପୂରଣ କଲି ଖ୍ରୀଷ୍ଟ କଲେଜ ପାଇଁ । ଅନ୍ୟ କୋଉଠି ପକାଇବା ମୋ ପାଇଁ ସ୍ୱପ୍ନ । ନାଁ ଲେଖେଇଲେ ବି ପଢ଼ା ସମୟରେ କଲେଜ ଯାଇ ହବନି । ତେଣୁ ଖ୍ରୀଷ୍ଟ କଲେଜକୁ ଫର୍ମ ପୋଷ୍ଟରେ ପଠାଇଦେଲି । ବିଦ୍ୟାଧର ବାବୁ ଜାଣିବାର ଅବକାଶ ନଥିଲା । ତାଙ୍କୁ ନ ଜଣାଇବାର ବଳିଷ୍ଠ କାରଣଟିଏ ମଧ ଥିଲା ।

ଏତିକିବେଳେ ମୋ ବଡ଼ନନାଙ୍କ ବାହାଘର ସ୍ଥିର ହେଲା । ବାପାଙ୍କର ଚିଠି ପାଇ ଏକଥା ଜାଣିଲି । ଯେମିତି ହେଲେ ଯିବାକୁ ହବ । ଯଦି ପାରିବୁ ସାଙ୍ଗରେ କିଛି ଖୁଚୁରା ଟଙ୍କା ଧରି ଆସିବୁ । ବାହାଘରରେ ଦବା-ନବାକୁ ସୁବିଧା ହବ । ବାପାଙ୍କର ମୋ ପାଖରେ ଥିଲା ଇଏ ପ୍ରଥମ ଦାବି । ସେତକ କାମ କରିବା

ମୋର ନୈତିକ ଦାୟିତ୍ୱ । ତେଣୁ ଟଙ୍କାକିଆ ଓ ଅଧୁଲି ଯୋଗାଡ଼ରେ ଲାଗିଗଲି । ତା'ଛଡ଼ା ତିନିଦିନ ଛୁଟି ନେବା ପାଇଁ ଦରଖାସ୍ତଟିଏ ଲେଖି ବିଦ୍ୟାଧର ବାବୁଙ୍କୁ ଦେଲି । ଦରଖାସ୍ତଟି ପଢ଼ି ସେ ରୋକ୍‌ଠୋକ୍ ମନା କରିଦେଲେ । କହିଲେ, ଭାଇ ବାହାଘରରେ ତୁମର କି କାମ ? ମଉଜ ମଜଲିସ ପରେ ଯାଇ କରି ହବ । ଏଇନା ଏଠିକା ଦାୟିତ୍ୱ ସମ୍ଭାଳ । ମୋ ଅବସ୍ଥା ଦେଖୁଚ । ସେଥିରେ ଏକଥା କେମିତି କହୁଚ !

ମନ ମୋର ମରିଗଲା । ବାହାଘର ଦିନ ଯେତେ ପାଖେଇ ଆସିଲା, ମତେ ସେତେ ଅଧିକ ଦୁଃଖ ଲାଗିଲା । ଘରେ ସବୁ ବନ୍ଧୁବାନ୍ଧବଙ୍କ ଭିଡ଼ । କେବଳ ମତେ ଛାଡ଼ି ସମସ୍ତେ ଏକାଠି ହେବେ । ମୁଁ ଏକୁଟିଆ ବାଆଁରା ହେଇଯିବି । ମୋର ଏଠିକାର ପରିସ୍ଥିତି ତ କେହି ବୁଝିବେ ନାହିଁ । ସମସ୍ତେ ଭାବିବେ, ମୁଁ ରାଗି କରି ସେଦିନ ଘରୁ ଗୋଡ଼ କାଢ଼ି ଚାଲି ଆସିଥିଲି । ସେଇ ରାଗ ଏଯାଏ ବଞ୍ଚେଇ ରଖିଚି । କେହି ଭାବିବେ ନାହିଁ ଯେ, ମୁଁ ବାପାଙ୍କର ପୋଷ୍ଟକାର୍ଡ ଚିଠି ଖଣ୍ଡକ ପାଇ ମହମ ଭଳି ତରଳି ସାରିଚି । ଏବେ ମୁଁ ସଂପୂର୍ଣ୍ଣ ଘରମୁହାଁ । ହେଲେ ଏ ପରିସ୍ଥିତି ମୋ ଗୋଡ଼ରେ ବେଡ଼ି ପକେଇ ଦେଇଚି । ମୋ ଉହଳବିକଳ ପଣ ମତେ ବିସ୍ଫୋରକ ଅବସ୍ଥାକୁ ନେଇ ଯାଉଚି । ଭାରି ଛଟପଟ ଲାଗୁଥାଏ । କ'ଣ କରିବି ଭାବିପାରୁ ନଥାଏ ।

ଆଜି ମଙ୍ଗନ । ଘରେ ହୋ-ହୋ ଘୋ-ଘୋ । ଆନନ୍ଦ ଉଲ୍ଲାସ । ମୁଁ କଟକ ସହରରେ ନୈତିକ ଦାୟିତ୍ୱରେ ବନ୍ଧା । ଦିନସାରା ମୌସୁମୀ ବର୍ଷା । ସହରରେ ଗହଳ ଚହଳ କମ୍ । ସନ୍ଧ୍ୟାବେଳକୁ ନିଜକୁ ଆଉ ସମ୍ଭାଳି ପାରିଲିନି । ପ୍ରେସ କର୍ମଚାରୀମାନଙ୍କୁ ବିଦା କରି ଦେଲି । ପ୍ରେସରେ ତାଲା ପକାଇ ଚାବି ଧରି ବିଦ୍ୟାଧର ବାବୁଙ୍କ ଘରେ ପହଞ୍ଚିଲି । କହିଲି, ଏବେ ଘରକୁ ଯାଉଚି । କାଲି ଫେରି ଆସିବି । ମୋ କଥାରେ ବିଶ୍ୱାସ ରଖନ୍ତୁ; ନିଶ୍ଚେ ଆସିବି ।

ସେ କହିଲେ ହଉ, ଚାବି ରହିଲା । ତୁମେ କାଲି ଆସିପାରିବନି ମୁଁ ଜାଣେ । କାଲି ଭାଇଙ୍କର ବାହାଘର । ଘରେ ପହଞ୍ଚିଲେ ସେମାନେ ତୁମକୁ ଛାଡ଼ିବେନି । ଏଇୟା ହବ, ପ୍ରେସ କାଲି ବନ୍ଦ ରହିବ । ହଉ, ତମ ଇଚ୍ଛା ।

ମନ ଦୁଃଖ ଓ କ୍ରୋଧରେ ସେ ଚୁପ୍ ରହିଲେ ।

ମୁଁ ଘରମୁହାଁ ହେଲି ଅମାନିଆ ଭାବେ ।

ସେତେବେଳେ ସାଲେପୁର ଆଡ଼କୁ, ଶେଷ ବସ୍ ସନ୍ଧ୍ୟା ୫ଟାରେ ଯାଉଥିଲା । ସନ୍ଧ୍ୟା ୬ଟା ବାଜି ସାରିଥିଲା । ଆଉ ଉପାୟ ନାହିଁ । ମୁଣ୍ଡରେ ଜରି ଟୋପି ଖଞ୍ଜିଲି । ସାଇକେଲରେ ଚାଲିଲି ସାଲେପୁର ରାସ୍ତାରେ । ମଝିରେ ମଝିରେ ବର୍ଷା ଲାଗି ରହିଥାଏ । ଜଗତପୁର ଟପିଲା ପରେ ରାସ୍ତା ଅନ୍ଧାର । ଖାଲଢିପ ଜାଣିବାର ଉପାୟ ନାହିଁ । ଖଇରା ପୋଲ ପାଖରେ ସ୍ଥିର କଲି କେନାଲ କୂଳ ରାସ୍ତାରେ ଯିବି । ୪/୫ କିଲୋମିଟର କମ୍ ପଡ଼ିବ । ଦୁଃସାହସ କରି ସେ ନିଛାଟିଆ ରାସ୍ତାରେ ଚାଲିଲି । ବାଟରେ ଜଣେ ଅଧେ ବାଟୋଇ ଓ ସାଇକେଲ ବାଲା ଭେଟି ଯାଉଥିଲେ । ମନରେ ସାହସ ବଢ଼ି ଯାଉଥିଲା । ବଟେଶ୍ୱର ପାଖ ଭଗବତୀ ଘାଟରେ ପହଞ୍ଚିଲା ବେଳକୁ ରାତି ୯ଟା ବାଜି ସାରିଥିଲା । ଦୋକାନ ବନ୍ଦକରି ଯିବାକୁ ବାହାରିଥିବା ଲୋକ ଜଣକ କହିଲା- ସେପାରିକି ଯିବ କି ? ନଈରେ ବର୍ଷା ପାଣି ଆସିଚି । ଥଳ ଦେଖି ଯିବ । ଏତେ ରାତିଯାଏ କାହିଁକି ରହୁଥେଲ ! ସାଇକେଲ ଟେକି ହୁସିଆର ଯା' ।

ସେତେବେଳକୁ ମୁଁ ହାଲିଆ ହେଇ ପଡ଼ିଥାଏ । ଚିତ୍ରୋତ୍ପଳା ନଈରେ ପଶିଲାବେଳେ ମତେ ଚାରିଆଡ଼ ଫରଚା ଦିଶିଲା । ବୋଧହୁଏ ଆକାଶରୁ ମେଘ ଘୁଞ୍ଚିଗଲା, କିମ୍ବା ନଈକୂଳିଆ ଖୋଲା-ମେଲା ଜାଗା ବୋଲି ସେମିତି ଦିଶିଲା । ନଈରେ ଅଣ୍ଟାଏ ପାଣି । ସାଇକେଲ ଟେକି ଧରିଲାବେଳେ ଟଙ୍କାମୁଣି ଝଣକିନା ଆବାଜ କଲା । ଆରେ, ଏ ପର୍ଯ୍ୟନ୍ତ ଟଙ୍କା କଥା ମୋର ଖିଆଲ ନଥିଲା । ସାଇକେଲ ହେଣ୍ଡଲ୍‌ରେ ବ୍ୟାଗରେ ଗୁଡ଼ା ହୋଇ ଝୁଲୁଥିଲା । ବାପାଙ୍କ ପାଇଁ ଏ ପୁଡ଼ା । ତାକୁ ଯତ୍ନର ସହିତ ଧରିଯିବାକୁ ହେବ । ସେଥିରେ ମୋଟ ଥିଲା ଶହେ ଉଣେଇଶି ଟଙ୍କା ଆଠଣା । ମୋ ପାଇଁ ଇଏ ବହୁତ ବେଶି । ହେଲେ ବାପାଙ୍କର ଦରକାର ମେଣ୍ଟିବ ତ ! କେଜାଣି ? ଯା'ହଉ ଘରେ ପହଞ୍ଚିଲା ପରେ ଦେଖାଯିବ । ଆଉ କିଛି ନ ହେଲେ ବି, ରାମଚନ୍ଦ୍ରଙ୍କ ସେତୁବନ୍ଧ କାମରେ ଗୁଣ୍ଡୁଚିମୂଷା ତ ହେଇପାରିବି ।

ସେପଟ ନଈବନ୍ଧକୁ ଉଠିଗଲା ପରେ ସାଇକେଲ ଜୋରରେ ଛୁଟେଇଲି । ରାତି ଅନ୍ଧାର ହେଲେ ବି ଇଏ ମୋର ପରିଚିତ ରାସ୍ତା । ଉତ୍ସାହ ବଢ଼ିଗଲା । ଘରପାଖ ହେଇ ଆସିଲାଣି । କଲମିଶ୍ରିର ଗଡ଼ାଣି ପରେ ବଡ଼ ଗହୀର ପାଟ । ସେଇଠୁ ବଡ଼ ଓସାର ରାସ୍ତା ସମିତଙ୍ଗା ଯାଏ ଲମ୍ବିଛି । ତାକେ ଖଣ୍ଡେ ବାଟ ଆଗରୁ ପଡ଼େ ଗୋଟେ ତାଳବଣ । ସେଇଠୁ ପାଦଚଲା ରାସ୍ତାଟେ ଅଛି ଆମ ଘର ଯାଏ । ଏଣିକି ଆଉ ଅସୁବିଧା ନାହିଁ ।

କିନ୍ତୁ ଅସୁବିଧା ମୋ ପାଖ ଛାଡ଼ିବାକୁ ,ନାରାଜ । ଗହୀର ମଝିରୁ ଆଉ ଆଗକୁ ଯାଇପାରିଲିନି । ସାଇକେଲ ଗଡ଼ି ପାରୁନାହିଁ । ଚିକିଟା ପଟୁ ମାଟି ନୂଆ ବନ୍ଧ କାମରେ ପଡ଼ିଥିଲା । ବର୍ଷା ଯୋଗୁଁ ତାହା ଅଠା ଭଳି ଲାଗି ଯାଉଥିଲା ଚପଲରେ ଆଉ ସାଇକେଲ ଟାୟାର୍‌ରେ । ଚକ ଆଗକୁ ମୋଟେ ଗଡୁ ନଥାଏ । କ'ଣ କରିବି ? ବିଲ ଜମିକୁ ଓହ୍ଲାଇ ସାଇକେଲ ଚକକୁ ଧୋଇ, ସଫା କରି ଗଡ଼େଇ ଗଡ଼େଇ କିଛି ବାଟ ଗଲି । ପୁଣି ଯଥା ପୂର୍ବଂ ତଥା ପରଂ ଅବସ୍ଥା । ଏଥର କାନ୍ଦି ପକେଇଲି । ହେ ଭଗବାନ ! ଏ କି ଯନ୍ତ୍ରଣା ? ଆଉ ଥରେ ସେଇ ଚକଧୁଆ କାମ ! ଏଣିକି ଆଉ ଧୈର୍ଯ୍ୟ ରହୁ ନଥାଏ । କଷ୍ଟେମଷ୍ଟେ ସେଇ ତାଳବଣ ଯାଏ ଆସିଲି । ଯୋଉ ସାଇକେଲ ମୋତେ କଟକରୁ ଏଯାଏ ନେଇ ଆସିଥିଲା, ତାକୁ ଆଉ ଆଗକୁ ନେଇ ଯାଇପାରିଲି ନାହିଁ । ଗୋଟାଏ ଗଛମୂଳେ ଚାବି ପକାଇ ତାକୁ ଶୁଆଇ ଦେଲି । ଟଙ୍କାମୁଣି ଓ ଚପଲକୁ ହାତରେ ଧରି ଚାଲିଲି ଘରମୁହାଁ । ଦୂରରୁ ଝାପ୍‌ସା ଆଲୁଅ ଦିଶିଯାଉଥିଲା ଆମ ଘରର । ଖୁସି ଲାଗୁଥାଏ ଯେ, ଏଯାଏ ସମସ୍ତେ ଶୋଇ ନାହାନ୍ତି । ବୋଧହୁଏ ବାପା-ବୋଉ ଶୋଇ ନାହାନ୍ତି । ଚାହିଁଛନ୍ତି । ବାପା କାହାକୁ ଅପେକ୍ଷା କରିଛନ୍ତି ବୋଧେ । ଏତେ ରାତିଯାଏ ସେ ଅନିଦ୍ରା ରହନ୍ତି ନାହିଁ । ରାତି କେତେ ହେବ କେଜାଣି । ଯେତେ ରାତି ହଉ, ତାଙ୍କ ସହିତ ଦି'ପଦ କଥା ହେଇଗଲେ ମତେ ଆଶ୍ୱସ୍ତ ଲାଗିବ । କାରଣ କାଲି ସକାଳୁ ମୋର ଆରମ୍ଭ ହେବ ବାହୁଡ଼ା ପର୍ବ । ତାଙ୍କୁ ସବୁ କଥା କହିବାକୁ ହୁଏତ ସୁଯୋଗ ମିଳି ନପାରେ ।

ଆମ ଘର ଡିହ ଉପରକୁ ଉଠିଲା ମାତ୍ରେ ପ୍ରଥମେ ଆଖିରେ ପଡ଼ିଲେ ବାପା । ସେ ଲଣ୍ଠନଟାକୁ ଟେକି ଧରି ଆଶ୍ଚର୍ଯ୍ୟମିଶା କଣ୍ଠରେ କହିଲେ- 'ଆରେ ରତନା ! ଏତେ ରାତିରେ, ଏକୁଟିଆ, ଏ ଅପନ୍ତରା ରାସ୍ତାରେ... ! କେମିତି ଆସିଲୁ ?' ମୁଁ ତାଙ୍କ ପାଦଛୁଇଁ ପ୍ରଣାମ କଲି । ସାଇକେଲକୁ ତାଳବଣିଆରେ ପକେଇ ଆସିଥିବା କଥା ଶୁଣି ସେ ତତ୍‌କ୍ଷଣାତ୍ ଆମ ଘରର ଚାକର ଓ ଜଣେ ମୂଲିଆକୁ ଉଠେଇ କହିଲେ, ହଇରେ ଅଲିଆ; ଧଡ଼ିଆ ସାଙ୍ଗରେ ପାହାନ୍ତାରୁ ତାଳବଣିଆ ଯାଇ ତା' ସାଇକେଲଟା ଆଣି ଧୁଆଧୋଇ କରି ରଖିବ । ସେ ଦି'ଜଣ ହଁ- ହାଁ କହି ପୁଣି ଶୋଇପଡ଼ିଲେ ।

ବୋଉ ମୋ ପାଇଁ ପଖାଳ ଓ ଭଜା ବାଢ଼ିଦେଲା ।

ମୁଁ ପରମ ତୃପ୍ତିରେ ଖାଇ ଚାଲିଥିଲି ।

ବହୁଦିନ ପରେ ମା' ହାତରନ୍ଧା ଖାଇବା ଖାଉଥିଲି ।

ବାପା ମୋ ଆଗରେ ଠିଆ ହେଇଥିଲେ ।

ଧରିଥିଲେ ମୁଁ ଦେଇଥିବା ଟଙ୍କା ପୁଡ଼ାଟି ।

ଖାଇ ସାରିବାବେଳକୁ ପଚାରିଲେ, ଆରେ ଏ ପୁଡ଼ାଟି କ'ଣ ? ମତେ କାହିଁକି ଧରେଇ ଦେଲୁ ?

ମୁଁ କହିଲି, ବାପା ! ତୁମେ ଲେଖିଥିଲ କିଛି ଖୁଚୁରା ଟଙ୍କା ଆଣିବାକୁ । ଯେତିକି ପାରିଲି, ସଂଗ୍ରହ କରି ଆଣିଛି । ତୁମ କାମରେ କେତେ ସହାୟକ ହେବ, ମୁଁ ଜାଣେନା । କିବା ଚାକିରି ମୋର । ତଥାପି ଗୁଣ୍ଡୁଚିମୂଷା ଭଳି ଏତକ ଧରି ଆସିଚି । କିଛିଟା ଏ ଘର କାମରେ ଲାଗିବ ତ !

ବାପା ଟଙ୍କାତକ ଘର ଚଟାଣରେ ଅଜାଡ଼ି ଦେଇ ବସି ପଡ଼ିଲେ । ତାଙ୍କ ଆଖିରେ ଅନେକ ଆନନ୍ଦର ଝଲକ । ସେ ବୋଉକୁ ପାଖକୁ ଡାକି କହିଲେ- ଶୁଣୁଚ, ଏ ଟଙ୍କା ଆମ ଘର ପାଇଁ ପ୍ରଥମ ରୋଜଗାର ଧନ । ଦେଖ, ମୋର ପୁଅ ଆଣିଚି । ଆମ ବଂଶର ତିନି ପିଢ଼ି କଥା ମୋର ମନେଅଛି । ପଇସାଟିଏ ବାହାରୁ କେବେ ଆସି ନ ଥିଲା ଏ ଘରକୁ । ଆଜି ଇଏ ମୋ ପୁଅର ରୋଜଗାର ଧନ । ପିଲାଟା ମୋ ଅଣ୍ଟାକୁ ବଳ ଆଣିଦେଲା । ମୁଁ ତାକୁ ଲେଖିଥିଲି ପାଞ୍ଚ ଦଶ ଟଙ୍କାର ରେଜା ଆଣିବାକୁ । କର୍ମବେଳେ ଦରକାର ପଡ଼ିବ । ସିଏ ଏତେ ଟଙ୍କା ଧରି, ରାତି ଅନ୍ଧାରରେ, ଏମିତିଆ ଅପନ୍ତରା ରାସ୍ତାରେ, ଏଠି ଆସି ପହଞ୍ଚିଲା- ମୋ ଛାତି କୁଣ୍ଢେମୋଟ ହେଇଯାଉଚି । ତମେ ଗୋଟାଏ କାମ କର; ଏଥିରୁ ଗୋଟାଏ ଟଙ୍କା କାଢ଼ି ଆଗ ଅଲଗା ରଖ; ଜଗନ୍ନାଥଙ୍କ ପାଖକୁ ପଠେଇବା । ଗୃହସ୍ଥର ପ୍ରଥମ ଫଳ ଭଳି ଦିଅଁଙ୍କୁ ସମର୍ପଣ କରିବା, ଆମ ପୁଅର ପ୍ରଥମ ରୋଜଗାର ଧନକୁ ।

ବାପାଙ୍କ କଥା କେଇପଦ ମୋର ଆସିବା ବେଳର କଷ୍ଟକୁ ଭୁଲାଇ ଦେଲା । ତାଙ୍କ ମନ ଖୁସିଥିବା ଦେଖି ମୁଁ କହି ପକାଇଲି, ବାପା ! ମୋ ଉପରେ ରାଗିବେ ନାହିଁ । ମତେ କାଲି ଭୋଅରୁ କଟକ ଫେରି ଯିବାକୁ ପଡ଼ିବ । ମୁଁ ଯାହା ପାଖରେ କାମ କରୁଚି, ସିଏ ଯକ୍ଷ୍ମାରୋଗୀ । ଅଫିସକୁ ଆସିପାରୁ ନାହାନ୍ତି । ମୁଁ ଗଲେ ଅଫିସ୍ ଖୋଲିବି । ବାହାଘରରେ ମୋର ରହିବା ଉଚିତ । କିନ୍ତୁ ମୋ ଦାୟିତ୍ୱ ଏବେ ମୋ ପାଇଁ ବଡ଼ ।

ବାପା ମୋ ପିଠି ଥାପୁଡ଼େଇ ଦେଇ କହିଲେ, ତୁ ଯାହା ସ୍ଥିର କରିଚୁ, ସେଇଟା ଏକବାର ଠିକ୍ । ତୁ ଯା' ଶୋଇପଡ଼ । କ୍ଳାନ୍ତ ହୋଇ ପଡ଼ିଥିବୁ । ସକାଳୁ ତୋ ସାଇକେଲ ସଫା କରେଇ ଦେଇଥିବି । ତୁ ସଅଳ ବାହାରି ପଡ଼ିବୁ । ମଣିଷ ନିଜ ଦାୟିତ୍ୱକୁ ଠିକ୍ ଭାବେ କଲେ, ଭଗବାନ ତାକୁ କେବେ ଅସୁବିଧାରେ ପକେଇବେନି । ଏତେ ଦିନ ପରେ ଘରକୁ ଆସିଥିଲୁ । ଦିନେ ଦି'ଦିନ ରହିଥିଲେ ଖୁସି ଲାଗିଥାନ୍ତା । ଆଜି ସଂଜ ପହରୁ ମତେ ଲାଗୁଥିଲା, ତୁ ଆସି ପହଞ୍ଚି ଯାଇଚୁ । ମୁଁ ବାରମ୍ବାର ଦାଣ୍ଡଦୁଆର ଆଡ଼କୁ ଚାହୁଁଥିଲି । କାହାକୁ କିଛି କହିପାରୁ ନଥିଲି । କେମିତି ଗୋଟାଏ ବିଶ୍ୱାସ ମୋ ମନରେ ଦୃଢ଼ ହୋଇ ଯାଇଥିଲା, ତୁ ନିଶ୍ଚୟ ଆସିବୁ । ଏତେ ରାତିରେ ମୋ କଥା ସତ ହେଲା । ମନକୁ ଟିକେ ଶାନ୍ତି ମିଳିଲା । ହଉ ତୁ ଯା, ଶୋଇପଡ଼ ।

ଏକ ପରମ ତୃପ୍ତି ପାଇ ମୁଁ ନିଘୋଡ଼ ନିଦରେ ଶୋଇଗଲି । ସକାଳ ହେଲା ବେଳକୁ ମୋ ସାଇକେଲ ଆସି ସଫାସୁତୁରା ହୋଇ ଧୁଆ ହୋଇସାରିଥିଲା । ଚଟାପଟ ନିତ୍ୟକର୍ମ ସାରି କ'ଣ ଦି'ଟା ଖାଇ ବାହାରି ପଡ଼ିଲି କଟକ । ବାପାଙ୍କ ପାଦ ଛୁଇଁ ପ୍ରଣାମ କଲାବେଳକୁ ତାଙ୍କ ମୁହଁରେ ଆଶୀର୍ବାଦର ଖଇ ଫୁଟୁଥିଲା ।

ବାହାରେ ପରିଷ୍କାର ଆକାଶ ।

ସାଇକେଲ ଚଲାଇ ଆସିବାକୁ କିଛି ଅସୁବିଧା ହେଲାନି ।

କଟକରେ ପହଞ୍ଚିଲା ବେଳକୁ ପ୍ରାୟ ସାଢ଼େ ନଅଟା ।

ଖୁବ ବେଗରେ ଆସିଥିଲି । ବିଦ୍ୟାଧର ବାବୁଙ୍କ ଘରେ ପହଞ୍ଚିଲା ପରେ ସେ ମତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କାଲି ଗଲାବେଳର କ୍ରୋଧ ଏବେ ଆନନ୍ଦରେ ବଦଳି ଯାଇଥିଲା । ସିଏ ଗୁଡ଼ାଏ କଥା କ'ଣ ତାରିଫ୍ କରି କହୁଥିଲେ । କିନ୍ତୁ ମୁଁ ତାଙ୍କଠାରୁ ଚାବି ଧରି ଚାଲିଆସିଲି ପ୍ରେସ୍‌କୁ । ସେଠି ପହଞ୍ଚିଲା ପର୍ଯ୍ୟନ୍ତ ମୋର ଧଇଁସଇଁ ହେବା କମି ନଥିଲା । କର୍ମଚାରୀମାନେ ଜାଣିଥିଲେ, ମୁଁ ନିଶ୍ଚୟ ଫେରିବି । ଅଧଘଣ୍ଟା ଘଣ୍ଟାଏ ଡେରି ହେଇପାରେ । ସେଇ ଅନୁସାରେ ସେମାନେ ଆସି ପହଞ୍ଚିଥିଲେ । ମତେ ସେମାନଙ୍କ ଆଗରେ ଗଡ଼ ଜିଣିଲା ଭଳି ଲାଗିଥିଲା ।

ଏ ଘଟଣାର ସାତ ଆଠ ଦିନ ପରେ ଖ୍ରୀଷ୍ଟ କଲେଜରେ ଆଡ଼ମିଶନ୍ ପାଇଁ ଚିଠି ଆସିଗଲା । ମୋର ଚରମ ଦୁର୍ଭାଗ୍ୟକୁ ଚିଠିଟି ପଡ଼ିଲା ବିଦ୍ୟାଧର ବାବୁଙ୍କ ହାତରେ । ସେ କ୍ରୋଧରେ ଅଗ୍ନିବାଣ ହେଇଗଲେ । "ଇଏ କ'ଣ ? ତମେ ପାଠ

ପଢ଼ିବାକୁ ଯଦି ସଉକ କରୁଚ, କର; କିନ୍ତୁ ଏଠିକା ଦାୟିତ୍ୱ ସମ୍ଭାଳିବ କିଏ ? ତମର ଯଦି ଏଭଳି ଇଚ୍ଛା ଥିଲା, ମତେ ଆଗରୁ କହିଲନି କାହିଁକି ? ମୁଁ ଅନ୍ୟ ଲୋକ ରଖିବା ବ୍ୟବସ୍ଥା କରିଥାନ୍ତି ! ମତେ ଏଇଟା ଚିଟିଂ । ନା, ତମେ ପଢ଼ିବାକୁ ଯାଇପାରିବ ନାହିଁ ।''

ମୁଁ ସବୁକଥା ନୀରବରେ ଶୁଣିଗଲି । କିଛି ସମୟ ଚୁପଚାପରେ କଟିଗଲା । ତା'ପରେ ହଠାତ ସେ ପୁଣି ପ୍ରଶ୍ନ କରି ଉଠିଲେ- 'ମତେ, ତମର ନିଷ୍ପତ୍ତି ଦି' ଘଣ୍ଟା ଭିତରେ ଜଣାଅ । ମୁଁ ପୁଣି ଅନ୍ୟ ବାଟ ଦେଖିବି ।' ମୁଁ ଏଥର କହିଲି- ପାଠ ପଢ଼ିବାକୁ ମୋର ପ୍ରବଳ ଇଚ୍ଛା । ସେଥିପାଇଁ ମୁଁ ଏ ସକାଳୁଆ କଲେଜରେ ନାଁ ଲେଖାଇବା ପାଇଁ ଦରଖାସ୍ତ କରିଥିଲି । ମୁଁ ଦଶଟା ପନ୍ଦର କୋଡ଼ିଏ ମିନିଟ୍ ଭିତରେ ପ୍ରେସକୁ ଆସିପାରିବି । ଆପଣ ତ ସୁସ୍ଥ ହେଇଗଲେଣି । ନଅଟାରେ ଆସି ଚାବି ଖୋଲି ଦେବେ । ବାସ୍, ତା'ପରେ ମୁଁ ଆସି ଦିନଯାକର ଦାୟିତ୍ୱ ସମ୍ଭାଳିବି । ଆପଣ ତ ପାଠପଢ଼ାର ମର୍ଯ୍ୟାଦା ଜାଣିଛନ୍ତି । ଦୟାକରି ମତେ ମନା କରନ୍ତୁ ନାହିଁ ।

ମୋ କଥା ଶୁଣିସାରି ସେ ରାମ କି ବିଷ୍ଣୁ କିଛି କହିଲେ ନାହିଁ । ଉଠିପଡ଼ି ଘରକୁ ଖାଇବାକୁ ଚାଲିଗଲେ । ମୋ ମନରେ ଚିନ୍ତାର ଲହରୀ ଉଠିଲା । କ'ଣ କରିବି ! ମୋ ଆଶା କ'ଣ ଏଇଠି ଧୂଳିସାତ୍ ହେଇଯିବ ! ଏବେ ଯାଇ କୋଉ ସଂସ୍ଥାରେ ମୁଣ୍ଡ ଗୁଞ୍ଜିବି । ସିଏ ପୁଣି ମତେ ପଢ଼ିବାକୁ ଅନୁମତି ଦେବେ କି ନା ! ଏତେ ଶୀଘ୍ର ଚାକିରି ଖଣ୍ଡେ ଯୋଗାଡ଼ କରିବା ବି ଅସମ୍ଭବ । ଅନେକ ଚିନ୍ତାରେ ଘାଣ୍ଟି ହେଲି । ଖାଇବାକୁ ଯିବାକୁ ଇଚ୍ଛା ହେଲାନି । ନିଜ ଭାଗ୍ୟ ଓ ଭଗବାନଙ୍କ ଉପରେ ପ୍ରବଳ ଅଭିମାନ ଆସିଲା । ଦିନେ ଓଳିଏ ନ ଖାଇଲେ ମଣିଷ ମରିଯିବ ନାହିଁ । ଏହା ଭାବି ନିଜ ଉପରେ ପ୍ରତିଶୋଧ ନେବାପାଇଁ ପ୍ରଚଣ୍ଡ କ୍ରୋଧ ଆସିଲା ।

ଦିନ ଚାରିଟା ବେଳକୁ ବିଦ୍ୟାଧର ବାବୁ ପ୍ରେସ୍‌କୁ ଆସିଲେ । ସେ ମତେ କିଛି ପଚାରିଲେ ନାହିଁ । ମୁଁ ବି କିଛି କହିଲି ନାହିଁ । ପାଞ୍ଚଟା ବେଳକୁ ଜଣେ ପ୍ରେସ୍ କର୍ମଚାରୀ ଏଭରଗ୍ରିନ୍ ହୋଟେଲ (ସେତେବେଳେ ଚାନ୍ଦିନୀଚୌକରେ ଏ ହୋଟେଲଟି ଥିଲା)ରୁ କିଛି ବରା ତରକାରୀ ଆଣି ମୋ ଆଗରେ ଥୋଇଲା । ସେମାନେ ବି ଭାଗ ନେଲେ । ମୁଁ ଖାଇବି ନାହିଁ ବୋଲି କହିଲି । କର୍ମଚାରୀ ଜଣକ କହିଲା- ଆଜ୍ଞା, ଏସବୁ ବାବୁ ମଗେଇଛନ୍ତି । ଆପଣ ଖାଇବାକୁ ଯାଇନାହାନ୍ତି ବୋଲି ସେ

କାହାଠୁ ଶୁଣିଲେ । ନିଜ ପକେଟରୁ ପଇସା ଦେଇ ସମସ୍ତଙ୍କ ପାଇଁ ଜଳଖିଆ ମଗେଇଲେ । ଆପଣ ଖାଇଦଉ ନାହାନ୍ତି । ଡାଲୁଅ ନ୍ୟାୟରେ କନଶିରି ପାଣି ପାଇଗଲା । ଆପଣଙ୍କ ପାଇଁ ମଗାଗଲା । ଆମେ ସମସ୍ତେ ଭାଗ ପାଇଲୁ । ଥଣ୍ଡା ହେଇଯିବ, ଖାଇ ଦିଅନ୍ତୁ । ଏ ରାଗୀ ଲୋକଟା ଉପରେ ରାଗ କରି ଫାଇଦା କ'ଣ ? କାଲିକି ସେ ବଦଳି ଯାଇପାରେ ।

ମୁଁ ଭାବିଲି– ଠିକ୍ କଥା । ସେ ଜଣେ କ୍ରୋଧୀ ଲୋକ । ମୋ କଥା ଶୁଣି, ମୋର ସଂକଳ୍ପ ଜାଣିସାରି, ଟିକିଏ ଦରଦର ସୂଚନା ଏବେ ଦଉଛନ୍ତି । ଏଭଳି ପରିସ୍ଥିତିରେ ତାଙ୍କୁ ଆଉ ଚିଡ଼େଇବା ଅନାବଶ୍ୟକ । ଜଳଖିଆ ତକ ମୋର ଖାଇବା ଉଚିତ । ହୁଏତ ତାଙ୍କର ଚିତ୍ତ ପରିବର୍ତ୍ତନ ହୋଇପାରେ । ପାଠ ପଢ଼ିବା ପାଇଁ ହୁଏତ ସେ ହଁ ଭରି ପାରନ୍ତି । ଦେଖାଯାଉ । ତଥାପି ମତେ ଅନ୍ୟତ୍ର ଚାକିରି ଖୋଜିବାକୁ ପଡ଼ିବ । କିଏ ଜାଣେ, କୋଉ ମୁହୂର୍ତ୍ତରେ ସେ ନା କହି ଦେଇପାରନ୍ତି ।

ଜଳଖିଆ ଖାଇ ଦେଲି ।

ମୁଁ ନିଜେ ଟିକେ ଶାନ୍ତ ହେଲି ।

ବିମ୍ବାଧର ବାବୁ ଶାନ୍ତ ହେଲେ କି ନା ମୁଁ ଜାଣିପାରିଲି ନାହିଁ । ମାତ୍ର ସେଇ ଦିନଠାରୁ ମୋର ନୂଆ କର୍ମ ସନ୍ଧାନ ଜାରି ରହିଲା । ବିମ୍ବାଧର ବାବୁ ମତେ ଆଉ ପାଠପଢ଼ା ବିଷୟରେ ପଚାରିଲେ ନାହିଁ । ସାତ ଆଠ ଦିନ ପରେ ମୁଁ କଲେଜରେ ଆଡ଼ମିଶନ ନେଇଗଲି । ତଥାପି ମୁଁ ଶଙ୍କିତ ମନରେ ଥାଏ । କେତେବେଳେ କୋଉ କଥା । ପ୍ରତିଟି ଦିନ ଭୟ ଓ ଶଙ୍କାରେ କଟୁଥାଏ । ହଠାତ୍ ଗୋଟାଏ ଅସମର୍ଥିତ ସୂତ୍ରରୁ ଖବର ପାଇଲି– 'ପ୍ରଜାତନ୍ତ୍ର ପ୍ରେସ'ରେ ଗୋଟାଏ ଇଂରାଜୀ ପ୍ରୁଫ୍ ରିଡ଼ର ଦରକାର । ଦିନେ ସକାଳ ଓଳି ଗୋଟାଏ ଦରଖାସ୍ତ ଧରି 'ପ୍ରଜାତନ୍ତ୍ର' ଗଲି । ଅନୁଷ୍ଠାନର ଜେନେରାଲ ମ୍ୟାନେଜର୍ ଥିଲେ ବିଶ୍ୱମ୍ବର ପରିଡ଼ା । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ; ଗାନ୍ଧିବାଦୀ ଲୋକ । ଖଦଡ଼ ପିନ୍ଧନ୍ତି । ଅଳ୍ପ ଉଚ୍ଚା ମଣିଷ । ଭାରି ଭଦ୍ର । ମୁଁ ତାଙ୍କୁ ଦେଖାକଲି । ଦରଖାସ୍ତ ଦେଲି । ସେ ମତେ ପ୍ରେସ୍ ବିଷୟରେ ଜ୍ଞାନ ଅଛି କି ନାଇଁ ବୋଲି ପଚାରିଲେ । ମୁଁ 'ହଁ' କହିବାରୁ ସେ କିଛି ପୃଷ୍ଠା ଇଂରାଜୀ ପ୍ରୁଫ୍ ସଂଶୋଧନ ପାଇଁ ଦେଲେ । ସେତେବେଳେ କପି ହୋଲଡ଼ର ହୋଇଥିଲେ ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ ରାଜେନ୍ଦ୍ର ବର୍ମା । ମୁଁ ପରେ ତାଙ୍କ ପରିଚୟ ପାଇଥିଲି ।

ପ୍ରୁଫ୍ ଦେଖିସାରି ମୁଁ ପଳାଇ ଆସିଲି । ମତେ କୁହାଗଲା, ସନ୍ଧ୍ୟାବେଳକୁ ଫଳାଫଳ ଘୋଷଣା କରାଯିବ । ବିଶ୍ୱମ୍ଭର ବାବୁ ଆଉ ରାଜେନ୍ଦ୍ର ବାବୁଙ୍କ ବ୍ୟବହାର ଓ କଥାବାର୍ତ୍ତା ମତେ ଭାରି ପ୍ରଭାବିତ କଲା । ମନେମନେ ଭାବିଲି, ଭାଗ୍ୟରେ ଥିଲେ ଏଭଳି ଲୋକମାନଙ୍କ ଗହଣରେ କାମ କରିବାକୁ ସୁଯୋଗ ମିଳିବ । ଏମାନେ ଜଣେ ଜଣେ ଅନୁଭୂତିସିଦ୍ଧ ମଣିଷ । ଅନେକ କଥା ଶିଖିବାକୁ ମିଳିବ ଏମାନଙ୍କ ସାହଚର୍ଯ୍ୟରୁ । ଦେଖାଯାଉ, ଯାହା ଭଗବାନଙ୍କ ଇଚ୍ଛା ।

ସେଠୁ ଆସି ଛାତ୍ରସାଥୀ ପ୍ରେସ୍‌ରେ ପହଞ୍ଚିଲା ବେଳକୁ ଏଗାରଟା ତିରିଶ । ମୁଁ ପହଞ୍ଚିଲା ମାତ୍ରେ କାନ୍ଥ ଘଡ଼ିକୁ ଚାହିଁଲେ ବିଦ୍ୟାଧର ବାବୁ । ତା'ପରେ କହିଲେ, 'ଘଡ଼ି ଦେଖିଲ, କେତେଟା ବାଜିଲାଣି ? ଏତେ ବେଳେ ଆସିବା ତ ନ ଆସିବା ସଙ୍ଗେ ସମାନ ।'

ମୋ ମୁଣ୍ଡକୁ ହଠାତ୍ ଗୋଟାଏ କୂଟ ବୁଦ୍ଧି ଜୁଟିଗଲା । ତତ୍‌କ୍ଷଣାତ୍ ମୁଁ କହି ପକାଇଲି- ମୁଁ ଛୁଟି ନେଇଯିବାକୁ ଆସିଚି । ମୋ ଦିହ ଭଲ ଲାଗୁନି । ସେଥିରେ ପୁଣି ବାଟରେ ସାଇକେଲ ପଂପଚର୍ ହେଲା । ସଜଡ଼ାସଜଡ଼ି କରି ଏବେ ଆସୁଚି । ମତେ ଗୋଟାଏ ଦିନ ଛୁଟି ଦିଆଯାଉ ।

ମୋ କଥା ନ ସରୁଣୁ ସେ ଗର୍ଜନ କରି ଉଠି କହିଲେ, 'ଗୋଟାଏ ଦିନ କାହିଁକି, ସବୁଦିନ ପାଇଁ ଛୁଟି ନେଇଯାଅ । ଯା-ଗେଟ୍ ଆଉଟ୍ !'

ମୁଁ କିଛି ସମୟ ନୀରବରେ ସେଠି ଠିଆ ହେଇ ରହିଲି । ଦେଖିଲି, ତାଙ୍କର ଗର୍ଜନ ଥମୁ ନାହିଁ । ମତେ ଭାରି ଅପମାନ ଲାଗିଲା । ମୁଁ ଆଉ କିଛି ନ କହି ସାଇକେଲ ଗଡ଼େଇ ଗଡ଼େଇ ଚାଲିଆସିଲି ବସାଘରକୁ । ଦୁଶ୍ଚିନ୍ତାରେ ଗଣ୍ଡାଏ କ'ଣ ଖାଇ ଦେଇ ଶୋଇପଡ଼ିଲି । ଶୁଣିଥିଲି, ଶୋଇ ପଡ଼ିଲେ ମନରୁ ଯନ୍ତ୍ରଣା ବୋଝ କମିଯାଏ । ବୋଧେ ତାହା ସତ । ନିଦ ଭାଙ୍ଗିଲା ବେଳକୁ ଅପରାହ୍ଣ ଚାରିଟା । ମୁହଁ ଧୋଇ ସାଇକେଲ ଧରି ଧାଇଁଲି 'ପ୍ରଜାତନ୍ତ୍ର ପ୍ରେସ' ଆଡ଼େ । ହୁଏତ ନୂଆ ରାହାର ସନ୍ଧାନ ମିଳିଯାଇପାରେ ସେଠି ।

॥ ନଅ ॥

# ଆଶାର ଆକାଶ

ଆଜି ପ୍ରଥମଥର ପାଇଁ ଭଗବାନଙ୍କ ପାଖରେ ମନଖୋଲା କୃତଜ୍ଞତା ଜଣାଇଲି । ବୋଧେ ମୁଁ ଜୀବନରେ, ମୋ ହେତୁ ପାଇଲା ଦିନୁଁ, ଏତେ ଖୁସି କେବେ ହୋଇ ନ ଥିଲି । ଇଏ ଅବ୍ୟକ୍ତ ଆନନ୍ଦ । ସକାଳ ଓଳିଟା ମୋ ପାଇଁ ଯେତିକି ଦୁଃଖଦ ଥିଲା, ସନ୍ଧ୍ୟା ସମୟଟା ତା'ଠୁଁ ଅଧିକ ପ୍ରୀତିପ୍ରଦ ପାଲଟିଗଲା । ମୁଁ ସିଧା କଟକଚଣ୍ଡୀଙ୍କ ମନ୍ଦିରକୁ ଯାଇ ଦୀପଟିଏ ଜଳାଇଲି; ମୁଣ୍ଡିଆ ମାରିଲି । ମନେମନେ ଜଣେଇଲି, ମାଆ ! ମଣିଷ ଯାହା ଚାହୁଁଥାଏ, ତାହା ପାଇଗଲେ ତା'ଠୁଁ ଅଧିକ ଖୁସିର କଥା ଆଉ ବା କ'ଣ ଥାଏ ! ତୁମେ ମହାନ୍ କରୁଣାମୟୀ !

ବସାଘରୁ ସେଦିନ ସନ୍ଧ୍ୟାରେ ଆସି ବିଶ୍ୱମ୍ଭର ବାବୁଙ୍କୁ ଦେଖାକଲି । ମତେ ଦେଖୁ ଦେଖୁ ସେ ପଚାରିଲେ, ଆସ ବସ । ଆଉ, କେବେ ଜଏନ୍ କରୁଚ ? ତୁମେ ପରା ଏଇଠି କୋଉଠି କାମ କରୁଚ ? ଆମର ଏଠି ତୁରନ୍ତ ହାଜିରା ଦବା ଦରକାର । କାଲିଠୁଁ ଆସିପାରିବ ?

ମୁଁ ଖୁସିକୁ ଚାପି ରଖି କହିଲି, ଆସିବି ।

– ଆସିପାରିବ ! ଧନ୍ୟବାଦ ! ଓଃ, ତମେ ମୋ ମୁଣ୍ଡରୁ ବୋଝ କମେଇଦେଲ । ପନ୍ଦର କୋଡ଼ିଏ ଦିନ ହେଲା ଆମେ ଲୋକ ଖୋଜି ହଉଚୁ । ଟିକେ ଇଂରେଜି ଶିକ୍ଷିତ ନ ହେଲେ ଭୁଲଭଟକା ଜାଣି ପାରିବେନି । ସେମିତି ଶିକ୍ଷିତ ଲୋକ କ'ଣ ମିଳୁ ନାହାନ୍ତି କି ? କିନ୍ତୁ ସେମାନଙ୍କର ଟେକ୍ନିକାଲ ଜ୍ଞାନ ନାହିଁ । ଭଲ ହେଲା; ତୁମେ ଆମ ପ୍ରଜାତନ୍ତ୍ର ପରିବାରରେ ଯୋଗ ଦେବ । ଏଣିକି ତୁମ ସୁବିଧା ଅସୁବିଧା ଆମର ଏବଂ ଆମ ସୁବିଧା ଅସୁବିଧା ତୁମର ।

ସାଙ୍ଗେ ସାଙ୍ଗେ ମୁଁ ତାଙ୍କୁ କହି ପକାଇଲି, ଆଜ୍ଞା, ମୋର ଗୋଟାଏ କଥା । ମୁଁ ଖ୍ରୀଷ୍ଟ ମର୍ଣ୍ଣିଂ କଲେଜରେ ନାଁ ଲେଖେଇଚି । ପାଠ ପଢ଼ିବାକୁ ମୋର ପ୍ରବଳ

ଇଚ୍ଛା । ଆପଣ ଟିକେ ମୋର ସେତିକି ସୁବିଧା ଦେଖିବେ । ମୁଁ ଆଉ କିଛି ଅସୁବିଧା କରିବିନି ।

ବିଶ୍ୱମ୍ଭର ବାବୁ କହିଲେ, ତୁମେ ଏଗାରଟା ପନ୍ଦର ସୁଦ୍ଧା ଆସିପାରିବ ତ ?

ମୁଁ କହିଲି; ହଁ ନିଶ୍ଚୟ ।

–ତେବେ ଠିକ୍ ଅଛି । ଯା– କାଲିଠୁଁ ଆସି କାମରେ ଯୋଗ ଦିଅ । ଏକଥା ଜାଣିଥା, ମହତାବ ବାବୁ ଏ ଦିଗରେ ଭାରି ଉଦାର । ତୁମେ ତୁମର ପାଠପଢ଼ା ସହିତ 'ପ୍ରଜାତନ୍ତ୍ର'ରେ କାମ କରୁଚ, ଏକଥା ଜାଣିଲେ ସେ ଭାରି ଖୁସି ହେବେ । ମୁଁ ବି ଦେଖିବି, ତମର ଯେମିତି କିଛି ଅସୁବିଧା ନ ହୁଏ । ହେଲା ? କାଲି ତୁମେ ଜଏନ୍ କଲାପରେ ଆପଏଣ୍ଟମେଣ୍ଟ ଅର୍ଡ଼ର ମିଳିଯିବ । ହଁ, ଏଇଲେ ତୁମକୁ ମାସିକ ପଚସ୍ତରି ଟଙ୍କା ଆଉ ସିପିଏଫ୍ ମାସିକ ଦଶଟଙ୍କା ମିଳିବ । ସିପିଏଫ୍ ଟଙ୍କା ମାସକ ପରେ ତୁମ ଆକାଉଣ୍ଟରେ ଜମା ହୋଇଯିବ । ତମର ଏବେ ସେ କଥା ବୁଝିବା ଦରକାର ନାହିଁ । ପରେ ସେ ସବୁ କଥା ଜାଣିପାରିବ ।

ଆଉ ଗୋଟେ କଥା । ତମ ଟେବୁଲ୍‌ର କପି ହୋଲଡ଼ର ହେବେ ରାଜେନ୍ଦ୍ର ବର୍ମା । ସେ ଜଣେ ଭଲ ଲୋକ । ସେ ଲେଖକ ଜ୍ଞାନେନ୍ଦ୍ର ବର୍ମାଙ୍କ ଭାଇ । ସେ ବି ଜଣେ ଲେଖକ ଓ ସ୍ୱାଧୀନତା ସଂଗ୍ରାମୀ । ତୁମକୁ ଏଠି ରଖିବା ପାଇଁ ସ୍ଥିର ହେବା କଥା ଶୁଣି ସେ ଭାରି ଖୁସି । କାରଣ କ'ଣ ମୁଁ ଜାଣେନା । ସେ ବାରମ୍ବାର କହୁଥିଲେ, ଭଲ ପିଲାଟିଏ । ଆସିଲେ କାମ ଅଟକିବ ନାହିଁ । ଗୋଟିଏ ଦେଖାରେ ମୁଁ କଳନା କରି ନେଇଚି ।

ପରଦିନ ସକାଳ ସାଢ଼େ ଦଶଟା ।

ଦେଖିଲି ପ୍ରଜାତନ୍ତ୍ରରେ ଗହଳି ଜମିନି ।

ଆଜି ଆଉ ଛାତ୍ରସାଥୀ ପ୍ରେସକୁ ତ ଯିବାର ନାହିଁ । ଚାନ୍ଦିନୀ ଚଉକ ଛକରେ ଚା'ଜଳଖିଆ ଖାଇ ପୁଣି ଫେରିଲି ପ୍ରଜାତନ୍ତ୍ରକୁ । ସେତେବେଳକୁ ଏଗାରଟା ବାଜି ସାରିଥାଏ । ପଶି ଆସୁ ଆସୁ ପ୍ରଥମେ ଦେଖିଲି ରାଜେନ୍ଦ୍ର ବାବୁଙ୍କୁ । ସେ ଅତ୍ୟଧିକ ଆନନ୍ଦରେ ମତେ କୁଣ୍ଢେଇ ପକାଇଲେ । କହିଲେ, ଖୁବ୍ ଭଲ ହେଲା । ଆସନ୍ତୁ, ମୁଁ ଆମ ସହକାରୀ ପ୍ରେସ୍ ମ୍ୟାନେଜର ସାଗରବାବୁଙ୍କ ସହିତ ପରିଚିତ କରାଇ ଦେଉଚି । ମୋ ହାତ ଧରି ସେ ନେଇଗଲେ ସାଗରବାବୁଙ୍କ ରୁମ୍‌କୁ । ସେ ମତେ ଖଣ୍ଡେ ସାଦା କାଗଜରେ ଜଏନିଂ ରିପୋର୍ଟ ଲେଖିବାକୁ କହିଲେ । ମୁଁ ଲେଖିଦେଲି ।

ମୁଁ ବାଁ ହାତରେ ଲେଖୁଥିବା ଦେଖି ସାଗରବାବୁ କହି ଉଠିଲେ– 'ମଲା ମଲା, ଏ ବାଁ–ଲେଖା କ'ଣ ସବୁବେଳେ ?'

ମୁଁ ହସି ହସି କହିଲି, ହଁ ।

ସେ ଟିକେ ହସିକରି କହିଲେ– ଆମର ଏଠି ଇଏ ବି ନୂଆ କଥା । ହଉ ହେଲା– ତା'ପରେ ଆଉ ଏକ କୋଠରିକୁ ଆମେ ଗଲୁ । ଆମ ପାଇଁ ନିର୍ଦ୍ଦିଷ୍ଟ ଥିବା ଟେବୁଲ ପାଖରେ ଆସି ବସିଲୁ । ସେଠି ଆଉ ଜଣେ ବୟସ୍କ ଓଡ଼ିଆ ପ୍ରୁଫ୍ ରିଡର୍ ବସିଥିଲେ । ସେ ଭାରି ଗମ୍ଭୀର ପ୍ରକୃତିର ଲୋକ ବୋଲି ଜଣାପଡୁଥିଲେ । ରାଜେନ୍ଦ୍ର ବାବୁ ଧୀର ସ୍ୱରରେ ମତେ କହିଦେଲେ– ସିଏ ପଣ୍ଡିତ ଦିଗମ୍ବର ବାବୁ । ଭାରି କ୍ରୋଧୀ । ଦେଖୁ ନାହାନ୍ତି, ଆପଣ ତାଙ୍କୁ ନମସ୍କାର କଲେ, ଅଥଚ ସେ ପ୍ରତି ନମସ୍କାର ଜଣାଇବା ତ ଦୂରର କଥା, ସେ ଖାଲି ଅଧଇଞ୍ଚ ଖଣ୍ଡେ ମୁଣ୍ଡ ହଲେଇ ଦେଲେ । ଛାଡ଼ନ୍ତୁ, ସିଏ ନ ପଚାରିଲେ ଆପଣ ତାଙ୍କୁ କିଛି ନ କହିଲେ ହେଲା । ତୁଚ୍ଛାଟାରେ କଣ୍ଟା ବାଡ଼ରେ ଲୁଗା ପକାଇ କଳି କରିବା ଲୋକ ସିଏ । ଆସନ୍ତୁ ଆମ କାମରେ ଲାଗିଯିବା ।

ଆମେ କାମରେ ଲାଗିଗଲୁ ।

ଦୁଇ ଘଣ୍ଟା ଭିତରେ ଗୁଡ଼ାଏ ବାକି କାମ ସରିଗଲା । ପ୍ରୁଫ୍ ଆସି ନେଇଗଲେ କରେକ୍ଟରମାନେ । ଏଠି କରେକ୍ଟର ଥିଲେ ତିନିଜଣ ଦକ୍ଷ ପ୍ରେସ କର୍ମଚାରୀ । ଚୌଧୁରୀ ବାବୁ, ପାଣିଗ୍ରାହୀ ବାବୁ ଓ ଅନ୍ତର୍ଯ୍ୟାମୀ ବାବୁ । ସେମାନେ ସମସ୍ତେ ପ୍ରେସ କର୍ମଚାରୀ ୟୁନିଅନ୍‌ର ଜଣେ ଜଣେ ନାମଜାଦା ନେତା । ଖୁବ୍ କମ୍ ଦିନ ଭିତରେ ମୋ ସହିତ ସେମାନଙ୍କର ଆତ୍ମୀୟତା ହୋଇଗଲା । ମୋର ସଂଶୋଧନ କରିବା ଶୈଳୀର ଖୁବ୍ ତାରିଫ୍ କଲେ ସେମାନେ । କେବଳ ସେତିକି ନୁହେଁ, ସେମାନେ ବିଶ୍ୱମ୍ଭର ବାବୁଙ୍କ ଆଗରେ ଯାଇ ମୋର ବେଶ୍ ପ୍ରଶଂସା କରି କହିଥିଲେ । ମଝିରେ ମଝିରେ ସେମାନେ ଆମ ଦି'ଜଣଙ୍କ ପାଖକୁ ବାମ୍ଫଉଠା ଚା ପଠାଉଥିଲେ । ରାଜେନ୍ଦ୍ର ବାବୁଙ୍କ ସହିତ ମୋର ଗୋଟାଏ ଅଲିଖିତ ସନ୍ଧି ହୋଇସାରିଥିଲା ଏହା ଭିତରେ । ମୁଁ ତାଙ୍କୁ ଅନୁରୋଧ କରିଥିଲି, ଆପଣ ମତେ 'ଆପଣ' ବୋଲି ସମ୍ବୋଧନ କରିବେ ନାହିଁ । ଆପଣ ମୋ ବାପ ବୟସର ଲୋକ । ମତେ ମୋ ନାଁ ଧରି ଡାକନ୍ତୁ । ତଥାପି ସେ ନାରାଜ । ମତେ ରତ୍ନାକର ବାବୁ ବୋଲି ଡାକିଲେ ।

ତାଙ୍କ ସହିତ ମିଶିବା ପରେ ମୁଁ ଜାଣିଲି, ସେ ସୁଭାଷଚନ୍ଦ୍ର ବୋଷଙ୍କର ଜଣେ ଦୃଢ଼ ସମର୍ଥକ । ତା'ଛଡ଼ା ତାଙ୍କର କାରା ଜୀବନର କାହାଣୀ ମଧ୍ୟ ବେଶ୍

କରୁଣ ଓ ରୋମାଞ୍ଚକର । ସେ ଏବଂ ତାଙ୍କ ସହଧର୍ମିଣୀ ଲବଙ୍ଗଲତା ଦେବୀ ବିଦୂଷୀ ଦୁହେଁ ଲେଖକ । ପରେ ଜାଣିଲି, ତାଙ୍କ ପୁଅ ଶୁଭେନ୍ଦୁ ମୋର ସହପାଠୀ ଖ୍ରୀଷ୍ଟ କଲେଜରେ । ତେଣୁ ଆମ ଭିତରେ ଏକ ପ୍ରକାର ପାରିବାରିକ ଘନିଷ୍ଠତା ଜମିଗଲା ଅଳ୍ପଦିନ ଭିତରେ । ସେ ସମୟରେ ଇଂରାଜି, ହିନ୍ଦୀ ଓ ବଙ୍ଗଳା ଭାଷାରେ ୫୮ଟି ବହି ଲେଖା ହୋଇଥିଲା ସୁଭାଷଚନ୍ଦ୍ରଙ୍କ ଉପରେ । ଅଧିକାଂଶ ବହିକୁ ସେ ସଂଗ୍ରହ କରି ରଖିଥିଲେ । ଯେଉଁ ବହି ସେ ସଂଗ୍ରହ କରିପାରି ନ ଥିଲେ ତାହାକୁ ଠାବକରି ପଢ଼ିଥିଲେ । ରାଜେନ୍ଦ୍ର ବାବୁଙ୍କ ସକାଶେ ମୁଁ ସୁଭାଷ ବୋଷଙ୍କ ଜଣେ ମୁଗ୍ଧ ପ୍ରଶଂସକ ହେଇଗଲି । ତାଙ୍କଠାରୁ ବହିତକ ନେଇ ପଢ଼ିବାକୁ ସୁଯୋଗ ପାଇଥିଲି । ମୁଁ ପରବର୍ତ୍ତୀ କାଳରେ ଗାନ୍ଧୀ ନେହେରୁଙ୍କ ଅପେକ୍ଷା ସୁଭାଷଙ୍କୁ ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନାୟକର ମର୍ଯ୍ୟାଦା ଦେଇ ଆସିଲି । ମୋର ମନେ ହେଉଚି, ଏଇ ମହାନ୍ ପୁରୁଷଙ୍କ ଜୀବନାଦର୍ଶ ଓ ସ୍ପଷ୍ଟବାଦିତାର ପ୍ରଭାବ ମୋ ଉପରେ ଯାହା ଛାଇ ହୋଇଗଲା, ତାହା ଥିଲା ରାଜେନ୍ଦ୍ର ବାବୁଙ୍କର ଅବଦାନ ।

ଏହାରି ଭିତରେ ମୋର କଲେଜ ଜୀବନ ସମାନ୍ତରାଳ ଭାବରେ ଚାଲିଥିଲା । ଅନେକ ବନ୍ଧୁଙ୍କ ସହିତ ଘନିଷ୍ଠତା ହୋଇସାରିଥିଲା । ବୋଧେ ମଣିଷର ଏଇ ବୟସ ବନ୍ଧୁତାର ବୟସ । ସେତେବେଳକୁ ଆମେ କେତେଜଣ ଏକାଠି ହୋଇ ଦେଉଳସାହି ଛକରେ ଏକ ମେସ୍ କରି ରହୁଥିଲୁ । ମୋ ସାଙ୍ଗରେ ରହୁଥିଲେ ମୋର କଲେଜପଢ଼ା ସାଙ୍ଗ ଜୟକୃଷ୍ଣ ପଟ୍ଟନାୟକ । ସେ ଜଣେ ଖେଳୁଆଡ଼ ସହପାଠୀ । ଜୀବନରେ 'ଇନ୍‌ସପେକ୍ଟର ଅଫ୍ ଫିଜିକାଲ ଏଡୁକେଶନ' ଭାବେ ଚାକିରି କରି ସେ ଅବସର ନେଲାଣି । ପ୍ରାକ୍ତନ ସାଂସଦ କୁମୁଦିନୀ ପଟ୍ଟନାୟକ ତା'ର ବଡ଼ ଭଉଣୀ ଏବଂ ପୂର୍ବତନ ମନ୍ତ୍ରୀ ତଥା ରାଜନେତା ରାମକୃଷ୍ଣ ପଟ୍ଟନାୟକ ତା'ର ଭିଣୋଇ । ଜୟୀ ମୋର ଘନିଷ୍ଠ ବନ୍ଧୁ । ଦେଉଳସାହିରେ ଥିଲାବେଳେ ଆଉ ଦୁଇଜଣ କଲେଜପଢ଼ା ବନ୍ଧୁ ସେଇ ପାଖରେ ରହୁଥିଲେ । ସେମାନେ ହେଲେ ସୁନୀଲ ଅଧିକାରୀ ଆଉ ବିଜୟଚନ୍ଦ୍ର କର । ସୁନୀଲଙ୍କ ଘର ଜଗତସିଂହପୁର ପାଖ ପୁନଙ୍ଗରେ । ମୋର ଏକ ଚର୍ଚ୍ଚିତ ଉପନ୍ୟାସ 'ରାତ୍ରିର ରଜନୀଗନ୍ଧା' ସେଇ ପାଠପଢ଼ା ସମୟରେ ଲେଖିଥିଲି ଏଇ ପୁନଙ୍ଗ ଗାଁକୁ ଭିତ୍ତି କରି । ସେ ସମୟରେ ଏହାର ସମୀକ୍ଷା ଲେଖି ମହାପାତ୍ର ନୀଳମଣି ସାହୁ 'ଝଙ୍କାର'ରେ ପ୍ରକାଶ କରିଥିଲେ । ଫଳରେ ତାହା ବିଶେଷ ଭାବେ ଲୋକଲୋଚନକୁ ଆସିଥିଲା ।

ବିଜୟ କର ଦେଉଳସାହିର ଡାକ୍ତର ସୂର୍ଯ୍ୟମଣି କରଙ୍କ ଭାଇ । ପ୍ରଫେସର ରଜତ କୁମାର କର ଓ ପୂର୍ବତନ ମନ୍ତ୍ରୀ ଶରତ କୁମାର କର ହେଲେ ତାଙ୍କ ବଡ଼ବାପା ପୁଅ ଭାଇ । ଏସବୁ ପରିଚୟ ସେତେବେଳେ ମୋ ବନ୍ଧୁମାନଙ୍କର ଗଢ଼ି ଉଠି ନ ଥିଲା । ମୂଳକଥା ଆମେ ଚାରିଜଣ ଖୁବ୍ ଘନିଷ୍ଠ ଥିଲୁ । ପ୍ରତି ମାସରେ ଚାରିଜଣଯାକ ଏକାଠି ହୋଇ ଛୁଟିଦିନ ପାଳୁଥିଲୁ କାହାରି ନା କାହାରି ଗାଁରେ । କେବେ ତିଗିରିଆରେ ତ, କେବେ ପୁନଙ୍ଗରେ ଓ ଆଉ କେବେ ଆମ ଗାଁ ଅରେଇରେ । ଆମର ବେଶି ସମୟ କଟିଥିଲା ପୁନଙ୍ଗରେ । କାରଣ ସେଠିକି ଯୋଗାଯୋଗ ରାସ୍ତା ସବୁଦିନିଆ ଭଲ ଥିଲା । ତିଗିରିଆକୁ ମହାନଦୀ ପାର ହୋଇ ଆଠଗଡ଼ ବାଟେ ଯାଉଥିଲୁ । ସବୁଠୁଁ ଅସୁବିଧା ରାସ୍ତା ଥିଲା ମୋ ଗାଁକୁ । ପରିବେଶ ଓ କ୍ଷେତ ବାଡ଼ି ଆଦି ଖୁବ୍ ଆକର୍ଷଣୀୟ ହୋଇଥିଲେ ବି ଯାତାୟତ ରାସ୍ତା ଖୁବ୍ ଦୁର୍ଗମ । ତେଣୁ ଯିବା ପାଇଁ ପ୍ରୋଗ୍ରାମ ହେଲେ କେହି ନା କେହି ନ ଯିବାକୁ କହି ମଙ୍ଗ ମୋଡ଼ନ୍ତି ।

ଦେଉଳସାହି ମେସ୍‌ରେ ଥିଲାବେଳେ ଆଉ ଗୋଟାଏ ଅଭିନବ ପର୍ବ ମୋ ସହିତ ଯୋଡ଼ି ହୋଇଥିଲା । ମୋ ମନରେ ଗୋଟାଏ ସାହିତ୍ୟ ପତ୍ରିକା ପ୍ରକାଶନର ନିଶା ଦେଖାଦେଲା । ସେ ନିଶାକୁ ସମର୍ଥନ ଓ ସାହାଯ୍ୟ କଲେ ମୋର ଅନ୍ୟ ତିନି ବନ୍ଧୁ । ଖବରକାଗଜ ପ୍ରକାଶନ ନିୟମରେ ରେଜିଷ୍ଟ୍ରିଭୁକ୍ତ ନ ହେଲେ ପତ୍ରିକା ପ୍ରକାଶ କରିବା ଆଇନସମ୍ମତ ହେବ ନାହିଁ ବୋଲି ଅଧିକାଂଶ କହିଲେ । ସୁନୀଲ ଅଧିକାରୀ ଫର୍ମ ଆଣି ପୂରଣ କରି ମୋ ଦସ୍ତଖତ ନେଇ ଜିଲାପାଳଙ୍କ ଅଫିସରେ ଦାଖଲ କଲେ । ଦଶଟା ଖଣ୍ଡେ ନାଁ ଆମେ ଦାଖଲ କରିଥିଲୁ । ତିନି ମାସ ପରେ ଗୋଟାଏ ପଞ୍ଜୀକୃତ ନାଁ ଆସିଲା 'ରେଖା' । ନାଁଟା ମୋର ସେତେ ମନପସନ୍ଦ ହେଲା ନାହିଁ । ତଥାପି ବନ୍ଧୁମାନେ ଦାବି କଲେ, ଚାଲୁନ ! ଭଲ ଲେଖା ଆଉ ଭଲ ପ୍ରକାଶିତ ରୂପ ହେଲେ ପତ୍ରିକା ଆପେ ପ୍ରସିଦ୍ଧି ପାଇଯିବ । ସେମାନଙ୍କ କଥାରେ ମୁଁ ଶେଷରେ ରାଜି ହେଇ କାମରେ ଲାଗି ପଡ଼ିଲି । ପ୍ରତି ତିନି ମାସରେ ଏହାର ଗୋଟିଏ ଲେଖାଁ ସଂଖ୍ୟା ପ୍ରକାଶ ପାଇଲା । ନୂଆ ଲେଖକ ଲେଖିକାଙ୍କୁ ପ୍ରୋତ୍ସାହନ ଦେବା ଏହାର ଆଭିମୁଖ୍ୟ ଥିଲା ।

ଏହି ସୂତ୍ରରେ ମୋର ବନ୍ଧୁତାର ସରହଦ ବି ବଢ଼ିଲା ।

'ରେଖା' ସହିତ ଯୋଡ଼ି ହୋଇ ଆସିଲେ ଗୋଦାବରୀଶ ମହାବିଦ୍ୟାଳୟର ଛାତ୍ରନେତା ପ୍ରସନ୍ନ ପାଟଶାଣୀ, ବାଙ୍କୀର ଇଂଜିନିଅରିଂ ଛାତ୍ର ସତ୍ୟବ୍ରତ ରଥ,

ସମ୍ବଲପୁର ଲେଡ଼ି ଲୁଇସ୍ ହାଇସ୍କୁଲ ଛାତ୍ରୀ ସ୍ମିତା ହୋତା, ପରେପରେ କବି ପ୍ରାବନ୍ଧିକ ଅଜିତ କୁମାର ତ୍ରିପାଠୀ, କବି ସଦାଶିବ ଦାଶ, ଢେଙ୍କାନାଳର ଗାଳ୍ପିକା ଶକୁନ୍ତଳା କର୍ଣ୍ଣ ଆଦି ଅନେକ । 'ରେଖା'ର ପରିବାର କ୍ରମେ କ୍ରମେ ବଢ଼ିଲା । ପ୍ରତ୍ୟେକ ସଦସ୍ୟ ଦଶ କପିରୁ ଊର୍ଦ୍ଧ୍ୱ ବିକ୍ରି କରି ଟଙ୍କା ପଠାଇବାର ଶପଥ ନେଲେ । ପ୍ରାୟ ଚାରି ବର୍ଷକାଳ ଏହା ନିୟମିତ ପ୍ରକାଶ ପାଇଥିଲା । ଏହା ଭିତରେ ଆମେମାନେ ଦେଉଳସାହି ମେସ୍ ଛାଡ଼ିଲୁ । ମୁଁ ରାଜାବଗିଚା ଲେବର କଲୋନୀରେ କ୍ୱାଟରଟିଏ ପାଇ ସେଠି ଯାଇ ରହିଲି । ସୁନୀଲ ଷ୍ଟେଟ୍ ବ୍ୟାଙ୍କରେ ଚାକିରି ପାଇଗଲା । ଜୟୀ ଶାରୀରିକ ଶିକ୍ଷାକ୍ଷେତ୍ରରେ ଟ୍ରେନିଂ ନେବାକୁ ଇନ୍ଦୋର ଚାଲିଗଲା । ଏକୁଟିଆ ପତ୍ରିକା ଚଳାଇବା କଠିନ ବ୍ୟାପାର ହେବାରୁ ତାହାର ଆତ୍ମପ୍ରକାଶ ପ୍ରଥମେ ଅନିୟମିତ ହୋଇ ଶେଷରେ ବନ୍ଦ ହୋଇଗଲା । ମାତ୍ର ପତ୍ରିକାକୁ କେନ୍ଦ୍ର କରି ଆମ ଭିତରେ ସୃଷ୍ଟି ହେଇଥିବା ସୌହାର୍ଦ୍ଦ୍ୟ ସବୁଦିନ ପାଇଁ ବଞ୍ଚି ରହିଲା ।

ଏହି ସମୟରେ ଛାତ୍ର ସମାଜକୁ ଏକଜୁଟ କରିବାର ଏକ ଐତିହାସିକ ଦୁର୍ଘଟଣା ଘଟିଗଲା । ଓଡ଼ିଶା ରାଜନୀତିର ଘଟଣାଚକ୍ର ଅନୀତି ଓ ଭ୍ରଷ୍ଟାଚାରରେ ଧୂମିଳ ହୋଇ ଉଠିଥିଲା । କାମରାଜ ପ୍ଲାନ ଅନୁସାରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଇସ୍ତଫା ଦେଲେ ଏବଂ ବୀରେନ ମିତ୍ର ହେଲେ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ । ତାହା ମଧ୍ୟ ଓଡ଼ିଶାର ଜନମାନସକୁ ଶାନ୍ତି ଦେଇପାରିଲା ନାହିଁ । ଶାସନକଳ ସଂପୂର୍ଣ୍ଣ ଢ଼ୁଗୁଳା ହୋଇଗଲା । ଲୋକେ ସ୍ଲୋଗାନ୍ ଦେଲେ– 'ମଦ ବୋତଲ ଯୋଉଠି, ବିଜୁ ବୀରେନ୍ ସେଇଠି ।' ଲୋକଙ୍କ ସୁସ୍ଥ ଭାବନାକୁ ଶାସନକଳ ପୂର୍ଣ୍ଣ ଭାବରେ ଆଘାତ କଲା । ଫଳରେ ଗୋଟାଏ ନିହାତି ଛୋଟ ଘଟଣା ଏକ ଐତିହାସିକ ଦୁର୍ଘଟଣାର ରୂପ ନେଲା । ଶାସନକଳର ତ୍ରୁଟିପୂର୍ଣ୍ଣ ପରିଚାଳନା ଯୋଗୁଁ ତାହା ସମଗ୍ର ଓଡ଼ିଶାର ପ୍ରଥମ ସଫଳ ଛାତ୍ର ଆନ୍ଦୋଳନର ଭୟଙ୍କର ରୂପ ଧାରଣ କଲା ।

ଘଟଣାଟି ଥିଲା ଅତି ସାମାନ୍ୟ ।

କଟକ କଲେଜ ଛକର ଗୋଟିଏ ଛୋଟ ରେଡ଼ିଓ ମରାମତି ଦୋକାନୀ । ରେଭେନ୍ସା କଲେଜର ଜଣେ ଛାତ୍ରଙ୍କର ସେ ଗୋଟିଏ ରେଡ଼ିଓ ମରାମତି କରିବାକୁ ନେଇଥିଲା । ମରାମତି ଠିକ୍ ଭାବେ କରିପାରିଲାନି ସେ । ଦୁହିଁଙ୍କ ଭିତରେ ପାଟିତୁଣ୍ଡ ହୋଇ ହାତାହାତି ହୋଇଗଲେ । ବାସ୍, ଏ ଘଟଣାଟି ଉଗ୍ର ରୂପ ନେଲା । ଛାତ୍ର ସମାଜ ଓ ବ୍ୟବସାୟୀ ଗୋଷ୍ଠୀ ଏକଜୁଟ ହୋଇ ପରସ୍ପର ପରସ୍ପରକୁ ଆକ୍ରମଣ

କଲେ । କଲେଜ ସାଇନ୍ ଡାଏ ହେଲା । ଘଟଣାଟି ଅନ୍ୟ ସବୁ କଲେଜକୁ ବ୍ୟାପିଲା । ସାରା ଓଡ଼ିଶାର ଛାତ୍ରସମାଜ ଏକ ହୋଇଗଲେ । ଦୀର୍ଘଦିନ ଧରି ସ୍କୁଲ କଲେଜ ବନ୍ଦ ରହିଲା । କଟକ ପାଲଟିଗଲା ସମଗ୍ର ପ୍ରଦେଶର ଏଇ ଛାତ୍ର ଆନ୍ଦୋଳନର ପ୍ରାଣକେନ୍ଦ୍ର । ତେଣୁ ବାଣପୁରରୁ ପ୍ରସନ୍ନ ପାଟଶାଣୀ ଆସି ମୋ ରାଜାବଗିଚାର କ୍ୱାଟରରେ ଡେରା ପକାଇଲା । ମେଡ଼ିକାଲ କଲେଜ ଛାତ୍ର ୟୁନିଅନ୍‌ର ସଭାପତି ପ୍ରମୋଦ ସାମନ୍ତରାୟ, ଷ୍ଟୁଆର୍ଟ କଲେଜ ୟୁନିଅନ୍‌ର ଭବେଶ ମହାପାତ୍ର, ଖ୍ରୀଷ୍ଟ କଲେଜ ୟୁନିଅନ୍‌ର ସଭାପତି ରମାକାନ୍ତ ମିଶ୍ର ଓ ଜଗତସିଂହପୁର କଲେଜର ନିରଂଜନ ଶତପଥୀ ଆଦି ଏ ଆନ୍ଦୋଳନର ସଫଳ ପରିଚାଳନା କଲେ । ମୋ ଉପରେ ପ୍ରଚାର ଓ ପ୍ରସାର ଦାୟିତ୍ୱ ଦିଆଯାଇଥିଲା ।

ଦିନେ ବାଲିଯାତ୍ରା ପଡ଼ିଆରେ ମିଳିତ ଛାତ୍ର କ୍ରିୟାନୁଷ୍ଠାନ କମିଟିର ସାଧାରଣ ସଭା ସନ୍ଧ୍ୟା ୬.୩୦ମି. ରେ ଅନୁଷ୍ଠିତ ହେବାର ଥିଲା । ସଭା ଆରମ୍ଭର ଅଧଘଣ୍ଟା ଆଗରୁ ସେଠି କେଉଁ କେଉଁ ଛାତ୍ର ନେତା କ'ଣ କ'ଣ କଥା କହି ପ୍ରସ୍ତାବ ଆଗତ କଲେ ତାହା ସେଦିନର 'ପ୍ରଜାତନ୍ତ୍ର'ରେ ମୁଦ୍ରିତ ହୋଇ ଆଗରୁ ବିକ୍ରି ହେଉଥିବା ଦେଖାଗଲା । ସମସ୍ତେ ଏହାର ରହସ୍ୟ ବୁଝି ନ ପାରି ଆଶ୍ଚର୍ଯ୍ୟ ହେଲେ । ସେତେବେଳେ ଦୈନିକ ଓଡ଼ିଆ କାଗଜର ଦାମ ଥିଲା ଦଶ ପଇସା । 'ପ୍ରଜାତନ୍ତ୍ର' କଳାବଜାରରେ ପଚାଶ ପଇସାରେ ବିକ୍ରି ହେଉଥିଲା । 'ପ୍ରଜାତନ୍ତ୍ର'କୁ ପର୍ଯ୍ୟାପ୍ତ ପରିମାଣର ନିଉଜପ୍ରିଣ୍ଟ ଦିଆଯାଉ ନ ଥିଲା । ଏହା ସରକାର ବିରୋଧୀ ପତ୍ରିକା ଭାବରେ ବେଶ୍ ଖ୍ୟାତି ଅର୍ଜନ କରିଥିଲା । ପ୍ରଜାତନ୍ତ୍ର ସଂପାଦକ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଏ ବିରୋଧୀ ସ୍ୱର ବନ୍ଦ ନ କଲେ ମିସା ଆଇନରେ ଆରେଷ୍ଟ କରିବାର ଧମକ ଦିଆଯାଇଥିଲା ।

ଦୀର୍ଘଦିନ ଆନ୍ଦୋଳନ ଚାଲିଲା ପରେ ଶେଷରେ କେନ୍ଦ୍ର ଗୃହମନ୍ତ୍ରୀ ଗୁଲଜାରିଲାଲ ନନ୍ଦା ଓଡ଼ିଶା ପରିସ୍ଥିତି ଅନୁଧ୍ୟାନ କରିବାକୁ ଆସିଲେ । ରେଭେନ୍ସା କଲେଜ ପରିସରରେ ଏକ ବିରାଟ ସଭା ଅନୁଷ୍ଠିତ ହେଲା । ଶ୍ରୀଯୁକ୍ତ ନନ୍ଦା କହିଥିଲେ- 'ମୁଁ ଆପଣମାନଙ୍କ କଥା ସବୁ ଶୁଣିଲି । ଏଠୁ ଫେରିଗଲା ପରେ କେନ୍ଦ୍ର ସରକାରଙ୍କୁ ମୋର ରିପୋର୍ଟ ଦେବି । ଆପଣମାନେ ଆପଣଙ୍କ ଆନ୍ଦୋଳନ ପ୍ରତ୍ୟାହାର କରି ନିଅନ୍ତୁ । କାର୍ଯ୍ୟାନୁଷ୍ଠାନ ପାଇଁ ମତେ ଦୁଇ ସପ୍ତାହ ସମୟ ଦିଅନ୍ତୁ । ମୁଁ ଭାବୁଚି, ତା'ରି ଭିତରେ ଆପଣମାନଙ୍କର ସବୁ ସମସ୍ୟା ସମାଧାନ ହୋଇଯାଇଥିବ । ମୁଁ

କେନ୍ଦ୍ର ସରକାରଙ୍କର ଜଣେ ନଗଣ୍ୟ ପ୍ରତିନିଧି । ତଥାପି ମୋର ଅନୁରୋଧ, ଆପଣମାନେ ମୋ କଥା ଉପରେ ଆସ୍ଥା ରଖନ୍ତୁ ।'

ତାହାହିଁ ହେଲା ।

ଛାତ୍ର ଆନ୍ଦୋଳନ ପ୍ରତ୍ୟାହାର କରି ନିଆଗଲା ।

ସାତ ଆଠ ଦିନ ଭିତରେ ବୀରେନ ମିତ୍ରଙ୍କ ସରକାର ଇସ୍ତଫା ଦେଲା । ସଦାଶିବ ତ୍ରିପାଠୀ ହେଲେ ନୂତନ ମୁଖ୍ୟମନ୍ତ୍ରୀ । ରେଡ଼ିଓ ଦୋକାନୀକୁ ଆରେଷ୍ଟ କରାଗଲା । ପିଲାମାନଙ୍କର ଧର୍ମଘଟକାଳୀନ ପାଠପଢ଼ାକୁ ଭରଣା କରିବାକୁ ଛୁଟିଦିନମାନଙ୍କରେ ଅତିରିକ୍ତ କ୍ଲାସ କରିବାକୁ ନିର୍ଦ୍ଦେଶ ଦିଆଗଲା । ଓଡ଼ିଶା ଇତିହାସର ଏକ ଯୁଗାନ୍ତକାରୀ ସଫଳ ଛାତ୍ର ଆନ୍ଦୋଳନର ଅବସାନ ଘଟିଲା । ଏହି ଆନ୍ଦୋଳନରୁ ମୋର କିଛିଟା ଲାଭ ହେଲା । କେତେକ ଛାତ୍ରବନ୍ଧୁଙ୍କ ସହିତ ଘନିଷ୍ଠତା ବଢ଼ିଗଲା ଏବଂ 'ପ୍ରଜାତନ୍ତ୍ର' ସମ୍ବାଦ ବିଭାଗ ସହିତ ମୁଁ ସଂପୃକ୍ତ ହୋଇଗଲି । ଖ୍ରୀଷ୍ଟ କଲେଜରେ ପାଠ ପଢ଼ିବା ପାଇଁ ଚାକିରି କରୁଥିବା ବିଭିନ୍ନ ସଂସ୍ଥାର କର୍ମଚାରୀମାନଙ୍କ ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା । ଅନେକ ପିଲା ଚାକିରି କରୁଥିବାର ଜାଲ ସାର୍ଟିଫିକେଟ ଦାଖଲ କରି ସେଠାରେ ନାଁ ଲେଖାଇଥିଲେ । ମୁଁ ସତରେ ଗୋଟାଏ ସମ୍ବାଦପତ୍ର ସଂସ୍ଥାରେ କାମ କରୁଛି, ତାହା ଜଣାପଡ଼ିଗଲା ଛାତ୍ର ଆନ୍ଦୋଳନ ବେଳର ସମ୍ବାଦ ପ୍ରକାଶନ କାମରୁ ।

।। ଦଶ ।।

# ଖ୍ରୀଷ୍ଟ କଲେଜ ଓ ମନୋଜ ସାର୍

...ବେଳେବେଳେ ଭାରି ମନ ହୁଏ, ହଜିଲା ଦିନଗୁଡ଼ିକ ଫେରିଆସନ୍ତା କି ? ପୋଛି ହେଇଯାଆନ୍ତା କି, ଆଜିର ଏଇ ଅଶାନ୍ତ ପରିବେଶଜନିତ ଘଟଣାବଳୀର ଯନ୍ତ୍ରଣା । ସେଦିନ ମୋ ପାଖରେ ଦୁଃଖ ଥିଲା; ଅଭାବ ଥିଲା; ମାତ୍ର ମନରେ ସେ ସବୁକୁ ଟପି ଯିବାର ସାହସ ଥିଲା ପ୍ରଚୁର । ହେଲେ ଆଜି...

ଜୀବନ କ'ଣ– ଜାଣିବାର ପ୍ରଥମ ସୁଯୋଗ ମୁଁ ପାଇଥିଲି ପବିତ୍ର ଖ୍ରୀଷ୍ଟ କଲେଜର ଜଠରରୁ । ତାହା ଥିଲା କେତେ ଅମାୟିକ ରସସିକ୍ତ ବନ୍ଧୁତାର ଫୁଲବନଟିଏ । ସେଦିନର ସାଙ୍ଗଟିଏ ଏବେ କୋଉଠି କେମିତି କିଏ ଦେଖା ହେଇଗଲେ, ପଚାରି ଦିଅନ୍ତି– 'ମନେଅଛି ନାଁରେ କାଳିଜାଈର ପିକ୍‌ନିକ୍ ?' 'ମନେଅଛି ନାଁରେ ଏନ୍.ସି.ସି. ପ୍ୟାରେଡ୍ କଥା ? – ଷ୍ଟାଡ଼ିୟମ୍‌ରେ ପ୍ୟାରେଡ୍ ବେଳେ ସେ ନିଶୁଆ ହାବିଲ୍‌ଦାର୍ କ'ଣ କହୁଥିଲା ?' ମନେଅଛି ଚଣ୍ଡୀଛକରେ 'ଜ୍ଞାନ'ର ଗୋପନ ପ୍ରଣୟ ଘଟଣା ଧରାପଡ଼ିଯିବା କଥା'–

ସେ କଥା, ଏବେ ଖାଲି କଥା । ଖୁନ୍ଦାଖୁନ୍ଦି ସ୍ୱପ୍ନ ବିଭୋରତାର କଥା ।

ଅନେକ କଥା ଏବେ ମଧ୍ୟ ଚାରିପଟେ ବିଞ୍ଚିହେଇ ପଡ଼ିଯାଉଛି ।

ସାର୍‌ମାନଙ୍କ କଥା; ସାଙ୍ଗ ପିଲାଙ୍କ କଥା; ସାଇକେଲ ବେଲ୍ କପ୍ ଚୋରି କଥା; ଜହ୍ନ ରାତିରେ କଲେଜ ସାମ୍ନା ପଡ଼ିଆରେ ବସି ଘଣ୍ଟା ଘଣ୍ଟା ମଜା ଗପ କରିବାର କଥା; ଭୟଦ ପରୀକ୍ଷାମାନଙ୍କ କଥା; ସଂଯତ ଛାତ୍ର ଆନ୍ଦୋଳନର କଥା– ଏମିତି ଅସୁମାରି କଥା ।

ସତେରେ, କାଳିଜାଈ ପିକ୍‌ନିକ୍ ଥିଲା ଭାରି ସ୍ମରଣୀୟ କଥା ଅନ୍ତତଃ ମୋ ପାଇଁ । ଏକ୍ସ–ମାସ ଛୁଟି ଆରମ୍ଭ ଦିନ ପିକ୍‌ନିକ୍ ଯିବା ସ୍ଥିର ହେଲା କଲେଜ ତରଫରୁ । ମୃତ୍ୟୁଞ୍ଜୟ ସାର୍, ଚନ୍ଦ୍ର ସାର୍ ଓ ଜଣେ ପିଅନ ଆମ ସାଙ୍ଗରେ ଗଲେ । ଡାଲି

ଚାଉଳ କାଠ ଆଦି କିଣାକିଣି ହୋଇ ରହିଲା । ସ୍ଥିର ହେଲା, କଟକ ଖପୁରିଆ ପ୍ରେସଛକରୁ ଜଣେ ରାନ୍ଧୁଣିଆ ଓ ଜଣେ ହେଲ୍‌ପର୍ ଉଠିବେ । ପିକ୍‌ନିକ୍ ଚାନ୍ଦା ଦେଇଥିବା ୪୮ ଜଣ ପିଲାଙ୍କ ପାଇଁ ଗୋଟେ ବଡ଼ ବସ୍ ଅଣାଯାଇଥିଲା । ରାତି ଚାରିଟା ବେଳକୁ ସମସ୍ତେ କଲେଜ ସାମ୍ନାରେ ରୁଣ୍ଡ ହେବେ । କେହି ଡେ଼ରିରେ ଆସିଲେ ଗାଡ଼ି କାହାକୁ ଅପେକ୍ଷା କରିବନି । କିନ୍ତୁ ଯିବାବେଳକୁ ଘଟଣା ହେଲା ଓଲଟା । ଯାଉଯାଉ ସାତଟା ବାଜିଲା । ବସ୍‌ରେ ଲଦାଲଦି ହୋଇ ଚାଲିଲେ ୬୧ ଜଣ । କିଏ ନ ଆସିଲା, କିଏବା ଅଧିକା ଆସିଲା, ଜାଣିବାର ଧୈର୍ଯ୍ୟ ନ ଥିଲା କାହାର ।

ବାଲୁଗାଁରେ ପହଞ୍ଚିଲୁ ଦିନ ଦଶଟା ପରେ । ଜଳଖିଆପତ୍ର ଖାଇସାରି ପାଞ୍ଚ ଛଅଟା ଡଙ୍ଗାରେ ଆମେ ଚାଲିଲୁ କାଳିଜାଈ । ଡାଲି ଚାଉଳ କାଠ ଆଦି ଗୋଟାଏ ଡଙ୍ଗାରେ ଲଦା ହେଲା । ସେସବୁ ପିଅନ ଜିମା ଦିଆଗଲା । ବାଲୁଗାଁରୁ ମାଛ କିଣି ପଛ ଡଙ୍ଗାରେ ଆସିଲେ ସାର୍‌ମାନେ । ଆମେ ସମସ୍ତେ ମନ ଆନନ୍ଦରେ ପଦ୍ୟାନ୍ତର କଲୁ । କେହି ଜଣେ ସ୍ୱର ଦେଇ ଗୋଦାବରୀଶ ମିଶ୍ରଙ୍କ 'କାଳିଜାଈ' କବିତା ଆବୃତ୍ତି କରିବାରୁ ଆଉ ଦଳେ ତାକୁ ବାରଣ କଲେ । କହିଲେ, ଡଙ୍ଗାରେ ବସି ସେ ଗୀତ ଗାଇବା ଅଶୁଭ । ଏମିତି ଡଙ୍ଗାରେ ବସି ପାରିକୁଦ ଗଡ଼ ଯିବାବେଳେ କ'ଣ ହେଇଥିଲା ଜାଣିନ ? ଆମେ ସବୁ ଆନନ୍ଦ-ଉତ୍ଫୁଲ୍ଲ ହେଇ କାଳିଜାଈ ପାହାଡ଼ ପାଖରେ ଓହ୍ଲେଇ ପଡ଼ିଲୁ । ସାର୍ ଦୁହେଁ ମାଛଧରି ପହଞ୍ଚିଗଲେ ପଛେପଛେ । ଶୀଘ୍ର ରୋଷେଇବାସ ଆରମ୍ଭ କରିବାର ବ୍ୟବସ୍ଥା ପାଇଁ ଖୋଜା ପଡ଼ିଲା ରୋଷେଇଆକୁ । ହେଲେ ରୋଷେଇଆ କାହିଁ ?

ଆମ ସାଙ୍ଗରେ ଶେଷ ମୁହୂର୍ତ୍ତରେ ଯୋଗ ଦେଇଥିଲେ ଏଗାର ଜଣ ନୂଆ ଛାତ୍ରବନ୍ଧୁ । ପୁରୁଣାରୁ ଜଣେ କିଏ ଆସିପାରି ନ ଥିଲା । ରୋଷେଇଆ କି ତା'ର ସହକାରୀ ଆସିପାରି ନାହାନ୍ତି । ଚିନ୍ତା ପଶିଲା ରନ୍ଧାବଢ଼ା ହେବ କେମିତି ? ଏ ଅପନ୍ତରାରେ ସମସ୍ତେ ଖାଇବେ କ'ଣ ? ଅଧିକାଂଶ ପିଲା ବୁଲାବୁଲି କରିବାକୁ ଚାଲିଗଲେ । ମୃତ୍ୟୁଞ୍ଜୟ ସାର୍ ମୁଣ୍ଡରେ ହାତଦେଇ ବସିଥାନ୍ତି । ସେତିକିବେଳେ ମୁଁ ତାଙ୍କୁ ସାହସ ଦେଇ କହିଲି, 'ସାର୍ ! ଜଣେ ଦି'ଜଣ ମତେ ସହଯୋଗ କଲେ ମୁଁ ରନ୍ଧାବଢ଼ା କରିଦେବି । ଭଲ ନ ହେଇପାରେ; କିନ୍ତୁ ଚଳେଇ ନେବି ।' ସେ ଆଶ୍ଚର୍ଯ୍ୟ ହେଇଯାଇ ପଚାରିଲେ, ତମେ ରାନ୍ଧିପାରିବ ? ହଉ, ଚେଷ୍ଟା କର ।

ମାଛ ତରକାରୀ, ମିଶାମିଶି ସାଦା ସନ୍ତୁଳା, ଡାଲି ଆଉ ଭାତ– ଏସବୁ ସରୁସରୁ ସାଢ଼େ ତିନିଟା । ସେତେବେଳକୁ ସମସ୍ତଙ୍କର ପ୍ରବଳ ଭୋକ । ସମସ୍ତେ ଖଲିପତ୍ର ଧରି ବସି ପଡ଼ିଲେ । ପରମ ତୃପ୍ତିରେ ଭୋଜନ କରିସାରିଲା ପରେ, ସମସ୍ତଙ୍କ ମୁହଁରେ ପ୍ରଶ୍ନ– ଇଏ ହେଲା କେମିତି ? ଶେଷରେ ମୃତ୍ୟୁଞ୍ଜୟ ସାର୍ ରହସ୍ୟ ଖୋଲି ଦେଲେ । ସାଙ୍ଗମାନେ ମତେ କୁଣ୍ଢେଇ ଧରି ନାଚିଲେ । କହିଲେ, ଏଣିକି କଲେଜରେ ଯେତେ ଭୋଜି ହେବ, ଆମ 'ସୁପର କୁକ୍' ତାକୁ ସୁପରଭାଇଜ କରିବ ।

ବସ୍‌ରେ ଫେରିଲାବେଳେ ହିପ୍‌ହିପ୍ ହୁରେ ସହ ମୋର ଜିନ୍ଦାବାଦ ଚାଲିଲା ।

ବହୁଦିନ ଯାଏ, 'ସୁପର କୁକ୍' ଭୂତ ମୋ ପଛରେ ଗୋଡ଼େଇଲା । ମୁଁ ଅନେକ ବନ୍ଧୁଙ୍କୁ ବୁଝାଇଲି, 'ଆରେ ଭାଇ, ମୁଁ ମୋଟେ ରାନ୍ଧୁଣିଆ ନୁହଁ । ଗାଁ ଭୋଜିର ରନ୍ଧାବଢ଼ା ଦେଖି ଦେଖି ଏମିତି ଗୋଟାଏ ଦୁଃସାହସ କଲି । ହଉହଉ ଭଲ ହେଇଗଲା । ଭୋକ ବେଳ ଯୋଗୁଁ ସମସ୍ତଙ୍କୁ ଭଲ ଲାଗିଥିବ ।' ଏହା ସତ୍ତ୍ୱେ ଏ କମେଣ୍ଟ ମୋ ପଛେପଛେ ଚାଲିଥିଲା । ମାତ୍ର ଆଉ ଗୋଟାଏ ଘଟଣା ଏକଥା ସ୍ରୋତର ଦିଗ ବଦଳାଇ ଦେଲା ।

ସେ କାଳରେ କଲେଜ ପଢୁଆ ପିଲାଙ୍କର ଯା'ଆସ କରିବାର ଯାନ ଥିଲା ସାଇକେଲ । ସବୁ କଲେଜରେ ବଡ଼ବଡ଼ ସାଇକେଲ ଷ୍ଟାଣ୍ଡମାନ ଥିଲା । ସେଗୁଡ଼ିକୁ ଜଗିବା ପାଇଁ ଜଣେ ଜଣେ ପିଅନ ଥିଲେ । କଦବା କେମିତି ସାଇକେଲ ଚୋରି ହୋଇଯାଏ । ପ୍ରିନ୍ସପାଲଙ୍କ ଜରିଆରେ ପୋଲିସକୁ ଚୋରି କେଶ୍ ଦିଆଯାଏ । ବର୍ଷକ ଭିତରେ ଗୋଟେ ଦି'ଟା କେଶ୍ ଧରାପଡ଼େ । ଧରା ନ ପଡ଼ିବା ଘଟଣା ସବୁଠୁଁ ବେଶି । ମାତ୍ର ସାଇକେଲ ଚୋରି ଅପେକ୍ଷା ବେଶି ଚୋରି ହେଉଥିଲା ବେଲ୍‌କପ । ସବୁଦିନେ ସାତ ଆଠଟା ଘଟଣା । ସେଦିନ ମୋ ବେଲ୍‌କପ ଚୋରି ହୋଇଥିଲା । କ୍ଲାସ ସାରି ମୁଁ ତରତରରେ 'ପ୍ରଜାତନ୍ତ୍ର'କୁ ଯାଏ । ମୋ ଫେରିବା ରାସ୍ତା ଟିକେ ଜନାକୀର୍ଣ୍ଣ । ବିନା ବେଲ୍ ବଜାଇ ଯା'ଆସ କରିବା କଷ୍ଟସାଧ ଏବଂ ଟ୍ରାଫିକ୍ ନିୟମ ବିରୁଦ୍ଧ ଧରାଯାଉଥିଲା ।

ହଠାତ୍ ମୁଁ କ'ଣ କରିବି ସ୍ଥିର କରିପାରିଲି ନାହିଁ । ମୋ ସହପାଠୀ କାଳିନ୍ଦୀ ବେହେରା ଓ ଶରତ ଦେବ (ପରବର୍ତ୍ତୀ କାଳରେ ଏମାନେ ରାଜନେତା ଓ ମନ୍ତ୍ରୀ ହୋଇଥିଲେ) ଓ ଜ୍ଞାନ ପଟ୍ଟନାୟକ ଫେରୁଥିଲେ (ଇଏ ପରେ ପୋଲିସ ଅଫିସର

ହୋଇଥିଲା) । ବେଲ୍‌କପ ଚୋରି କଥା ଜାଣି ଶରତ ଓ ଜ୍ଞାନ ତାତି ଉଠିଲେ । କହିଲେ ରହ, ପ୍ରିନ୍ସପାଲଙ୍କୁ କମ୍ପ୍ଲେନ୍ କରି ଲାଭ ନାହିଁ । ତୁ ତୋ ସାର୍ଟ ଖୋଲ । ଶୀଘ୍ର ଶୀଘ୍ର ଖୋଲ । ଲାଜ କରନା ବେ ! ଦେ ତୋ ସାର୍ଟ ।

ସେ ଦୁହେଁ ମୋ ସାର୍ଟକୁ ମୁଣି କରି ଶହ ଶହ ବେଲକପ ଖୋଲି ସେଥିରେ ପୂରାଇଲେ ଏବଂ ଥରକୁଥର ନେଇ କଲେଜ ସାମ୍ନା ପୋଖରୀକୁ ଫିଙ୍ଗିଲେ । ସାରା କଲେଜର ପିଲାଙ୍କ ସାଇକେଲ ବେଲ୍‌କପ ଶୂନ୍ୟ ହେଇଗଲା । ତା'ପରେ କଟକ ସହରରେ ପ୍ରଚାରିତ ହୋଇଗଲା– ପୋଲିସ ନିଷ୍କ୍ରିୟତା ଯୋଗୁ ଚୋରି ବୃଦ୍ଧି । କଲେଜ ପିଲାଙ୍କ ସାଇକେଲ ଓ ବେଲ୍‌କପ ଚୋରି ହେଉଚି ବେଶି ।

କିଛିଦିନ ଭିତରେ ଦୁଇଜଣ କନେଷ୍ଟବଳ କଲେଜରେ ପାଠପଢ଼ା ସମୟରେ ଆସି ଡିଉଟି କଲେ । ତା'ପରେ ଅନେକଦିନ ଧରି ସବୁ ପ୍ରକାର ଚୋରି ବନ୍ଦ ହୋଇଯାଇଥିଲା । ସାଇକେଲ ଷ୍ଟାଣ୍ଡରେ ଜଗୁଆଳ ଥିବା ପିଅନକୁ ପ୍ରିନ୍ସପାଲ ଅର୍ଥଦଣ୍ଡ ଦେଇ ତାଗିଦ କଲେ । ଏ ଘଟଣାର ପ୍ରଚ୍ଛନ୍ନ ଖଳନାୟକ ଯେ ମୁଁ, କେଉଁଠି ଏ ବିଷୟରେ ପାଟି ଖୋଲି ନାହିଁ । ଜ୍ଞାନ ଓ ଶରତ ଏହା କରିବା ପାଇଁ ତାଗିଦ କରିଥିଲେ ।

ଏମିତି ଅନେକ କଥାର କେନ୍ଦ୍ର ଥିଲା ଏ କଲେଜ ।

ମୋ ପାଇଁ ମନ୍ଦିର ସମାନ ଖ୍ରୀଷ୍ଟ ମହାବିଦ୍ୟାଳୟ । ଆଜି ବି ସେଇ ବାଟ ଦେଇ ଗଲେ ଆଖି ଟାଣିହେଇ ଲାଖିଯାଏ । ସ୍ମୃତିମାନେ ସାଲୁବାଲୁ ହୋଇ ନାଚ କରନ୍ତି । କେଡ଼େ ଦର୍ପୀୟାନ ଢ଼ଙ୍ଗରେ ମୁଣ୍ଡଟେକି ରହିଛି ସେଇ ବୟସ୍କ ଅନୁଷ୍ଠାନଟି । ୟା' ଭିତରେ ବୋଧେ ସତୁରି ବର୍ଷ ଟପି ଗଲାଣି ତାକୁ । କେଡ଼େ ଚଞ୍ଚଳ ସମୟଗୁଡ଼ା ଚାଲିଯାଉଛି ସତେ !

ସେତେବେଳେ ଖୁବ୍ କମ୍ କଲେଜରେ ଅନର୍ସ ପଢ଼ା ବ୍ୟବସ୍ଥା ଥିଲା । ପିଲାଙ୍କ ଭିତରେ ଗୋଟାଏ ଚର୍ଚ୍ଚା ହେଉଥିଲା– ଓଡ଼ିଆ ଅନର୍ସ ପଢ଼ିବୁ ତ ଖ୍ରୀଷ୍ଟ କଲେଜକୁ ଯା; ସେଠି ସାର୍‌ମାନେ ପିଲାଙ୍କର ଯତ୍ନ ନିଅନ୍ତି । ଶ୍ରୀଧର ସାର୍, ପଠାଣି ସାର୍, ଚନ୍ଦ୍ର ସାର୍, ଦେବେନ୍ଦ୍ର ସାର୍, ମୃତ୍ୟୁଞ୍ଜୟ ସାର୍... ସମସ୍ତେ ଆଗ୍ରହ ଦେଖାନ୍ତି । ପଠାଣି ସାର୍ ଆଉ ଚନ୍ଦ୍ର ସାର୍‌ଙ୍କ କ୍ଲାସ ତ ମିସ୍ କରିବାକୁ ମନ ହବନି–

ଏ କଲେଜରେ ପାଠ ପଢ଼ିବା ଗୋଟେ ପାରିବାରିକ ଜୀବନ ବିତେଇବା ସଙ୍ଗେ ସମାନ ଥିଲା । କୋଉ ପିଲା କୋଉ ମେସ୍‌ରେ ରହିଥିବା ବେଳେ ଅସୁସ୍ଥ

ହେବା ଖବର ମିଳିଲା ତ, କୌଣସି ନା କୌଣସି ସାର୍ ଯାଇ ସେଠି ପହଞ୍ଚି ଯାଉଥିଲେ । କିଛି ଗୋଟେ ଅସୁବିଧା ହେଲା ତ, ଆପଣାର ଲୋକ ଭଳି କୌଣସି ସାର୍‌ଙ୍କୁ ସମସ୍ୟାଟି କହିଲେ, ସେ ସମାଧାନର ବାଟ ବତେଇ ଦେଉଥିଲେ । ନ କହିଲେ ବି ବେଳେବେଳେ ସମସ୍ୟା ସମାଧାନ କରି ଦେଉଥିଲେ ସେମାନେ ।

ସେକାଳ ପଖାଳ ଆଜି ଆଉ ନାହିଁ ।

ସମୟ ବଦଳି ଗଲାଣି । ମଣିଷ ବଦଳି ଗଲେଣି । ସେ ଧାରା ଆଉ ନାହିଁ । ବିଶ୍ୱାସ କରି ହେଉନି ସେକାଳର ତାଜା ଅନୁଭୂତି ସବୁକୁ । ସବୁ ପାହାନ୍ତା ପହରର ସ୍ୱପ୍ନଭଳି ମନେ ହେଉଛି ।

ଆଉ ଦିନକର କଥା ।

ନୂଆ ପ୍ରିନ୍‌ସିପାଲ ଜଣେ ଆସି ଜଏନ୍ କରିଥାନ୍ତି ଖ୍ରୀଷ୍ଟ କଲେଜରେ । ସେ ନିୟମ କରିଦେଲେ ପ୍ରତି ମାସରେ କଲେଜ ଫି ଆଦାୟ ହେବ ତିରିଶ ତାରିଖ ଭିତରେ । ଯିଏ ନ ଦେବ ତା'ର ନାଁ କଟିଯିବ । ଆମେ ସବୁ ଏଥିରେ ଅଭ୍ୟସ୍ତ ନ ଥିଲୁ । ଦି'ମାସ ତିନିମାସର ଦରମା ଏକ ସାଙ୍ଗରେ ଦେଉଥିଲୁ । ମୁଁ 'ପ୍ରଜାତନ୍ତ୍ର'ରେ ଚାକିରି କରି ପାଠ ପଢୁଥିଲି । ସେତେବେଳେ ସେଠୁ ନିୟମିତ ଦରମା ମିଳୁ ନ ଥିଲା । 'ପ୍ରଜାତନ୍ତ୍ର'ର ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନ ଥିଲା । ବିଗତ ମାସର ଦରମା ଚଳିତ ମାସ ଅଠର ତାରିଖ ବେଳକୁ ମିଳୁଥିଲା ।

ମୋ ନାଁ କଟିଗଲା ପହିଲା ଦିନ ।

ମୁଁ ଜାଣି ନ ଥିଲି ।

ସେଦିନର ପ୍ରଥମ ଇଂରାଜୀ କ୍ଲାସ ଥିଲା– ମନୋଜ ଦାସଙ୍କର । ତାଙ୍କ କ୍ଲାସ କେହି ମିସ୍ କରନ୍ତି ନାହିଁ । ଭାରି ସୁନ୍ଦର ଲାଗେ ତାଙ୍କ ପାଠପଢ଼ାର ଶୈଳୀ । ଭରପୂର କ୍ଲାସ । ଆଗ ରୋଲ କଲ୍ ହେଲା । ମୋର ଯଦି ଠିକ୍ ମନେଥାଏ, ତେବେ ମୋ ରୋଲ ନମ୍ବର ଥିଲା ତେଇଶି । ମୋ ଆଗରୁ ଦୁଇଟି ପିଲାଙ୍କର ନାଁ କଟିଥାଏ । ଜଣେ ଆସିଥିଲେ, ଆରଜଣକ ଆସି ନ ଥିଲେ । ତୃତୀୟ ପିଲାଟି ମୁଁ ।

ହେଲା ଗାଳି ମୋ ଉପରେ ।

'କାହିଁକି' ଦରମା ଦେଇନ ? ବାପା ମାଆଙ୍କଠାରୁ ପଇସା ଆଣି ସିନେମା ଦେଖୁଛ ? ସାଙ୍ଗମାନଙ୍କ ସହିତ ମଉଜ ମଜଲିସରେ ଉଡ଼ଉଚ ? ରତ୍ନାକର, ତୁମ ବାପା କ'ଣ କରନ୍ତି ?

ମୁଁ କହିଲି... ଚାଷୀ ?

ମନୋଜ ସାର୍ କହିଲେ– ଜାଣିଚ, କେତେ କଷ୍ଟରେ ସେ ତୁମକୁ ସେତକ ପଇସା ଆଣି ଦଉଛନ୍ତି ? ଗୋଟେ ନିଷ୍ଠାପର ଚାଷୀର ଝାଳବୁହା ପଇସାକୁ ତମେ ଏମିତି ବଦଖର୍ଚ୍ଚରେ ଉଡ଼େଇ ଦଉଚ ? କେତେ ଆଶା ରଖିଛନ୍ତି ସେ ତମ ଉପରେ । ସତ କହିଲ, କ'ଣ କରୁଛ ସେ ପଇସାକୁ ଆଣି ? ଚେହେରାକୁ ତ ବେଶ୍ ସଜେଇ କରି ଆସୁଚ, ଆଉ...

– ନାଇଁ ସାର୍, ମୁଁ ସାର୍.... ।

– କ'ଣ କହିବ, ସ୍ପଷ୍ଟ କୁହ ।

– ମୁଁ ଚାକିରି କରିଚି ଗୋଟେ ସଂସ୍ଥାରେ । ସେଠୁ ଦରମା ପାଇବା ଡ଼େରି ହୁଏ । ତେଣୁ କଲେଜ ଫିସ୍ ଦେଇପାରି ନାହିଁ...

– ତମେ ଚାକିରି କରିଚ ? ... ସେକଥା କହୁନ । କୋଉଠି ?

– 'ପ୍ରଜାତନ୍ତ୍ର'ରେ ?

– ଆରେ, ମୁଁ ଜାଣେ ସେ ସଂସ୍ଥା ବିଷୟରେ । ଆଇ ଆମ୍ ସରି... । ମୁଁ ଭୁଲରେ ତୁମକୁ ଏତେ କଥା କହିଗଲି । ... କିଛି ଭାବିବନି । ହଉ ବସ, ବସ...

କ୍ଲାସ୍ ସଇଲା ।

ମନୋଜ ସାର୍ ଚାଲିଗଲେ ।

ମତେ କିନ୍ତୁ ଭାରି ବାଧିଲା । ମୁଁ ଆଉ ଅନ୍ୟ କ୍ଲାସ୍ ନ କରି ବସାଘରକୁ ଫେରିଲି । ବୋଧେ ଦୁଇମାସର ଦରମା ଟଙ୍କା ଡିପୋଜିଟ କରିବାର ଥାଏ । ସେତିକି ଯୋଗାଡ଼ କରିବା ସେତେବେଳେ ମୋ ପାଇଁ କାଠିକର ପାଠ । କଟକ ସହରରେ ଏମିତି କେହି ଆପଣାର ଲୋକ ନ ଥିଲେ, ଯିଏ ମତେ ସାହାଯ୍ୟ କରିପାରିବେ । ବଡ଼ କଷ୍ଟରେ 'ପ୍ରଜାତନ୍ତ୍ର'ର ବନ୍ଧୁମାନଙ୍କଠାରୁ ସେତକ ଟଙ୍କା ଧାର କରି ତା' ପରଦିନ କଲେଜ ଫିସ୍ ଦେବାକୁ ଯାଇ କାଉଣ୍ଟରରେ ଠିଆ ହେଲି । କ୍ଲର୍କ ପଚାରିଲେ– 'ରୋଲ ନମ୍ବର ? ମୁଁ କହିଲି ତେଇଶି ।'

କ୍ଲର୍କ କହିଲେ, ରୋଲ ନମ୍ବର ତେଇଶିର ଫିସ୍ ତ ଦିଆ ସରିଛି ! ଆରେ, ତମେ ଦେଇନ, ଯଦି ଆଉ କିଏ ଦେଲା ? ତମେ ତମ ସାଙ୍ଗକୁ ପଚାର । ଭୁଲ୍‌ରେ ଆଉ କାହାର ଫିସ୍ ତମ ନାଁରେ ପଡ଼ିଗଲା କି ଆଉ !

ପୁରୁଣା ପିଅନ ବାଞ୍ଛା କହିଲା– କାଲି ପରା ମନୋଜ ସାର୍ ଆସି ତାଙ୍କ ଦରମା ଦେଇଯାଇଛନ୍ତି ।

କଥାଟା ମତେ ଆହୁରି ଆଘାତ ଦେଲା ।

କ'ଣ କରିବି ?

ମନୋଜ ସାର୍‌ଙ୍କୁ ଯାଇ କେମିତି ଟଙ୍କା ଫେରେଇବି । ସେତେବେଳେ ଟିଚର୍ କମନରୁମ୍‌କୁ ପିଲାଟିଏ ଯିବା ସମ୍ଭବ ନ ଥିଲା । ପରମିସନ୍ ମିଳିଲେ, ଅନ୍ୟ ସାର୍‌ମାନେ ଖରାପ ନ ଭାବିଲେ, ପିଲାଟିଏ କମନ୍‌ରୁମକୁ ଯାଇ ସାର୍‌ଙ୍କୁ ଦେଖା କରିପାରିବ । ନଚେତ୍ କମନରୁମ୍ ବାହାରେ ଅପେକ୍ଷା କରିବାକୁ ପଡ଼ିବ ।

ପ୍ରାୟ ଦୁଇଟା ପିରିୟଡ୍ ମୁଁ ସେଇଠି ମନୋଜ ସାର୍‌ଙ୍କୁ ଅପେକ୍ଷା କଲି । ଲଗାତାର ଦୁଇଟା କ୍ଲାସ ଥିଲା ତାଙ୍କର । କ୍ଲାସକୁ ଯିବାବେଳେ ସେ ଭାରି ଫୂର୍ତ୍ତିରେ ଯାଆନ୍ତି । ଫେରିଲାବେଳେ ତାଙ୍କ ଆଖି ମୋ ଉପରେ ପଡ଼ିଗଲା ।

–କ'ଣ ରତ୍ନାକର, କେମିତି ଅଛ ? ଏବେ ରେଗୁଲାର କ୍ଲାସ କରୁଛ ତ ?

ମୁଁ ବଡ଼ ନିଉନ ହେଇ କହିଲି, ହଁ ସାର୍...;ଏ ଟଙ୍କା ।

– କି ଟଙ୍କା ? ଓହୋ, ନା... ନା, ତମର ସେ ଟଙ୍କା ଫେରାଇବା ଆବଶ୍ୟକ ନାହିଁ । ବଡ଼ଭାଇ ହିସାବରେ ମୁଁ ମୋର କର୍ତ୍ତବ୍ୟ କରିଛି । ତା'ଛଡ଼ା ତମ ପ୍ରତି ମୁଁ ଯେଉଁ ଦୁର୍ବ୍ୟବହାର କରିଥିଲି, ତା'ର ଗୋଟେ ପ୍ରାୟଶ୍ଚିତ୍ତ ଦରକାର ଥିଲା ।

ମୁଁ କିନ୍ତୁ ନଛୋଡ଼ବନ୍ଧା ।

ଗୁରୁଙ୍କ ଧନ ନେବା ଛାତ୍ରର ଚରମ ଅପରାଧ । ଆପଣଙ୍କୁ ଏ ଟଙ୍କା ନେବାକୁ ପଡ଼ିବ ସାର୍ । ନଚେତ୍ ମୁଁ ସାରା ଜୀବନ ଦୁଃଖ ପାଇବି । ମୋ ସଂସ୍କାର ମତେ କ୍ଷମା ଦେବନି । ସାର୍, ଦୟା କରନ୍ତୁ ।

ହଁ– ନାଇଁ ଚାଲିଲା ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ଧରି । ଶେଷରେ ସାର୍ ରାଜି ହେଲେ ଏବଂ କହିଲେ– 'ଆଚ୍ଛା, ତମେ ତ ଗୋଟେ ପ୍ରେସ୍‌ରେ କାମ କରୁଚ । ପ୍ରକାଶକମାନଙ୍କ ସହିତ ଚିହ୍ନା ପରିଚୟ ଥିବ । ମୁଁ କେତୋଟି ବହିର ନାଁ ଲେଖି ଦଉଚି । ତମେ କାଲି ମୋ ପାଇଁ ସେ ବହିତକ ସେଇ ଟଙ୍କାରେ କିଣି ଆଣିବ । ଯଦି ଅଧିକ ପଡ଼େ ମୁଁ ଦେବି'–

ମତେ ଭାରି ଆନନ୍ଦ ଲାଗିଲା, ମୁଁ ସାର୍‌ଙ୍କର କିଛି ଗୋଟେ କାମ କରିବାର ସୁଯୋଗ ପାଇଥିବାରୁ । ବହିଗୁଡ଼ିକ କିଣିନେଇ ପରଦିନ ସାର୍‌ଙ୍କୁ ଦେଲି । ସାର୍ ଖୁସି ହେଲେ ଏବଂ ସେ ବହିଗୁଡ଼ିକରେ 'ପ୍ରେଜେଣ୍ଟେଡ୍ ବାଇ ମନୋଜ ଦାସ' ଲେଖି ମୋରି ହାତକୁ ବଢ଼ାଇ ଦେଲେ ।

ଏଥର କିନ୍ତୁ ମୁଁ ନିରୁପାୟ ।

ଆଖି ଛଳଛଳ ହୋଇଗଲା ମୋର । ସେ ମତେ କୁଣ୍ଢେଇ ପକେଇଲେ । କହିଲେ, ମନରେ କିଛି ଭାବନି । ଏତିକି ମନେରଖ, ତମ ପାଇଁ ମୋର ଆଶୀର୍ବାଦ ସବୁକାଳ ପାଇଁ ରହିଛି...

ଖ୍ରୀଷ୍ଟ କଲେଜର ଏଭଳି ଅନୁଭୂତି ଜୀବନରେ କ'ଣ ଭୁଲି ହେବ ? ଅନେକ... ଅନେକ ପ୍ରଣାମ ସ୍ମୃତିର ସେ ଗନ୍ତାଘରକୁ ।

।। ଏଗାର ।।

# ସେଇ ସେ ଦୁର୍ଦ୍ଦିନ ଦିନ

ମୁଁ ପୁଣି ଥରେ 'ପ୍ରଜାତନ୍ତ୍ର' ପରିସରକୁ ଫେରି ଆସୁଚି । ମୋ ସ୍ମୃତି ଓ ଅନୁଭୂତିର ଗନ୍ତାଘର ଏଇ ଜାଗା । ସମସ୍ତ କର୍ମଚାରୀଙ୍କ ଅଖଣ୍ଡ ସ୍ୱାଧୀନତା ଏଠି । ସ୍ୱାଧୀନତା ସଂଗ୍ରାମୀ ଜନନାୟକ ହରେକୃଷ୍ଣ ମହତାବଙ୍କ ଆଦର୍ଶର ଆଶ୍ରମଟିଏ । କାହାରି ପ୍ରଭୁପଣ ନାହିଁ, ହାକିମାତି ନାହିଁ, କେବଳ ସ୍ୱଚ୍ଛଳ ଦାୟିତ୍ୱବୋଧ । ସେଇ ସୂତ୍ରରେ ସମସ୍ତେ ବନ୍ଧା । ତଥାପି ଦାୟିତ୍ୱ ଠିକ୍ ଭାବେ ସଂପାଦିତ ନ ହେଲେ, କିଭଳି ଦୁଃଖଦ ଦିନ ଆସେ, ସେ କଥା ମୋ ସ୍ମୃତିରେ ଏବେବି ଜୀବନ୍ତ ।

ସେଦିନଟି ମଧ୍ୟ ପୂର୍ବଦିନ ଭଳି ସ୍ୱାଭାବିକ ଥିଲା ।

ମାତ୍ର ଦିନ ପ୍ରାୟ ସାଢ଼େ ଗୋଟାଏ ହେବ ।

ବିହାରୀବାଗରେ ଆକସ୍ମିକ ଭାବେ ପହଞ୍ଚିଲା ମହତାବଜୀଙ୍କ ଲାଲ୍ ରଙ୍ଗର ଗାଡ଼ି । ସଦାବେଳେ ସେ ଚାରିଟାରୁ ପାଞ୍ଚଟା ଭିତରେ ଏଠିକି ଆସନ୍ତି । ଏବେ ତାଙ୍କର ଯା'ଆସ ପ୍ରାୟ କମ୍ ହୋଇଯାଇଥିଲା । କାରଣ ତାଙ୍କରି ପ୍ରେରଣାରେ ଓଡ଼ିଶାରେ ପ୍ରଥମ ଅଣକଂଗ୍ରେସ ମିଳିତ ସରକାର ଗଠନ ହୋଇଥିଲା । ସେ ସରକାରରେ ନ ଥିଲେ ମଧ୍ୟ ତାଙ୍କ ଦଳ ସରକାରରେ ଦ୍ୱିତୀୟ ଅଂଶୀଦାର ଦଳ ଥିଲା । ସ୍ୱତନ୍ତ୍ର ଓ ଜନକଂଗ୍ରେସ ମିଳିତ ସରକାର । ମହତାବଜୀ ଜନକଂଗ୍ରେସ ଦଳର ମଙ୍ଗୁଆଳ । ତେଣୁ ସେ ପ୍ରଜାତନ୍ତ୍ରକୁ କମ୍ ସମୟ ଆସୁଥିଲେ । ରାଜନୀତିକ ବ୍ୟାପାରରେ ବେଶି ବ୍ୟସ୍ତ ରହୁଥିଲେ ।

ସେଦିନ ସେ ଅସମୟରେ ଆସିଥିଲେ ଏବଂ ଅସ୍ୱାଭାବିକ ଭାବେ ଉତ୍ତେଜିତ ଥିଲେ । ସେ ଗାଡ଼ିରୁ ଓହ୍ଲାଇ ଚିତ୍କାର କରି କରି ପ୍ରେସ୍‌ର ମୁଖ୍ୟ ଗେଟ୍ ଆଡ଼କୁ ଏକପ୍ରକାର ଧପାଳି ଆସିଥିଲେ । ସେ ଉତ୍ତେଜିତ ହୋଇ ଚିତ୍କାର କରିବା ଏଠି

କେହି କେବେ ପୂର୍ବରୁ ଦେଖି ନ ଥିଲେ । – 'ସମସ୍ତେ ପଦାକୁ ବାହାର... । ଶୀଘ୍ର ବାହାର ହୋ... !'

ସମସ୍ତେ ଆଶ୍ଚର୍ଯ୍ୟଚକିତ ହୋଇ ବାହାରକୁ ବାହାରି ଆସିଲେ । ମହତାବଜୀ ନିଜ ହାତରେ ଏକ ବିରାଟ ତାଲା ପ୍ରେସ୍ ଗେଟ୍‌ରେ ପକାଇ ଦେଲେ । ଏତେ ବଡ଼ ତାଲା ମୁଁ ଜୀବନରେ ପ୍ରଥମ କରି ଦେଖିଲି । ତାଲା ପକାଇ ସାରି ସେ ଯାଇ ତାଙ୍କ ଉପର ଘରେ ଚୁପ୍‌ଚାପ୍ ହୋଇ ବସିଲେ । ଛାପାଖାନା, ସମ୍ବାଦ ବିଭାଗ, ଇଷ୍ଟର୍ଣ୍ଣ ଟାଇମ୍‌ସ ଆଦି ସବୁ ବନ୍ଦ । କେହି କିଛି ତାଙ୍କୁ ପଚାରିବାକୁ ସାହସ କରୁ ନ ଥିଲେ । ଜାନକୀବଲ୍ଲଭ ପଟ୍ଟନାୟକ ଓ ବିଶ୍ୱମ୍ଭର ପରିଡ଼ାଙ୍କୁ ଆମେ ତାଙ୍କର ମୁଖପାତ୍ର ବୋଲି ଭାବୁଥିଲୁ । ସେମାନେ ବି ସେତେବେଳେ ନୀରବ । ତେଣୁ ତାଙ୍କ ପାଖକୁ କେହି ଜଣେ ଯାଇ କାରଣ କ'ଣ ଜାଣିବା ଅସମ୍ଭବ ଥିଲା ।

ଦିନ ଚାରିଟା ଟପିଲା ।

ଏଭରଗ୍ରିନ୍ ହୋଟେଲ୍‌ରୁ ତାଙ୍କ କଫି ଆସିଲା ।

ଆଣିଲା ତାଙ୍କର ବିଶ୍ୱସ୍ତ ଫକୀରା ବୁଢ଼ା ।

ସେ କଫି ଆଣେ । ବୋଲହାକ ଶୁଣେ, ଏଠିକା ଘରର ।

ତାରିଠାରୁ ମହତାବଜୀଙ୍କ ମୁଡ୍ ବିଷୟରେ ସମସ୍ତେ ଜାଣନ୍ତି ।

କଫି ପିଇ ସାରିଲେ ସେ ଥଣ୍ଡା-ମନ ହୁଅନ୍ତି ।

କଫି ପିଇ ସାରିବା ବେଳ ଜାଣି ମୁହଁ ଖୋଲିଲେ ଶ୍ରମିକ ନେତାମାନେ ।

'ଆଚ୍ଛା କଥା ! ଆମେ କ'ଣ ଠିକା ମଜୁରିଆ ! କାରଣ କିଛି ନ ଜଣେଇ ଆମକୁ କହୁଛନ୍ତି ବାହାରି ଆସ । ... ଆମେ କୁଆଡ଼େ ଯିବୁ ?'

– 'ଆମେ ଏଇଠି ବସିଲୁ । କ'ଣ ପାଇଁ ଏକଥା କୁହାହେଲା, ନ ଜାଣିଲେ ଆମେ ଘରକୁ ଯିବୁ ନାହିଁ । ଆମେ ଅନଶନ ଧର୍ମଘଟ କରିବୁ ।'

ଏକଥା ମହତାବଜୀଙ୍କ କାନରେ ଯାଇ ବାଜିଲା । କିଛି ସମୟ ପରେ ଫକୀରା ଆସି କହିଲା, ବାବୁ କଇଲେ– ''ସମେତେ ଟିକେ ଧୀରସ୍ଥିର ହେଇ ବସନ୍ତୁ । ଜାନକୀବାବୁ ଆଉ ବିଶ୍ୱମ୍ଭର ବାବୁ ଓ ଆଉ ଆଉ ବାବୁମାନେ ଇଠିକି ଆସନ୍ତୁ । ବାବୁ ସମିତିଙ୍କି କ'ଣ କଇବେ । ଏଇକ୍ଷିଣା ସେ ତଳକୁ ଆସିବେ । ଆପଣେ ଥଅ ହଅନ୍ତୁ ।''

ଏଥର ସମସ୍ତେ ଥଅ ପଡ଼ିଲେ ।

ଜଣ ଜଣ କରି ସମସ୍ତେ ଆସିଲେ । ଗୁଡ଼ାଏ ଚେୟାର ପଡ଼ିଲା । ମଝିରେ ମହତାବଜୀଙ୍କ ଚେୟାର ଖାଲି ଥାଏ । କିଛି ସମୟ ପରେ ସେ ଆସିଲେ । ମୁହଁ ଗମ୍ଭୀର, ସମସ୍ତେ ଚୁପ୍‌ଚାପ୍ । ପ୍ରଥମେ ନୀରବତା ଭାଙ୍ଗିଲେ ମହତାବ ବାବୁ । – 'ଆଜି ଯାହା ଘଟିଲା, ସେଇଟା ମତେ ଖୁବ୍ ବାଧିବାର ଫଳ । ତୁମମାନଙ୍କୁ ଆଘାତ ଦେବା ମୋର ଉଦ୍ଦେଶ୍ୟ ନୁହଁ । ପ୍ରଜାତନ୍ତ୍ର ଅନୁଷ୍ଠାନ ତୁମମାନଙ୍କର । ମୁଁ ନିମିତ୍ତ ମାତ୍ର । ମୁଁ ଜୀବନରେ ଯେତିକି ପ୍ରଶଂସା ପାଇଛି ଏଇ ପ୍ରଜାତନ୍ତ୍ର ପାଇଁ; ଆଉ ଯେତିକି ନିନ୍ଦା ପାଇଛି ତାହା ବି ଏଇ ପ୍ରଜାତନ୍ତ୍ର ପାଇଁ । ଏ ଅନୁଷ୍ଠାନ ମୋର ପୁଅ ଝିଅ, ମୋ ପରିବାର– ସବୁ କିଛି । ମୋ ଜୀବନରେ ଯାହା ଯୋଉଠୁ ପାଇଚି, ଏଇଠିକି ଦେଇ ଦେଇଚି । ତୁମେମାନେ ସମସ୍ତେ ମୋ ପରିବାରର । ମୁଁ ବରାବର ଜାନକୀ ଆଉ ବିଶ୍ୱମ୍ଭରଙ୍କୁ କହି ଆସିଚି, ଏ ଅନୁଷ୍ଠାନଟି ଗୋଟାଏ କୁକୁଡ଼ା ଭଳି । କୁକୁଡ଼ାର ଯତ୍ନ ନିଅ । ତା'ର ଅଣ୍ଡା ଖାଅ; ହେଲେ କୁକୁଡ଼ାକୁ ଖାଅ ନାହିଁ । କିନ୍ତୁ ତୁମେମାନେ କଲ କ'ଣ ?'

ତା'ପରେ ଏକ ଦୀର୍ଘ ନୀରବତା ।

ସମସ୍ତେ ନୀରବ ଥିଲେ ।

ଅନେକଙ୍କ ମନରେ ପ୍ରଶ୍ନ– ତା'ହେଲେ କିଛି ଗୋଟାଏ ଘଟିଚି ।

କଥାର ଖିଅ ପୁଣି ଖୋଲିଲେ ମହତାବ ବାବୁ । କିଛିଦିନ ତଳର କଥା । ଇଷ୍ଟର୍ଣ୍ଣ ଟାଇମ୍‌ସରେ ଗୋଟାଏ ଫୁଲ୍ ପେଜ୍ ବିଜ୍ଞାପନ ବାହାରିଥିଲା କୌଣସି ଏକ ସିମେଣ୍ଟ କଂପାନୀର । ସେ କଂପାନୀ ତଟକା ସେଭଳି ବିଜ୍ଞାପନ ଦେଇ ନ ଥିଲା ଇଷ୍ଟର୍ଣ୍ଣ ଟାଇମ୍‌ସକୁ । ତାଙ୍କର ପୁରୁଣା ବିଜ୍ଞାପନ ପୃଷ୍ଠାଟିଏ ଥିଲା । ଲଗାଣ ଝଡ଼ିବର୍ଷା ଯୋଗୁଁ ଇଷ୍ଟର୍ଣ୍ଣ ଟାଇମ୍‌ସର ଷ୍ଟାଫ୍ ସେଦିନ ରାତିରେ କମ୍ ଆସିଥିଲେ । ତେଣୁ ଚାରିପୃଷ୍ଠା ପାଠ କମ୍ପୋଜ୍ ହୋଇ ପ୍ରସ୍ତୁତ ହେଇପାରିଲା ନାହିଁ । ଗୋଟାଏ ପୂର୍ଣ୍ଣ ପୃଷ୍ଠା ଅଭାବ ହେଲା । ତେଣୁ ପେଜ୍ ମେକ୍‌ଅପ୍‌ବାଲା ଏଇ ବିଜ୍ଞାପନ ପୃଷ୍ଠାକୁ ବ୍ୟବହାର କରିନେଲେ । ଅତୀତରେ ଏମିତି କେତେଥର କେତେ ବିଜ୍ଞାପନକୁ ବିନାନୁମତିରେ ଏମାନେ ଛାପିଛନ୍ତି । ମହତାବଜୀଙ୍କ ଗୁଡ୍ ଉଇଲ୍ ଓ ସୁନାମ ଯୋଗୁଁ ସେଇ ସେଇ ସଂସ୍ଥାମାନେ ବିଲ୍ ପାଇ ତାହାର ଦେୟ ପ୍ରଦାନ କରିଛନ୍ତି ।

ଏ ସିମେଣ୍ଟ କଂପାନୀ ସେଇୟା ବି କରିଥାନ୍ତେ ।

ମହତାବଜୀ ଏକଥା ଜାଣିବାର ସମ୍ଭାବନା ବି ନ ଥିଲା ।

କିନ୍ତୁ ବିଧି ବାମ ହେଲା । ବିଜ୍ଞାପନରେ ପ୍ରକାଶିତ ସିମେଣ୍ଟ ଦର ଛ'ଟଙ୍କା କେତେ ପଇସା ଥିଲା । ମାତ୍ର ସେତେବେଳକୁ ସିମେଣ୍ଟର ବଜାର ଦର ଅଠର ଟଙ୍କା କେତେ ପଇସା ହୋଇସାରିଥିଲା । କଂପାନୀ କର୍ତ୍ତୃପକ୍ଷ ଏ ଘଟଣାରେ ଚିନ୍ତିତ ଥିଲାବେଳେ ଇଷ୍ଟର୍ଣ୍ଣ ଟାଇମ୍ସର ବିଲ୍‌ଟି ପେମେଣ୍ଟ ପାଇଁ ପହଞ୍ଚିଲା । ତେଣୁ ସେମାନେ ଏକ ଭଦ୍ର ଚିଠି ସହ ଏକ ଦୀର୍ଘ ହିସାବ ଫର୍ଦ୍ଦ ମହତାବଜୀଙ୍କୁ ଲେଖି ପଠାଇଲେ । 'ଆମେ ଆପଣଙ୍କ ବିଲ୍ ପେମେଣ୍ଟ ତ କରିଦେବୁ, ମାତ୍ର ଆପଣଙ୍କ ପତ୍ରିକାରେ ପ୍ରକାଶିତ ଆମର ପୁରୁଣା ବିଜ୍ଞାପନଟି ଯୋଗୁଁ ଆମ କଂପାନୀ ସାଢ଼େ ତିନି କୋଟି ଟଙ୍କା କ୍ଷତି ସହିବାକୁ ଯାଉଚି । ସେ କ୍ଷତି ଭରଣା କରିବ କିଏ ?'

ବାପ୍‌ରେ ବାପ୍ !

ଆମେ ସମସ୍ତେ ଆଶ୍ଚର୍ଯ୍ୟ ହେଲୁ ।

ତା'ପରେ ମହତାବଜୀ ତାଙ୍କ ନିଷ୍ପତ୍ତି ଶୁଣାଇଲେ ।

ଆଜିଠାରୁ ଇଷ୍ଟର୍ଣ୍ଣ ଟାଇମ୍ସ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ହେଲା । 'ପ୍ରଜାତନ୍ତ୍ର'ର ନବକଳେବର କରିବାର ଯୋଜନା କରୁଚି । ତାହା ବି ବନ୍ଦ ରହିବ କିଛିଦିନ ପାଇଁ । ଖବରକାଗଜ ମାଧ୍ୟମରେ ଜଣାଇ ଦିଆଯିବ– ପ୍ରଜାତନ୍ତ୍ର କେବେଠୁଁ ନୂଆ ରୂପରେ ବାହାରିବ । ତେବେ ବେଶି ଦିନ ଡେରି ନାହିଁ । ଏକଥା ଭାବୁଥା, ପ୍ରଜାତନ୍ତ୍ରର ଦୁଃଖ ତୁମମାନଙ୍କର ଦୁଃଖ । ତୁମମାନଙ୍କର ମାସିକ ପ୍ରାପ୍ୟ ମିଳିବ; ହୁଏତ ଟିକେ ଡେରିରେ । ସେଥିପାଇଁ ଚିନ୍ତା କରିବନି । ଘରକୁ ଯାଅ; ପ୍ରଜାତନ୍ତ୍ର କାମ ଆରମ୍ଭ ହେଲେ ତୁମମାନଙ୍କୁ ଜଣାଇ ଦିଆଯିବ ।

ଏ ସମଗ୍ର ଘଟଣାଟି 'ପ୍ରଜାତନ୍ତ୍ର'କୁ ନୂଆ ମୋଡ଼ ଦେଲା ।

ଏକୋଇଶି ଦିନ କାଳ 'ପ୍ରଜାତନ୍ତ୍ର' ପ୍ରକାଶନ ବନ୍ଦ ରହିଲା । ତା'ରି ଭିତରେ ଜ୍ୟୋତି ବସୁଙ୍କ ସ୍ୱାଧୀନ ପ୍ରେସ୍‌ରୁ ଏକ ହାଇ ସ୍ପିଡ୍ ରୋଟାରୀ ମେସିନ୍ ଅଣାଯାଇ ଦୈନିକ 'ପ୍ରଜାତନ୍ତ୍ର' ମୁଦ୍ରଣ ପାଇଁ ପକାଗଲା । ଏହା ଥିଲା ସେତେବେଳର ଓଡ଼ିଶାର ସବୁଠାରୁ ଆଧୁନିକ ମୁଦ୍ରଣଯନ୍ତ୍ର । ଅକ୍ଷର ମାତ୍ରାଦି ମୁଦ୍ରଣ ବେଳେ ଆଉ ଭାଙ୍ଗିଲା ନାହିଁ । ମୁଦ୍ରଣ ପରିପାଟୀ ସୁନ୍ଦର ଓ ଆକର୍ଷଣୀୟ ହେଲା । ଅଳ୍ପ ସମୟ ଭିତରେ ବହୁ ସଂଖ୍ୟାରେ ମୁଦ୍ରିତ ଖବରକାଗଜ ବାହାରିଲା । ଫଳରେ ପ୍ରଜାତନ୍ତ୍ରର ପ୍ରସାର ସଂଖ୍ୟା ବଢ଼ିଗଲା । ମାତ୍ର ସବୁଠୁଁ ଦୁଃଖର କଥା ହେଲା, ଏହାପରେ ଜାନକୀବାବୁ ଆଉ ଏହାର ସଂପାଦକ ଭାବେ ଯୋଗଦେଲେ ନାହିଁ । ପୂର୍ବ ବର୍ଣ୍ଣିତ ଘଟଣାଟି

ପାଇଁ ସେ ନିଜ ଉପରେ ଦୋଷ ଲଦିଲେ । କେତେ ମାସ ବ୍ୟବଧାନ ପରେ ସେ ମାସିକ ପତ୍ରିକା 'ପୌରୁଷ' ପ୍ରକାଶ କଲେ । ଇଷ୍ଟର୍ଣ୍ଣ ଟାଇମ୍‌ସ ଆଉ ବାହାରିଲା ନାହିଁ । କିଛିଦିନ ପରେ ଶ୍ରୀହର୍ଷ ମିଶ୍ର ଆସି 'ପ୍ରଜାତନ୍ତ୍ର'ର ସଂପାଦକ ଭାବେ ଯୋଗଦେଲେ ।

ଏତିକିରେ 'ପ୍ରଜାତନ୍ତ୍ର'ର ଘଟ ପରିବର୍ତ୍ତନ ସରିଯାଇ ନ ଥିଲା । ଜାନକୀବାବୁ 'ପ୍ରଜ୍ଞାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ସଂପାଦକ ଥିଲେ ଏବଂ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ସେକ୍ରେଟାରୀ ମଧ୍ୟ ଥିଲେ । ଦିନେ ଦେଖାଗଲା, ଜଗଦୀଶ ପାଣି ନାମକ ଜଣେ ଭଦ୍ରବ୍ୟକ୍ତି ଆସି ସେକ୍ରେଟାରୀ ଆସନରେ ଆସୀନ ହେଲେ । ସେ ଗୋଟିଏ ମାସିକ ସାହିତ୍ୟ ପତ୍ରିକା 'ସମାବେଶ'ର ପ୍ରକାଶକ ଭାବେ ଜଣାଶୁଣା ଥିଲେ । ସେ ଆସି ପ୍ରଜାତନ୍ତ୍ର ପ୍ରଚାର ସମିତିକୁ ଗୋଟାଏ ଲଗାମଦିଆ ସଂସ୍ଥାରେ ପରିଣତ କରିବାକୁ ଚାହିଲେ । ସମସ୍ତେ ସାଢ଼େ ନଅଟା ସୁଦ୍ଧା ଉପସ୍ଥିତ ହେବେ । ମନଇଚ୍ଛା ଛୁଟି ନେଇପାରିବେ ନାହିଁ । ନିଜ କାମ ଜାଗା ଛାଡ଼ି କେହି ଏଠିସେଠି ବୁଲିପାରିବେ ନାହିଁ । ଦରମା ବାବଦକୁ ଅଗ୍ରୀମ ନେଇଥିବା ଟଙ୍କା ତିନୋଟି ବା ଚାରୋଟି କିସ୍ତିରେ କାଟି ରଖାଯିବ । ପ୍ରକାଶକଙ୍କ ପୁସ୍ତକ ମୁଦ୍ରଣ ପ୍ରାପ୍ୟ ଏବଂ ବିଜ୍ଞାପନ ଦେୟ ରସିଦ କଟାହେବା ଦିନ କ୍ୟାସ ପଇଠ କରାହେବ । ନଚେତ୍ ତାହା ସାମୟିକ ତୋଷରଫ୍ ବୋଲି ଧରାଯିବ । ଇତ୍ୟାଦି... ।

ଏଇ ନୂଆ ନିୟମ ଯୋଗୁଁ 'ପ୍ରଜାତନ୍ତ୍ର'ରେ ସାମୂହିକ ଅସନ୍ତୋଷର ଗୁଞ୍ଜରଣ ଉଠିଲା । ମାତ୍ର ଏ ଅସନ୍ତୋଷକୁ କର୍ଣ୍ଣପାତ କରିବାକୁ ଏଠି କେହି ନ ଥିଲେ । ବିଶ୍ୱମ୍ଭର ବାବୁ ଦାରୁଭୂତ ମୁରାରି ପାଲଟି ଯାଇଥିଲେ । ନିଜ ସମ୍ମାନକୁ ଜଗି ସେ ନୀରବ ରହୁଥିଲେ । ଏହା ଫଳରେ ମୋ ଅସୁବିଧା ମତେ ବହକିଗଲା । କ୍ଲାସ ଛାଡ଼ି ସାଢ଼େ ନଅଟାକୁ ଆସିବା ପାଇଁ ବେଶିଦିନ ପଡ଼ିନଥିଲା । ବେଶିଦିନ ଅସୁବିଧା ପଡ଼ିଲା ଡିଗ୍ରୀ ପରୀକ୍ଷା ଦିନ ଗୁଡ଼ିକରେ । ସେ ଦିନସବୁକୁ ଛୁଟି ଦରଖାସ୍ତ ଦେଇ ମୁଁ ରହିଲି । ଜାଣିଲି ଦରମା କଟିବ । କଟୁ ପଛେ; ପରୀକ୍ଷା ଦେବି । ତାହାହିଁ କଲି ।

ପରୀକ୍ଷା ପରେ ଦେଖିଲି ସେ ମାସରେ ମୋ ଦରମାରୁ କିଛି କଟିଲା ନାହିଁ । ପରେ ଶୁଣିଲି, ମୋ ଛୁଟି ଦରଖାସ୍ତ ଉପରେ ବିଶ୍ୱମ୍ଭର ବାବୁ ଲେଖିଥିଲେ– 'ସେ ମହତାବ ବାବୁଙ୍କ ଅନୁମତି ନେଇ ପାଠ ପଢୁଛି । ତେଣୁ ତା'ପାଇଁ ଏ ନିୟମ କୋହଳ କରାଯାଉ ।' ଏଇ ପରୀକ୍ଷା ଦିନଗୁଡ଼ିକରୁ ସିନା ଉଦ୍ଧାର ମୁଁ ପାଇଗଲି ;

ମାତ୍ର ମନରେ ଏମ୍.ଏ. ପାଠ ପଢ଼ିବା ନିଶା ଜୋର ଧରିଲା । କ'ଣ କରିବି, କିଛି କୂଳକିନାରା ପାଇଲିନି । ମୋ ସହପାଠୀ ବନ୍ଧୁ ନିଶାକର ପାଢ଼ୀ ସେମିତି ଅସୁବିଧାରେ ପଡ଼ିଥିଲେ । ସେ ମତେ ସାହସ ଦେଇ କହିଲେ, ଏ ବର୍ଷଟା ଯାଉ । ଆସନ୍ତା ବର୍ଷ କିଛି ଗୋଟା ବାଟ କରି ପାଠ ପଢ଼ିବା । ତମେ ଚିନ୍ତା କରନି । ସାଙ୍ଗ ହେଇ ନିଶ୍ଚେ ପାଠ ପଢ଼ିବା । ଫଳରେ ମନରେ କିଛିଟା ଦମ୍ଭ ଆସିଲା ।

ସେତିକିବେଳେ ପ୍ରଜାତନ୍ତ୍ର ପ୍ରେସ୍‌ର ସହକାରୀ ମ୍ୟାନେଜର ସାଗରବାବୁ ଭାରି ଅଡୁଆରେ ପଡ଼ିଥିଲେ । ସେ ପ୍ରକାଶକଙ୍କଠାରୁ ପ୍ରାୟ ପଚିଶି ହଜାର ଟଙ୍କା ଆଣି ରସିଦ ଦେଇ କ୍ୟାସ ଜମା ଦେଇ ନଥିଲେ । ଏତେଗୁଡ଼ା ଟଙ୍କା କିସ୍ତିରେ ତାଙ୍କ ଦରମାରୁ କାଟିବା ଅସମ୍ଭବ ହୋଇପଡ଼ିଲା । ତେଣୁ ଜଗଦୀଶ ବାବୁ ତାଙ୍କୁ ଚାକିରିରୁ ସସ୍‌ପେଣ୍ଡ କରିଦେଲେ । ସମସ୍ତେ ଜାଣିଥିଲେ, ସାଗରବାବୁ ମହତାବଜୀଙ୍କ ଗାଁ ଲୋକ । ସେ ମହତାବଜୀଙ୍କ ଘରକୁ ଧାଇଁଲେ ଭୁବନେଶ୍ୱର ଏକାମ୍ର ନିବାସ । ସେଠି ବି ତାଙ୍କ ସାକ୍ଷାତ୍ ମିଳିଲାନି । ମାସାବଧି କାଳ ବିତିଗଲା । ଶେଷକୁ ଦିନେ ସନ୍ଧ୍ୟାବେଳେ ମହତାବଜୀଙ୍କ ସହ ଅକସ୍ମାତ୍ ସାକ୍ଷାତ୍ ହେଲା ପ୍ରଜାତନ୍ତ୍ରରେ । ସେଦିନ ତାଙ୍କ ପାଖରେ ବିଶେଷ ଲୋକ ଭିଡ଼ ନ ଥିଲା । ସାଗରବାବୁ ପ୍ରଣାମ କଲାମାତ୍ରେ ମହତାବଜୀ କହି ଉଠିଲେ– 'ହଇହୋ ସାଗର ! ତମେ ଏତେ ଗୁଡ଼େ ଟଙ୍କା ଖାଇଗଲ ନା' ?

ସାଗରବାବୁ ଓଦା କଣ୍ଠରେ କହିଲେ– 'ଆଜ୍ଞା, ଖର୍ଚ୍ଚ କରି ଦେଇଚି । ଛଅ ଛଅଟା ପିଲା'...

– କ'ଣ କହୁଚ, ତୁମର ଛଅଟି ପିଲା ?

– ମୋ ସ୍ତ୍ରୀର ପୁଣି ଗୋଟିଏ କ'ଣ ହବ ଆଜ୍ଞା !

– ପୁଣି ଗୋଟେ କ'ଣ ହବ ନା ? ଓ–ହୋ–ହୋ... ! ଆରେ, କିଏ ବସିଚ ସେଠି ? ଡାକନି ବିଶ୍ୱମ୍ଭରକୁ ।

ବିଶ୍ୱମ୍ଭରବାବୁ ଆସି ପହଞ୍ଚିଲେ । ମହତାବଜୀ ତାଙ୍କୁ କହିଲେ– ହଇହୋ ବିଶ୍ୱମ୍ଭର ! ତମେ ଏମାନଙ୍କ କଥା କିଛି ବୁଝୁଚ, ନା ଅଭିମାନ କରି ବସିଚ ? ତମେ ପରା ଗାନ୍ଧିବାଦୀ ଲୋକ । ସାମାନ୍ୟ କଥାକୁ ଧରି ବସିଲେ ଚଳିବ ! ଏ ଅନୁଷ୍ଠାନକୁ ତୁମେ ଯେମିତି ଚଳଉଥିଲ ଚଳାଅ । ଶୁଣୁଚି ସମସ୍ତେ ଅତିଷ୍ଠ । ଏଣିକି ଜଗଦୀଶ କଥା ମୁଁ ବୁଝିବି । ହଁ, ସାଗରର ଦରମା ୫୦ ଟଙ୍କା ବଢ଼େଇ ଦିଅ । ନ

ହେଲେ ସେ ଆଉ ଗୁଡ଼ାଏ ଖାଇଯିବ । ତା'ର ଛଅଟା ପିଲା ହୋ ! ଏଣେ କହୁଛି ଦି'ମାସ ହେଲା ଦରମା ପାଇନି । ଆଚ୍ଛା କଥା; ଚଳିବ କେମିତି ?

କଥାଟା କାନକୁ ଦି'କାନ ହେଇ କ୍ରମେ ସାରା 'ପ୍ରଜାତନ୍ତ୍ର' ପରିବାର ଜାଣିଗଲେ । କ୍ରମଶଃ ଜଗଦୀଶ ବାବୁଙ୍କର ପ୍ରଜାତନ୍ତ୍ରକୁ ଆସିବା କମିଗଲା । ଶେଷକୁ ବିଶ୍ୱମ୍ଭରବାବୁ ସବୁ କଥା ପୂର୍ବ ଭଳି ବୁଝିଲେ । ଏକାଉଣ୍ଟ ସେକ୍ସନ କଥା ବୁଝିଲେ, ଅପେକ୍ଷାକୃତ ତରୁଣ ତଥା ବିଚକ୍ଷଣ କର୍ମଚାରୀ ପ୍ରଫୁଲ୍ଲ କୁମାର ସାହୁ । ସେତେବେଳକୁ ପୁଣିଥରେ ପ୍ରଜାତନ୍ତ୍ରର ଆର୍ଥିକ ସ୍ଥିତିରେ ସୁଧାର ଆସିଗଲା । ଏଇ ସୁଯୋଗରେ ମୁଁ ବିଶ୍ୱମ୍ଭର ବାବୁଙ୍କୁ ମୋ ଅସୁବିଧା କଥା କହିଲି । ଜଗଦୀଶ ବାବୁ ମତେ ସାମୟିକ ଭାବେ ସମ୍ବାଦ ବିଭାଗରେ ପୂରାଇ ଦେଇ ଯାଇଥିଲେ । ସେଠି ମଧ୍ୟ ମତେ ସାଢ଼େ ନଅଟାରୁ ସାଢ଼େ ଦିଇଟା ଯାଏ ମୁକ୍ତି ମିଳୁ ନ ଥିଲା ।

ବିଶ୍ୱମ୍ଭର ବାବୁ ଦିନେ ମହତାବଜୀଙ୍କୁ ମୋ ପାଠପଢ଼ାର ଅସୁବିଧା କଥା କହିଲେ । ସାଙ୍ଗେସାଙ୍ଗେ ସେ ମତେ ଡକାଇ ପଠାଇଲେ ତାଙ୍କ ପାଖକୁ । ବିଶ୍ୱମ୍ଭର ବାବୁ ସେଠି ବସିଥାଆନ୍ତି । ମୋ ବିଷୟରେ ସେ ସେଇଠି ତୁରନ୍ତ ନିଷ୍ପତ୍ତି ନେବାକୁ ଚାହିଁଥିଲେ । ମତେ ପଚାରିଲେ– 'ତୁମେ ଜଣେ ଗ୍ରାଜୁଏଟ୍ । 'ପ୍ରଜାତନ୍ତ୍ର'ରେ ଏବେ ଗ୍ରାଜୁଏଟ୍ କର୍ମଚାରୀ ଜଣେ ଦି'ଜଣ ଅଛନ୍ତି । ତୁମେ ଅଧିକ ପଢ଼ିବା ପାଇଁ ଚାହୁଁଚ; ଭଲ କଥା । ହେଲେ ଅସଲ ସମସ୍ୟା ହେଉଚି, ତୁମ ସମ୍ମାନ ପ୍ରତି ଦୃଷ୍ଟି ରଖି ବିଶ୍ୱମ୍ଭର କେଉଁ ସେକ୍ସନରେ ତୁମକୁ ଏଡ୍‌ଜଷ୍ଟ କରିବେ ସ୍ଥିର କରିପାରୁ ନାହାନ୍ତି । ତୁମେ ଦିନ ତିନିଟା ପରେ ସମୟ ଦେଇପାରିବ ବୋଲି କହିଁଚ । ସର୍କୁଲେସନ ସେକ୍ସନ ଛଡ଼ା ସେତେବେଳେ ଅନ୍ୟ ବିଭାଗରେ ପ୍ରାୟ କିଛି କାମ ନ ଥାଏ । ତୁମେ ସେଠିକା କାମ ତୁଲାଇବାକୁ ରାଜି ହେବ ?'

ମୁଁ ନମ୍ର ଭାବରେ କହିଲି– 'ଆଜ୍ଞା ! ପାଠପଢ଼ା ପାଇଁ ମୁଁ ଯେ କୌଣସି ପ୍ରକାର କାମ କରିବାକୁ ରାଜି । ମୁଁ ଉଚ୍ଚ ଡିଗ୍ରୀ ହାସଲ କରିବାକୁ ଚାହେଁ ।'

ମହତାବଜୀ ଖୁସି ହୋଇ ମୋର ଉଚ୍ଚ ଭାବନାକୁ ତାରିଫ୍ କଲେ । ତା'ପରେ ବିଶ୍ୱମ୍ଭର ବାବୁଙ୍କୁ କହିଲେ, ଏଇ କାମଛଡ଼ା ଆଉ କିଛି ଗୋଟା ଦାୟିତ୍ୱରେ ରତ୍ନାକରକୁ ରଖିବାକୁ ମୁଁ ଭାବୁଚି । ତେବେ ଆଗ ତାଙ୍କ ଅସୁବିଧାଟି ଦୂର ହେଉ ।

ପ୍ରକୃତରେ ମୋ ଅସୁବିଧା ଦୂର ହେଇଗଲା ।

ମୁଁ ସର୍କୁଲେସନ ସେକ୍ସନ ଆସିଷ୍ଟାଣ୍ଟ ଭାବେ କାମ ଆରମ୍ଭ କରିବାର ପନ୍ଦର ଦିନ ପରେ ଗୋବିନ୍ଦ ଚନ୍ଦ୍ର ଦାସ, ରମେଶ ଚନ୍ଦ୍ର ଧଳ ଓ ମତେ 'ଝଙ୍କାର'ର ସଂପାଦନା ଦାୟିତ୍ୱରେ ରଖାଗଲା । ବୋଧହୁଏ ମୋ ସମ୍ମାନ ପ୍ରସଙ୍ଗ ମହତାବଜୀଙ୍କ ମନକୁ ଛୁଇଁଥିଲା ।

।। ବାର ।।

# ବାପା ଚାଲିଗଲେ...

ମୋ ଚଲାବାଟରୁ ବାଧା ହଟିଗଲା ବୋଲି ଯେତେବେଳେ ମୁଁ ଭାବେ, କିଛି ନା କିଛି ବାଧା ନୂଆ ରୂପରେ ମୁଣ୍ଡ ଟେକି ଆସି ଉଭା ହୋଇଯାଏ ମୋ ଆଗରେ । ଏମ୍.ଏ. ପଢ଼ିବା ପାଇଁ ବାଟ ପରିଷ୍କାର କରି ଦେଲେ ମହତାବଜୀ । ଖରା ଛୁଟି ପରେ ନାମଲେଖା ପର୍ବ ଆରମ୍ଭ ହେବ । ଏକପ୍ରକାର ମାନସିକ ଶାନ୍ତିରେ ନୂଆ ଜୀବନକୁ ଅପେକ୍ଷା ରଖିଥାଏ । ମନରେ ସ୍ୱପ୍ନର ସବୁଜ ଗାଲିଚା ।

ଉଠ୍‌ପଡ଼ ଜୀବନରେ ଏମ୍.ଏ. ଡିଗ୍ରୀ ପାଇବାର ଆନନ୍ଦ–

ହଠାତ୍ ଗୋଟାଏ ଦୁଃସମ୍ବାଦ ମୋ ସ୍ଥିତିକୁ ଦୋହଲାଇ ଦେଲା । ମୋର ଜଣେ ସଂପର୍କୀୟ ମାମୁ ଆସି ମତେ ଖବର ଦେଲେ, ତୁରନ୍ତ ଗାଁକୁ ଚାଲ୍; ବାପା ସିରିଅସ୍ । ଏକଥା ଶୁଣିବା ମାତ୍ରେ ମୁଁ ଏକମୁହାଁ ହୋଇ ଧାଇଁଲି ଗାଁକୁ ।

ବାପା ଥିଲେ ମୋ ପାଇଁ ସକଳ ପ୍ରେରଣାର ଉତ୍ସ । ମୋ ପାଇଁ ସିଏ ଗୋଟାଏ ଅନୁଷ୍ଠାନ । ପିଲାଦିନୁଁ ସେ ମୋ ପରିଚୟର ବଡ଼ ଛତା । ମୋର ଗୋଟେ ଧାରଣା ହୋଇଯାଇଥିଲା, ଏ ଖଣ୍ଡମଣ୍ଡଳରେ ମୋ ବାପାଙ୍କୁ ସମସ୍ତେ ଜାଣନ୍ତି । ସମସ୍ତେ ମାନନ୍ତି । ମୁଁ କୋଉଠି କ'ଣ ଟିକେ ବଦମାସୀ କଲେ ବାପାଙ୍କ ପାଖରେ ଖବର ପହଞ୍ଚିଯିବ । ବାପାଙ୍କୁ ଅସମ୍ମାନ ହେବ । ତେଣୁ ଯଥାସାଧ ସୁଧାର ପିଲା ହେବାକୁ ବାଧ୍ୟ ହେଉଥିଲି । ମୋ ନିଷ୍ପତ୍ତି ଓ ପାଠ ପଢ଼ିବାର ଜିଦିକୁ ବାପା ପରୋକ୍ଷ ସମର୍ଥନ କରୁଥିଲେ । କେବଳ ନିଜର ଅସହାୟ ପରିସ୍ଥିତିକୁ ଢାଙ୍କି ରଖିବା ଲାଗି ମତେ ସେଦିନ ସେ କହିଥିଲେ– ମୁଁ ଆଉ ତତେ ପଢ଼େଇ ପାରିବିନି । ତୁ ଯା, ଚାକିରି ବାକିରି କର; ସାନ ଭାଇ–ଭଉଣୀଙ୍କ ଦାୟିତ୍ୱ ସମ୍ଭାଳ ।

ବଡ଼ଭାଇଙ୍କ ବାହାଘର ପୂର୍ବ ରାତିରେ ସାମାନ୍ୟ କେଇଟା ଟଙ୍କା ଧରି ମୁଁ ଘରେ ପହଞ୍ଚିଥିଲି । ସେଦିନ ଦେଖିଚି ତାଙ୍କ ମନରେ କି ଅପୂର୍ବ ଆନନ୍ଦ । ବଡ଼ଠାକୁର

ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଆଖିରେ ଆଖିଏ କୃତଜ୍ଞତା । ଭଗବାନ୍ ! ମୋ ସଂସାରରେ ମୁଁ ଏକୁଟିଆ ନାଉରୀ ନୁହଁ; ଅନ୍ତତଃ ଆଉ ଜଣକୁ ମୋ ସହିତ ଅଣ୍ଟା ଭିଡ଼ିବାକୁ ତିଆର୍ କରି ଦଉଚ । ଏମିତି ଗୋଟାଏ ଭାବନା ତାଙ୍କ ମୁହଁରୁ ମୁଁ ଠଉରାଇ ଥିଲି ସେ ରାତିରେ ।

ଓଃ ! ମନରେ ଶୀଘ୍ର ଶୀଘ୍ର ଘରେ ପହଞ୍ଚିବାର ବ୍ୟାକୁଳତା । ମନ ଯେତେ ବ୍ୟାକୁଳ ହେଉଥାଏ, ବାପାଙ୍କ ସ୍ମୃତି-ସଜଳ ପ୍ରସଙ୍ଗ ଆଖି ଆଗରେ ସେତେ ଲମ୍ୱି ଲମ୍ୱି ଯାଉଥାଏ । ମୁଁ ସେତେବେଳେ ସପ୍ତମ ଶ୍ରେଣୀରେ ପଢୁଥାଏ କେନ୍ଦୁପାଟଣା ମି.ଇ. ସ୍କୁଲ୍‌ରେ । ମୋ ବଡ଼ବାପାଙ୍କ ଏକମାତ୍ର ପୁଅ ବାବାଜୀ ନନା ଅଜଣା ଫ୍ଲୁ ରୋଗ ଭୋଗି ତିନି ଚାରିଦିନ ଭିତରେ ଆକସ୍ମିକ ଭାବେ ମରିଗଲେ । ଆମ ପରିବାରରେ ଶୋକର ଛାୟା ଖେଳିଗଲା । ମାତ୍ର ଛଅ ମାସ ଆଗରୁ ତାଙ୍କର ବାହାଘର ହୋଇଥିଲା । ଏ ବିବାହରେ ସେ ମୋଟେ ଖୁସି ନ ଥିଲେ । ନୂଆବୋଉ ଆଦୌ ସୁନ୍ଦର ନ ଥିଲେ କିମ୍ୱା ତାଙ୍କ କଥାବାର୍ତ୍ତା ଚାଲିଚଳନ ସ୍ୱାଭାବିକ ନ ଥିଲା । ବାହାଘରର ମାସକ ପରେ ସେ ଯାଇ ତାଙ୍କ ବାପଘରେ ରହୁଥିଲେ । ବାପା ଏଥିପାଇଁ ନିଜକୁ ଦାୟୀ କରି ଅଶାନ୍ତିରେ ଦିନ କାଟୁଥିଲେ । ତାଙ୍କର କହିବା କଥା- କନ୍ୟାଘର ଗୋଟାଏ ଝିଅକୁ ଦେଖାଇଥିଲେ, ଏବଂ ଆଉ ଗୋଟାଏ ଝିଅକୁ ବାହାଦେଇ ପଠାଇଥିଲେ । ପରେ ପରେ ଏ ଦୁର୍ଘଟଣା ଘଟିଲା ।

ବାବାଜୀ ନନାଙ୍କ ମୃତ୍ୟୁ ପରେ ସେଇ ନୂଆବୋଉଙ୍କ ଘର ଲୋକେ ଟାଉଟରୀ ଖେଳିଲେ । ଆମ ଅବିଭାଜିତ ପରିବାରର ସଂପତ୍ତି ଜମିବାଡ଼ିରୁ ଅଧେ ବିକ୍ରି କରି ଟଙ୍କା ନେବାର ଚକ୍ରାନ୍ତ କଲେ । ବାପାଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା । ତାଙ୍କୁ ବୁଦ୍ଧିବାଟ କିଛି ଦିଶିଲାନି । ଚିନ୍ତାରେ ସେ ଖିଆପିଆ ବନ୍ଦ କରିଦେଲେ । ମଧ୍ୟସ୍ଥି ପଶି, କେତେ ଟଙ୍କା ନେଇ ସେ ସଂପତ୍ତି ଜମିବାଡ଼ିକୁ ଛାଡ଼ିଯିବେ, ସେ ବିଷୟ କଥାବାର୍ତ୍ତା ଚାଲିଲା । ଟଙ୍କା ପଇସା ନେବା-ଦେବା କଥା ତୁଟୁ ନ ଥାଏ । ବାପା ଟଙ୍କା ଧାର-ଉଧାର କରିବା କଥା ବିଭିନ୍ନ ଲୋକଙ୍କ ସାଙ୍ଗରେ ଜାରି ରଖିଥାନ୍ତି ।

ହଠାତ୍ ବାପାଙ୍କୁ ଗୋଟାଏ ପ୍ରସ୍ତାବ ଦେଲେ ସୋଗଲର ଆମ ଭାୟା ମନ୍ଦରା କକେଇ । ସେ କହିଲେ ନନା, ତମେ ଟଙ୍କା କରଜ କରିବା ପାଇଁ ୟା', ତା' ପାଖକୁ କାହିଁକି ଦଉଡୁଚ ? ତମେ ବୋଧେ ଭୁଲି ଯାଇଚ; ଆମ ଚକ୍ରାନା' ମଲାବେଳକୁ ରତନାକୁ (ମତେ) ପରା ପୁଅ କରି ନେଇଥିଲେ । ତାଙ୍କ ସ୍ତ୍ରୀ ତ

ତୀର୍ଥ କରିବାକୁ ଯାଇ ହଇଜାରେ ମଲା ସିଆଡ଼େ । ଆମେ ଶୁଦ୍ଧ ହେବା ତିନି ବରଷ ହେଇଗଲାଣି । ସେ ଜମିବାଡ଼ି ଭାଗରେ ଲଗେଇବା ପାଇଁ ତମେ ମୋ ବେକରେ ଝୁଲେଇ ଦେଇଚ । ମୁଁ ଠିକ୍ ଭାବେ ତୁଲେଇ ପାରୁନି ସେ କାମ । ଭାଗଚାଷୀ ନେଁ–ଛେଁ କରି ଭାଗ ଦଉଛନ୍ତି । ତମେ ବିକିଦିଅ ସେ ଚାଷଜମି । ଢିଅ ଜମିତକ ଗ୍ରାମର ମଦନମୋହନ ଠାକୁରଙ୍କୁ ଦାନ କରିଦିଅ । ଆମ୍ବ ତୋଟାଟା ଥାଉ । ମୋ ପିଲାଛୁଆ ଭୋଗ କରିବେ ତମ କୃପାରୁ । ସାଇଭାଇମାନେ ଖୁସି ହେବେ । ଚାଷଜମି ଭଲ ଜରସମନରେ ଯିବା ବାଟ ହେଇଯିବ । କ'ଣ କହୁଚ ? ମୁଁ ଭାବୁଚି, ତମର ଏ ଚିନ୍ତା ହଟିଯିବ । ହାତରେ କିଛି ଧନ ବି ରହିବ ।

ବାପାଙ୍କ ମନକୁ ହୁ–ଦସ୍ତ ଗୋଟାଏ ଦମ୍ଭିଲା ସାହସ ଆସିଗଲା । ସେ ଚାରିଆଡ଼କୁ ମୁଣ୍ଡ ଟେକି ଦୃଷ୍ଟି ପହଁରେଇଲେ । ବାରଣ୍ଡାରେ ବସି ପଢ଼ା–ପାଠ ତିଆରି କରୁଥିଲି ମୁଁ । କ୍ଷଣକ ପାଇଁ ତାଙ୍କ ଆଖି ସ୍ଥିର ହେଇଗଲା ମୋ ଉପରେ । ତା'ପରେ କକେଇଙ୍କି କହିଲେ– ''ଆଚ୍ଛା ବାଟଟିଏ ହେଜେଇ ଦେଲୁରେ ମନ୍ଦରା ! ମୁଁ ଏଥିରେ ରାଜି । ତୁ ଟିକେ ଲାଗିପଡ଼ । ଯେତେ ଶୀଘ୍ର ଏକଥା ହେଇଯିବ ଭଲ । ମୋ ମୁଣ୍ଡରୁ ବୋଝ କମେଇ ଦେଲୁ ତୁ ।''

ତା'ପରେ ସବୁ କାମ ସୁରୁଖୁରୁରେ ହୋଇଗଲା । ବାପା ଖୁବ୍ ଖୁସିଥିଲେ ସେ ସମୟରେ । ନାନୀର ବାହାଘର ବି କରିଦେଲେ ଭଲରେ ଭଲରେ । ସେ ବେଳରେ ମୋ ବାପା ମନେ ହେଉଥିଲେ ଜଣେ କରିତ୍କର୍ମା ପୁରୁଷ । ତା'ପରେ ବଡ଼ପୁଅର ବାହାଘର କଲାବେଳକୁ ପୁଣି ପାରିବାରିକ ଟାଣ୍‌ଟୁଣ୍ ଲାଗିଯାଇଥିଲା । ବଢ଼ି–ମରୁଡ଼ି ଆମ ଅଞ୍ଚଳର ଲୋକଙ୍କ ଚିରସାଥୀ । ତା'ରି ଭିତରେ ପେଷି ହେଇଯାଉଥିଲେ ଏ ଅଞ୍ଚଳର ଲୋକେ । ସେଥିପାଇଁ ବାପା ତାଙ୍କ ପରିବାର ପାଇଁ ଗୋଟାଏ ସାହାଯ୍ୟକାରୀ ହାତକୁ ଅପେକ୍ଷା ରଖିଥିଲେ । କିନ୍ତୁ ମୁଁ..., ମୁଁ ତ ଭାସୁଥିବା କୁଟା ଖିଏ । ସାହାଯ୍ୟକାରୀ ହାତ ହେବାର ଯୋଗ୍ୟତା ମୋର କାହିଁ ?

ମୁଁ ସେ ସହାୟତା ଦେବା ଆଗରୁ ନିଜର ଦମ୍ଭିଲା ପାଦ ଏ ପୃଥିବୀରେ ଥାପିବା ପାଇଁ ସଂଗ୍ରାମରତ । ତେଣୁ ସେ ମତେ ଆଉ ବେଶି କିଛି କହୁ ନଥିଲେ । ମାତ୍ର ବିଧି ବାମ ହେଲା । ହଠାତ୍ ସେ ସିରିଅସ୍ ଅସୁସ୍ଥ । ମତେ ଡକରା ପଡ଼ିଛି । କିଛି କହିବେ ବୋଧେ । ଏବେ କିଛି କହିବା ଅବସ୍ଥା ତାଙ୍କର ଥିବ ତ ? ମାମୁ କହୁଛନ୍ତି– ନାଇଁ ମ ! ଭାଇନାଙ୍କ ପରିସ୍ଥିତି ଆଉ ଭଲ ମନେହେଉନି । ତୁ ଦେଖିଲେ ଜାଣିପାରିବୁନି କି ? ଚାଲ୍; ଆଉ ଅଧଘଣ୍ଟା ଭିତରେ ଆମେ ଘରେ ପହଞ୍ଚିଯିବା ।

ଘରେ ପହଞ୍ଚିଲା ବେଳକୁ ଚାରିଆଡ଼େ ଅଦ୍ଭୁତ ନୀରବତା ।

ସେତେବେଳକୁ ଦିନ ଦ୍ୱିପହର ।

ଗାଈଗୋରୁ ବଳଦଙ୍କ ହମ୍ବାରଡ଼ି ବି ନାହିଁ ।

ମୁଁ ଠାଏ ପଢ଼ିଥିଲି– ପଶୁପକ୍ଷୀଙ୍କ ପାଖରେ ପରିବେଶ ଓ ପରିସ୍ଥିତିର ଭାବୀ ସୂଚନା ଅନ୍ତରାତ୍ମାରୁ ବହୁ ଆଗରୁ ପହଞ୍ଚି ସାରିଥାଏ । ଚାଉଁକିନା ମୋ ମନକୁ ସେ କାଳକଥା ଛୁଇଁଲା । କିଛି ଅଘଟଣ ଘଟିଯାଇନି ତ ! ବାରଣ୍ଡାରେ ଥମ୍‌କିନା ବସିପଡ଼ିଲି । ମାମୁ ଘର ଭିତରକୁ ପଶିଗଲେ । ଯନ୍ତ୍ରଚାଳିତ ଭଳି ଘର ଭିତରୁ ବାହାରି ଆସିଲା ମୋ ସାନ ଭଉଣୀ ସୀତା । ମୁହଁ ତା'ର ଫଣଫଣ । ମନେ ହେଉଥିଲା, କିଛି ସମୟ ଆଗରୁ ସେ କାନ୍ଦୁଥିଲା । ସେ ଖାଲି ଏତିକି କହିଲା– ନନା ! ଘର ଭିତରକୁ ଆସୁନ । ବାପା ତମକୁ ଦେଖିବା ପାଇଁ ଭାରି ଖୋଜି ହଉଛନ୍ତି ପରା ।

ଟିକେ ଆଶ୍ୱସ୍ତ ହେଲି ତା' କଥା ଶୁଣି ।

ସନ୍ତର୍ପଣରେ ଘର ଭିତରକୁ ପଶିଲି ।

ମତେ ଦେଖି ବୋଉ ରାହା ଧରି କାନ୍ଦି ଉଠିଲା । ସମସ୍ତଙ୍କ ଆଖିରେ ଲୁହ । ବାପା ଆଖି ଖୋଲି ଡବଡବ କରି ଚାହିଁଲେ ଚାରିଆଡ଼କୁ । ମୁଁ ତାଙ୍କ ପାଦ ପାଖରେ ବସିପଡ଼ି ହାତ ଗୋଡ଼ ଆଉଁସୁଥିଲି । ମୋ ଆଖିରୁ ଲୁହ ବହି ତାଙ୍କ ଗୋଡ଼ରେ କେଇ ବୁନ୍ଦା ପଡ଼ିଲା । ସେ ବୋଧେ ଅନୁଭବ କରି ପାରିଲେ । ମତେ କ'ଣ କହିବା ପାଇଁ ନିର୍ବାକ ସଙ୍କେତ ଦେଲେ । ମୁଁ ତାଙ୍କ ହାତ ପାପୁଲିକୁ ଜାବୁଡ଼ି ଧରିଲି । ମୁହଁ ପାଖରେ କାନ ଦେଲି । କିଛି ସମୟ ପରେ ଶୁଣିଲି ଏକ ଅସ୍ପଷ୍ଟ ଧ୍ୱନି... 'ହିଇ..... ତା' ଆ'...

ବାସ୍, ଏତିକି ।

ପୁଣି ଆଖିବୁଜି ଶୋଇ ପଡ଼ିଲେ ।

ମୁଁ ହତଭାଗା ଜାଣିପାରିଲି ନାହିଁ, ଏ ପୃଥିବୀରେ ତାହା ହିଁ ଥିଲା ତାଙ୍କର ସର୍ବଶେଷ ଧ୍ୱନି । ମୁଁ ସେଇଠି ବସି ସେ କହିଥିବା ଶବ୍ଦର ଅର୍ଥ ବାହାର କରୁଥିଲି । ବୋଧହୁଏ ସେ 'ସୀତା' ବୋଲି କହିବାକୁ ଚାହୁଁଥିଲେ । 'ହିତା'ର ଆଉ କିଛି ଅର୍ଥ ତ ନାହିଁ । 'ସୀତା'ର ବାହାଘର କଥା । ସେ ସେଇ କଥା କହିବାକୁ ଚାହୁଁଥିଲେ ।

ହେଲେ ମୁଁ ତ ଗୁଣ୍ଡୁଚି ମୂଷାଟିଏ । ସେତୁବନ୍ଧ ବାନ୍ଧିବାର ବିରାଟ ଦାୟିତ୍ୱ କେମିତି ନେଇପାରିବି !

ସେଇଠି ବସି ବସି ଚିନ୍ତା କରୁଥାଏ କେତେ କ'ଣ । ତାରି ଭିତରେ କେତେ ସମୟ ବିତିଯାଇଚି ମୁଁ ଜାଣେନା । ହଠାତ୍ ବାପାଙ୍କ ହାତଟା ମତେ ଥଣ୍ଡା ଲାଗିଲା । ମୁଁ ଗୋଡ଼ରେ ହାତ ବୁଲାଇଲି । ସେଠି ବି ଥଣ୍ଡା; ପେଟର ସ୍ପନ୍ଦନ ନିଶ୍ଚଳ । ଗମ୍ଭୀର ଯୋଗମୁଦ୍ରାରେ ଆସିଥିଲା ମହାନିଦ୍ରା । ଅବରୁଦ୍ଧ କୋହକୁ ସମ୍ଭାଳି ଧରି ଉଠିଗଲି ବାରଣ୍ଡାକୁ । ସେଠି ବଡ଼ଭାଇ ବସିଥିଲେ । ମତେ ପଚାରିଲେ, କ'ଣ ହେଲା ?

ମୁଁ କହି ପକାଇଲି– 'ସବୁ ସରିଗଲା । ... ସାଇଭାଇଙ୍କି ଡାକ'...

ତା'ପରେ ହୃଦୟ ଖୋଲା କାନ୍ଦ କାନ୍ଦି ଉଠିଲି ।

ବସି ବସି ସ୍ଥିର କରିନେଲି, ମୋ ଆତ୍ମ ପରିଚୟର ଅନୁଷ୍ଠାନଟି ଏବେ ଭୁଷୁଡ଼ି ପଡ଼ିଲା । ଏଣିକି ନିଜ ପାଇଁ ନିଜର ପରିଚୟଟିଏ ସାଉଁଣ୍ଟିବାକୁ ହେବ । ମୋର ଗର୍ବ ଗୌରବର ବଡ଼ ଛତାଟି ମୋ ମୁଣ୍ଡ ଉପରୁ ଈଶ୍ୱର କାଢ଼ିନେଲେ । ଏଣିକି ନିଜ ପାଦରେ ଅବଶିଷ୍ଟ ପୃଥିବୀକୁ ମାପିବାକୁ ପଡ଼ିବ । ଗୋଟାଏ ଶୂନ୍ୟତାବୋଧ ମତେ କାବୁ କରି ବସିଲା । ବାପାଙ୍କ ବର୍ତ୍ତମାନରେ ସେ ମୋ ଆଗରେ ଯେତେ ବଡ଼ ହୋଇ ନ ଥିଲେ, ତାଙ୍କ ଅବର୍ତ୍ତମାନରେ ସେ କାହିଁ କେତେ ଗୁଣରେ ବିଶାଳ ମନେହେଲେ ।

ଶୁଦ୍ଧିକ୍ରିୟା ପରେ କଟକ ଚାଲି ଆସିଲି । ମନର ପୂର୍ବ ଆଗ୍ରହ ଓ ଉତ୍ସାହ କୋଉ ଅପନ୍ତରାରେ ହଜିଯାଇଥିଲା । ଗତାନୁଗତିକ ଧାରାରେ କାମ କରି ଚାଲିଲି । ବାରମ୍ବାର ମନକୁ ନିରୋଳା ବେଳେ ଛୁଇଁଲା ବାପାଙ୍କର ଶେଷ ଶବ୍ଦଟି । – 'ସୀତା' ! ଆଃ, ଆଲାଦ୍ଦିନ୍‌ର ମେଜିକ୍ ଲ୍ୟାମ୍ପ ମୋ ହାତକୁ ଦିନକ ପାଇଁ ଆସିଯାଆନ୍ତା କି ! ଚଟାପଟ୍ ଗୁଡ଼ାଏ ଧନ ଅକ୍ତିଆର କରି ଭଉଣୀର ବାହାଘରଟା ସାରି ଦିଅନ୍ତି । ସମସ୍ତଙ୍କୁ ଚମକେଇ ଦିଅନ୍ତି । ତା'ପରେ ମୋ ଚଲାବାଟରେ ମୁଁ ଚାଲନ୍ତି ।

ଏମିତି ଚିନ୍ତାରେ ନିଃସଙ୍ଗ ମୁହୂର୍ତ୍ତଗୁଡ଼ାକ କାଟୁଥାଏ । ଚାହୁଁ ଚାହୁଁ ତିନିମାସ ବିତିଗଲା ବାପାଙ୍କ ତିରୋଧାନରେ । ଦୋଳ ଉତ୍ସବ ପରେପରେ ଏକ ଉତ୍ତପ୍ତ ଅପରାହ୍ଣରେ ମୋ ପାଖରେ ପହଞ୍ଚିଲେ ମୋର ବଡ଼ ଭିଣୋଇ ଲକ୍ଷ୍ମୀଧର ଭାଇନା । ଏଣିକି ଆମ ବନ୍ଧୁବାନ୍ଧବ ବା ଘରଲୋକଙ୍କୁ ଆକସ୍ମିକ ମୋ ପାଖରେ ପହଞ୍ଚିବା ଦେଖିଲେ, ମୋ ମନକୁ କୋକୁଆ ଭୟ ଛୁଉଁଥିଲା । ଅବଶ୍ୟ ଭାଇନାଙ୍କ କଥା

ନିଆରା । ସେ ମତେ ଗୋଟାଏ ନିରୋଳା ଜାଗାକୁ ଡାକି ନେଇ କହିଲେ– ବାପା ସୀତା ବାହାଘର ବୁହାଳରେ ସ୍ଥିର କରିଥିଲେ । ନୂଆ ପାଞ୍ଜିରେ ବାହା ତିଥି ଏବେ ଆଠଦିନ ପରେ ସରୁଚି । ଆଗକୁ ଆଉ ପାଞ୍ଚମାସ ତିଥି ନାହିଁ । ସେମାନଙ୍କର ଏକାଜିଦ୍ ଏଇ ତିଥିରେ ବାହାଘର ସାର । ଦିଜ ଟଙ୍କାପଇସା କିଛି ଯୋଗାଡ଼ କରିଛି । ସୋଗଲରେ ଆଉ କୋଉ ଜମି ଦି'ଖଣ୍ଡ ଥିଲା । ସେଇଟା ତମେ ଗଲେ ରେଜିଷ୍ଟ୍ରି ହେବ; ସିଏ ତ ପଛ କଥା ।

ସୋଗଲର ମନ୍ଦରା କକେଇ ସୋମପୁର ପାଖର ଗୋଟାଏ ପ୍ରସ୍ତାବ ଧରି ଜିଦି ଲଗେଇଛନ୍ତି, ସେଇ ତିଥିରେ ତମ ବାହାଘର କରି ଦବାକୁ । ସେ ଲୋକଟାର କୁଆଡ଼େ ଗୋଟାଏ ଝିଅ । ତମେ ରାଜି ହେଇଗଲେ ସୀତା ବାହାଘରର ସମସ୍ତ ଖର୍ଚ୍ଚ ସେ ବହନ କରିବ । ତମମାନଙ୍କୁ ଆଉ କିଛି ଚିନ୍ତା କରିବାକୁ ପଡ଼ିବ ନାହିଁ । ମୁଁ କିମ୍ୱା ଦିଜ କେହି ସେ ଝିଅକୁ ଦେଖିନାହୁଁ । ମନ୍ଦରା କକେଇ ଆଉ ତମ ଗାଁର କିଏ ଜଣେ ଦି'ଜଣ ଦେଖିଛନ୍ତି । ତମେ ହଁ କହିଲେ ଆମେ ଆଗେଇବା । ହାତରେ ଆଉ ସମୟ ନାହିଁ । ସବୁ ଚଟାପଟ୍ କରିବାକୁ ହେବ । ତେଣୁ ନିଜେ ଚାଲିଆସିଚି ତମ ପାଖକୁ ।

ମୋ ଭିତରେ ଗୋଟାଏ ଛାନିଆ ଖେଳିଗଲା ।

ହଠାତ୍ ବାପାଙ୍କ ଶେଷକଥା ମନକୁ ଛୁଇଁଲା ।

ତେବେ ଏଇୟା କ'ଣ ଥିଲା ବାପାଙ୍କର ଇଚ୍ଛା !

କିଛି ସ୍ଥିର କରିପାରିଲି ନାହିଁ । ମତେ ଏବେ ନିଷ୍ପତ୍ତି ନବାକୁ ପଡ଼ିବ । ତେଲଲୁଣର ସଂସାର ଭିତରେ ପଶିଲେ ପାଠପଢ଼ାର ସ୍ୱପ୍ନକୁ ଧୂଳିସାତ୍ କରିବାକୁ ହେବ । ବାପା ଶେଷ ଶବ୍ଦ ମୋ କାନରେ କହିଥିଲେ– 'ସୀତା' । ତେଣୁ ତାଙ୍କ କଥାକୁ ଶେଷ ସମ୍ମାନ ଦେବାକୁ ପଡ଼ିବ । ଭଉଣୀର ବାହାଘର ପାଇଁ ନିଜ ଭବିଷ୍ୟତ ସ୍ୱପ୍ନକୁ ଆହୂତି ଦେବାକୁ ହେବ । ଇଏ ମୋ ପାଇଁ ସେଇ ଅମର ଆତ୍ମାର ନିର୍ଦ୍ଦେଶ । ହଉ, ଠିକ୍ ଅଛି–

'ଭାଇନା ! ମୋ ପାଇଁ ଆପଣ ଆସନ୍ତାକାଲି ସେ ଝିଅକୁ ଦେଖିବାକୁ ଯାଆନ୍ତୁ । ଆପଣଙ୍କର ଯଦି ପସନ୍ଦ ହେଲା ତେବେ ହଁ କହି ଦିଅନ୍ତୁ । ଆପଣଙ୍କ ଉପରେ ମୋର ଭରସା ଓ ବିଶ୍ୱାସ ଅଛି । ଆଉ ଏପଟେ ବାହାଘର ପୂର୍ବଦିନ ମୁଁ ଯିବାବାଟରେ ସାଲେପୁର ରେଜିଷ୍ଟ୍ରି ଖାନାରେ ଦସ୍ତଖତ କରି ଦେଇଯିବି । ମୋ

ହାତରେ ଛୁଟି ନାହିଁ । ବାପାଙ୍କ ଶୁଦ୍ଧିକାମ ବେଳେ ଛୁଟି ସାରି ଦେଇଛି । ମୁଁ ପରିବାରର ବୋଝ ହାଲୁକା କରିବାକୁ ପ୍ରସ୍ତୁତ । ମୋର ଅବସ୍ଥା ଯାହା ହଉ ପଛେ– ଦୁଇଟାଯାକ ବାଟ ଖୋଲା ରହିଲା । ଏଇ ତିଥିରେ ସୀତାର ବାହାଘର ନିଶ୍ଚେ ହବ । ହଉ, ରାତି ହେଇଯିବ । ଆପଣ ଯାଆନ୍ତୁ । କାଲି ପୁଣି ଆପଣଙ୍କୁ ନିଷ୍ପତ୍ତି ନେବାପାଇଁ ଯିବାକୁ ପଡ଼ିବ ।

ସେତେବେଳେ ଯୋଗାଯୋଗ ମାଧ୍ୟମ ପ୍ରାୟ କିଛି ନ ଥିଲା । ମଝିରେ ସମୟ ମୋଟେ ସାତଦିନ । ନିଜର ବଳି ପଡ଼ିବାର ଦିନକୁ ବସି ହିସାବ କରୁଥିଲି । ବିବାହର ମାନସିକତା ମୋର ମୋଟେ ନ ଥିଲା । ଜୋତା–ଛତା ଜାମାଯୋଡ଼ କଥା ପ୍ରତି ମନରେ ବିତୃଷ୍ଣା । ଏହା ହଉ, ସଂପୂର୍ଣ୍ଣ ଏକ ନିରାଡ଼ମ୍ବର ବାହାଘର । ଝିଅକୁ କ'ଣ ତା' ଫଟୋକୁ ବି ମୁଁ ଦେଖିନାହିଁ । ଦେଖିବି ବି ନାହିଁ । ନିଜ ଇଚ୍ଛା ବିରୁଦ୍ଧରେ ପରିବାର ପାଇଁ ଇଏ ମୋର ଅବଦାନ । 'ଜଗନ୍ନାଥେ, ଯାହା ତୁମରି ଇଚ୍ଛା ।'

ଦୁଇଦିନ ଛୁଟି ଓ ଗୋଟାଏ ରବିବାର ।

ମୋଟ ତିନିଦିନ ଛୁଟି ଧରି ସାଲେପୁର ବସ୍ ଧରିଲି । ତେଣିକି ଅଧିକ ରହିଲେ ଛୁଟି ଦରଖାସ୍ତ ଦେବି ବୋଲି ବିଶ୍ୱମ୍ଭର ବାବୁଙ୍କୁ କହି ଦେଇଥିଲି । ସାଲେପୁର ବଜାରରେ ପହଞ୍ଚିଲା ବେଳକୁ ଆଗ ଭେଟ ହେଇଗଲା ଲକ୍ଷ୍ମୀଧର ଭାଇନାଙ୍କ ସହିତ । ସେ ହସି ହସି କହିଲେ, ନାଇଁମ, ମୁଁ ରୋକଠୋକ୍ ମନା କରି ଦେଇଆସିଲି । ଧନ ପାଇଁ କ'ଣ ଗାଈ ବୋଲି ମଇଁଷିଟାକୁ ଆଣି ବେକରେ ବାନ୍ଧିବା । ସେ କଥା ଛାଡ଼ । ଦିଜ ଏଇଠି କୋଉଠି ମୋହରିର ପାଖରେ ଥିବ । ଦସ୍ତଖତ କାମ ସାର । ମୋ ସାଇକେଲରେ ବସି ଦି'ଜଣ ଯାକ ପଳେଇଯିବା ଗାଁକୁ । ତମକୁ ବରଧରା ହେଇ ତୁହାଳ ଯିବାକୁ ହେବ । ବୋଉଙ୍କର ଜିଦି । ସେଇଟା ଶିକ୍ଷିତ ଗାଁ । ସେଠିକି ମୋ ପାଠୁଆ ପୁଅ ଯିବ ।

ଭାଇନାଙ୍କ ମୁହଁରୁ ଏତକ କଥା ଶୁଣି ମୁଁ ନିଜକୁ ବିଶ୍ୱାସ କରି ପାରିଲିନି । କାହୁଁ କାହୁଁ ସାହସ–ଦମ୍ଭ ମୋ ମନରେ ଆସି ଠୁଳ ହେଇଗଲା । ଜଗନ୍ନାଥଙ୍କ ଅଶେଷ କୃପା ପାଇଁ ଆଖିବୁଜି କୃତଜ୍ଞତା ଭରା ପ୍ରଣିପାତ ଜଣାଇଲି । ଦ୍ୱିଗୁଣ ଉତ୍ସାହ ଓ ଆନନ୍ଦ ଆସିଗଲା ମନରେ । କଥାରେ ଆଉ କାମରେ ଭରିଗଲା ଫୁର୍ତ୍ତିଲାପଣ ।

ସବୁ କାମ ସାଲେପୁରେ ସାରି ଗାଁ ମୁହାଁ ହେଲି ।
ଭାଇନାଙ୍କୁ ସାଇକେଲରେ ବସାଇ ମୁଁ ଚଳାଇଲି ।
ବାଟଯାକ ଭାଇନା ଥଟ୍ଟା ପରିହାସ କରୁଥିଲେ ।
ଆଜି ତାଙ୍କ ଥଟ୍ଟା କଥା ମଧୁର ଲାଗୁଥିଲା ।
ମନେମନେ ବାପାଙ୍କୁ ଅବ୍ୟକ୍ତ ଭାଷାରେ କିଛି କହିବାକୁ ଚାହୁଁଥିଲି । ଏଇୟା ବୋଧେ ତୁମର ଶେଷ-ଇଚ୍ଛା...

।। ତେର ।।

# ରେଭେନ୍‌ସା : ପାଲା ଓ ସାଲେପୁର ମିଠା

ପାଠପଢ଼ାର ନୂତନ ପ୍ରଷ୍ଠ : ରେଭେନ୍‌ସା କଲେଜ ।

ନୂଆ ନୂଆ ବନ୍ଧୁ; ଅର୍ଥ ନୂଆ ଅନୁଭୂତି ।

ସତେରେ, ଏମ୍.ଏ. ପଢ଼ାର ସ୍ମୃତି ପୂରା ନିଆରା । ମୋ ସାଙ୍ଗରେ ଥିଲେ ପୁରୁଣା ବନ୍ଧୁ ନିଶାକର ପାଢ଼ୀ, ନୂଆ ନୂଆ ଆସିଲେ କବିବନ୍ଧୁ ନୀଳାଦ୍ରି ଭୂଷଣ ହରିଚନ୍ଦନ, ଗାଳ୍ପିକ ନାରାୟଣ ଚୌଧୁରୀ, କବି ଶଶିଭୂଷଣ ବିଶ୍ୱାଳ, ଏମିତି ବତିଶି ଜଣିଆ ଏକ ଟିମ୍ । ରେଭେନ୍‌ସା ଆର୍ଟସ ବ୍ଲକ୍ ସାମ୍ନାପଟ ତଳ ମହଲା ଛ'ନମ୍ବର କୋଠରୀରେ ହୁଏ ଆମ କ୍ଲାସ୍ । ଶଶିଭୂଷଣ କ୍ଲାସ ନ ହେଲାବେଳେ ବାରଣ୍ଡାରେ ଠିଆହେଇ ଆମକୁ କବିତା ଶୁଣାଏ– 'ଭାଇରେ ! ରେଭେନ୍ସା କଲେଜ ବାରଣ୍ଡା ଜୀବନର ଚଲାପଥ ଭଳି ଅନେକ ଲମ୍ବା'– 'ଉଁଚା ଉଚାଁ ଦେବଦାରୁ ଗଛ ଶତାବ୍ଦୀର ସ୍ୱପ୍ନକୁ ପୁଞ୍ଜିକରି ଦର୍ପୀୟାନ୍ ଭଙ୍ଗୀରେ ଠିଆ ହେଇଚି ଇତିହାସର ମୂକସାକ୍ଷୀ ହେଇ'– 'ସତେରେ ଏ ଅନୁଷ୍ଠାନ ପାଖରେ ଆମେ ସବୁ ପିମ୍ପୁଡ଼ିଠାରୁ ହୀନ; ପ୍ରଣାମ ହେ ରେଭେନ୍ସା... ! ତୁମକୁ ଆମର କୋଟି କୋଟି ପ୍ରଣାମ'–

ସେମିତି ନାରାୟଣ ଚୌଧୁରୀ ହାସ୍ୟକର ମଜାକଥା କହି ହସର ଖୋରାକ୍ ଜୁଟେଇବାରେ ଧୁରନ୍ଧର । ବିଶେଷକରି କ୍ଲାସ୍ ଚାଲିଥିଲାବେଳେ କେତେ ଜଣ ଶିକ୍ଷକଙ୍କ କ୍ଲାନ୍ତିଦାୟକ ପଢ଼ା ଶୈଳୀକୁ ସେ ନକଲ କରି ବେଶ୍ ମଜା କରେ । କ୍ଲାସର ସାମ୍ନା ବେଞ୍ଚରେ ମୁଁ, ନୀଳାଦ୍ରି ଓ ନାରାୟଣ ବସୁଥିଲୁ । ମଝିରେ ନୀଳାଦ୍ରି । ସେ ଭାରି ଦରହସା । ନାରାୟଣ ମଜା କଥା ଆରମ୍ଭ କରି ଚାପା ଗଳାରେ ମତେ ଶୁଣାଏ । ଗୋପାଳ ସାର୍ ଆମକୁ 'ସମର ତରଙ୍ଗ' ପଢ଼ାନ୍ତି । ତାଙ୍କ ପଢ଼ା ଶୈଳୀ ଆବୃତ୍ତି ଧର୍ମୀ । ତା'ଛଡ଼ା ସାର୍‌ଙ୍କର ପ୍ରାୟ ସବୁଦିନେ ଗୋଡ଼ ଫାଟେ । ସେ କ୍ଲାସରେ ଗୋଡ଼ରୁ ମଳା ଚମ ଛିଡ଼ାନ୍ତି । ସମର ତରଙ୍ଗର 'ମୁସଦି ମୁଷା ହେଲେ ବାହାର–

ଯେ' ପାଖରେ ତାଳଦେଇ ସେ ଚମ ଛିଡ଼ାନ୍ତି । ସାର 'ଯେ' କହିବା ପୂର୍ବରୁ ନାରାୟଣ ସେହି ଶୈଳୀରେ 'ଯେ' କହି ହସାଏ । ନୀଳାଦ୍ରି ହସ ଚାପି ଚାପି ଠିକ୍‌ବେଳକୁ ଏଭଳି ଏକ ବିସ୍ଫୋରକ ହସ ହସେ ଯେ, ତା' ହସ ଦେଖି ଶୁଣି ସାରା କ୍ଲାସ ହସି ଉଠନ୍ତି । ଗୋପାଳ ସାର୍‌ଙ୍କ ପାଠପଢ଼ା ବନ୍ଦ ହେଇଯାଏ । ତା'ପରେ ସାର୍‌ଙ୍କ ଗାଳି ହୁଏ ମୋ ଉପରେ, ନଚେତ୍ ନାରାୟଣ ଚୌଧୁରୀ ଉପରେ । ସେ କହନ୍ତି– ପାଠପଢ଼ା ମନକୁ ଆସୁ ନ ଥିବାରୁ ତମେ ଦିଟା କ'ଣ ଗୁଡ଼ାଏ କହି ସାରା କ୍ଲାସ୍‌କୁ ହସାଉଚ ? ଅସଲ କଥା, ଆମେ ଦି'ଜଣ ହସି ନ ଥିବାରୁ ସାର୍‌ଙ୍କ ଦୃଷ୍ଟିରେ ଆମେ ଦୋଷୀ ହେଉ ।

ରିସେସ୍ ବେଳେ କିମ୍ବା କ୍ଲାସ ନ ହେଉଥିଲାବେଳେ ଆମେ କେଇଜଣ ବରାବର ବଟୁଭାଇ ସେଉଗାଣ୍ଠିଆ ଦୋକାନକୁ ଚାଲିଯାଉଥିଲୁ । ସେଠି ଚା' ସହିତ ସେଉଗାଣ୍ଠିଆ ଖାଇ ଫେରୁଥିଲୁ । ଏବେ ଯେଉଁଠି ନେତାଜୀଙ୍କ ପ୍ରତିମୂର୍ତ୍ତି ରହିଚି ତାରି ପାଖକୁ ଲାଗିକରି ଥିଲା ବଟୁଭାଇଙ୍କ ଦୋକାନ । ସେଠି ଆଉ ସେ ଦୋକାନ ଏବେ ନାହିଁ । ତାହା ଥିଲା ରେଭେନ୍‌ସୀୟ ପିଲାଙ୍କର ଅଘୋଷିତ କ୍ୟାଣ୍ଟିନ୍ । ଅନେକ ପରିବର୍ତ୍ତନ ଆସିଗଲାଣି ଯା'ଭିତରେ । ରାସ୍ତାରେ ଡିଭାଇଡର ଲାଗିଲାଣି । ସେପଟ ଗେଟ୍‌ରେ ଚିରସ୍ଥାୟୀ ତାଲା ।

ରେଭେନ୍ସା ଏବେ ଏକକ ବିଶ୍ୱବିଦ୍ୟାଳୟ । ତା'ର ଶାନ୍ତ ମନୋରମ ବାତାବରଣ ଆଜି ବହୁ ସମୟରେ ଅଶାନ୍ତ ହେଉଚି । ପିଲାଙ୍କ ମନରେ ରେଭେନ୍‌ସାଭିଆନ୍ ବୋଲାଇବାର ଯେଉଁ ଗୌରବ ଓ ଉଷ୍ମତା ଆସୁଥିଲା ତାହା ଏବେ 'କଣଠେସା' ହେଇଯାଉଛି । ତଥାପି ରେଭେନ୍‌ସା, ଚିରକାଳ ରେଭେନ୍‌ସା । ମନେ ପଡୁଚି, ଦିନେ ରେଭେନ୍‌ସା ବାରଣ୍ଡାରେ ପ୍ରିନ୍‌ସିପାଲ ଯଦି ଚାଲିଯାଉଥିଲେ ପିଲାମାନେ ବାରଣ୍ଡା ତଳକୁ ଓହ୍ଲାଇ ଯାଉଥିଲେ । ଅଧ୍ୟାପକମାନଙ୍କର ମର୍ଯ୍ୟାଦା ମଧ୍ୟ ସେହିପରି ନିଆରା ଥିଲା । ସବୁଠିଁ ଥିଲା ଶ୍ରଦ୍ଧା ସମ୍ମାନର ବାତାବରଣ । କନିକା ଲାଇବ୍ରେରୀ ଥିଲା ନୀରବତାର ଅଞ୍ଚଳ । ଅଧ୍ୟୟନ ବା ପଠନର ଏକ ତପସ୍ୟା ସ୍ଥଳ । ଭୂତତ୍ତ୍ୱ ଓ ଭୂଗୋଳ ବିଭାଗ ପଛରେ ଥିଲା ମୁକ୍ତମଞ୍ଚ ଗ୍ୟାଲେରୀ । ପ୍ରତିବର୍ଷ ସେଠି ପାଲା କାର୍ଯ୍ୟକ୍ରମ ଆୟୋଜନ ହୁଏ । ପ୍ରତିଷ୍ଠିତ ପାଲାକାରମାନେ ଆସି ପାଲା ପରିବେଷଣ କରନ୍ତି । କଲେଜ ତରଫରୁ ପ୍ରିନ୍‌ସିପାଲ ସେମାନଙ୍କୁ ମାନପତ୍ର ଓ ଉପଢ଼ୌକନ ପ୍ରଦାନ କରିଥାନ୍ତି । ଅଧ୍ୟାପକ ଅଧ୍ୟାପିକା ଓ

ଛାତ୍ରଛାତ୍ରୀମାନେ ଓଡ଼ିଶାର ସେହି ପ୍ରାଚୀନ ଲୋକକଳାକୁ ମନଭରି ଉପଭୋଗ କରନ୍ତି ।

ଆମେ ପି.ଜି. ପଢ଼ିଲାବେଳେ ଗୋଟାଏ ନୂଆ ପରଂପରା ମୁଣ୍ଡ ଟେକିଲା । ଆମ ଉପର କ୍ଲାସର କୃଷ୍ଣଚନ୍ଦ୍ର ସାହୁ ଏବଂ ଆମ ସହପାଠୀ ନିରଞ୍ଜନ ପଣ୍ଡା ପାଲା ପରିବେଷଣ କରିବାକୁ ଆଗଭର ହେଲେ । ତାଙ୍କର ବାୟକ ଓ ପାଳିଆ ସେମାନେ ଆଗରୁ ତାଙ୍କ ଅଞ୍ଚଳରୁ ଯୋଗାଡ଼ କରିଥିଲେ । ଦୁଇଦିନ ପାଲା ହେଲା । ଦିନେ କୃଷ୍ଣଚନ୍ଦ୍ରଙ୍କର, ଆଉ ଦିନେ ନିରଞ୍ଜନର । ସେତେବେଳେ ପ୍ରିନ୍ସିପାଲ ଥିଲେ ଡଃ ରମାନାଥ ମହାନ୍ତି । ସେ ଗଣିତ ବିଶାରଦ ହେଲେ ବି ଅତ୍ୟନ୍ତ କାବ୍ୟ କଳାପ୍ରେମୀ ଥିଲେ । କଲେଜରେ କବିତା ପାଠୋତ୍ସବ ହେଲାବେଳେ ସେ ବରାବର ଭଞ୍ଜୀୟ ଶୈଳୀରେ କବିତା ଲେଖି ପାଠୋତ୍ସବରେ ଭାଗ ନିଅନ୍ତି । ପାଲା ହେଲେ ମୂଳରୁ ଚୂଳଯାଏ ବସିରହି ସେ ଉପଭୋଗ କରନ୍ତି । ଏଥର ପିଲାମାନେ ପାଲା ପରିବେଷଣ କରିବା କଥା ଶୁଣି ତାଙ୍କ ତରଫରୁ ଦୁଇଶହ ଟଙ୍କାର ରସଗୋଲା ଖାଇବାକୁ ଦିଆଯିବ ବୋଲି ସେ ଆଗତୁରା ଘୋଷଣା କରିଦେଲେ । ରସଗୋଲା ସାଲେପୁରର ବିକଳ କରଙ୍କ ଦୋକାନରୁ ହିଁ ଆସିବ । ତାହା ସେଇ ଅସଲି ମାଲ୍ ହେବା ଦରକାର ।

ନିରଞ୍ଜନ ଭଲ ପାଲା ପରିବେଷଣ କରେ– ଏ କଥା ପ୍ରିନ୍ସିପାଲଙ୍କ କାନରେ ବାଜି ସାରିଥାଏ । ସେଇଥିପାଇଁ ସେ ତାଙ୍କର ପ୍ରିୟ ଛାତ୍ର ପାଲଟି ଯାଇଥାଏ । ସେ କେତେବେଳେ ତାଙ୍କୁ କହି ଦେଇଥାଏ– ଆମ କ୍ଲାସର ରତ୍ନାକର ଚଇନି ସାଲେପୁରିଆ ପିଲା । ସେ ଗଲେ ସୁବିଧା ଦରରେ ଭଲ ଜିନିଷ ଆଣିପାରିବ । 'ସାର୍, ମୁଁ କହିଚି ବୋଲି ତାକୁ କହିବେ ନାହିଁ ।' ଆପଣ ତାକୁ ଡକେଇ ଆଣି ନିଜେ କହିଦିଅନ୍ତୁ । ସେ ଠିକ୍ ସମୟରେ ଜିନିଷ ଧରି ପହଞ୍ଚାଇ ଦେବ ।

ମତେ ପ୍ରିନ୍ସିପାଲଙ୍କ ଅଫିସ୍‌ରୁ ସାଙ୍ଗେସାଙ୍ଗେ ଡାକରା ଆସିଗଲା । ମୁଁ ଶଙ୍କିତ ହୋଇଗଲି । ଏଭଳି ଡକରା ସେକାଳରେ ଏକ ସ୍ୱାଭାବିକ କଥା ନ ଥିଲା । ପ୍ରିନ୍ସିପାଲଙ୍କ ଡାକରା ଅର୍ଥ ପିଲା ବିଷୟରେ କିଛି ଅଭିଯୋଗ ଅଛି; କିମ୍ବା ସେ କଲେଜ ନିୟମକାନୁନ୍ ଭାଙ୍ଗିଚି । ମୋ ମନରେ ସେଇ ଛନକା ପଶିଗଲା । ମୁଁ ତ ମୋ ଜାଣତରେ ଏଭଳି କିଛି ତ୍ରୁଟି କରିନାହିଁ । ପୁଣି ଭାବିଲି, ମୁଁ ଚାକିରି କରି ପାଠ ପଢୁଚି ବୋଲି ଏକଥା ବୋଧେ ପ୍ରିନ୍ସିପାଲ ଜାଣିପାରିଛନ୍ତି । ମାତ୍ର ମନରେ ଦମ୍ଭ

ଆଣିଲି– କଲେଜ ପରମିଶନ୍ କ'ଣ ଦରକାର; ଚାକିରି ଦେଲାବାଲା ତ ଅନୁମତି ଦେଇଛନ୍ତି । ଦେଖାଯାଉ, ମତେ କ'ଣ ପଚାରୁଛନ୍ତି ସେ ।

ପ୍ରିନ୍‌ସିପାଲଙ୍କ ଅର୍ଡ଼ର୍ଲି ପୋଲିସ ସିପାହୀ ଭଳି ମୋ ସାଙ୍ଗେସାଙ୍ଗେ ଥାଏ । ପ୍ରିନ୍‌ସିପାଲଙ୍କ ରୁମ୍ ଭିତରକୁ ପଶିବା ଇଏ ମୋର ପ୍ରଥମ ଅନୁଭୂତି; ମନରେ ଅହେତୁକ ଭୟ ଓ ଆଶଙ୍କା । ଆମେ ଦି'ଜଣ ରୁମ୍ ଭିତରେ ଠିଆ ହୋଇଥାଉ । ଡଃ ମହାନ୍ତି କ'ଣ ଗୋଟାଏ ଫାଇଲ୍ ପଢୁଥାନ୍ତି । ରୁମ୍ ଭିତରେ ନୀରବତା । ସାତ ଆଠ ମିନିଟ୍ ପରେ ସେ ମୁଣ୍ଡଟେକି ମୋ ଆଡ଼କୁ ଚାହିଁଲେ । ପଚାରିଲେ– 'କ'ଣ ହେଲା ?'

ମୁଁ କିଛି କହିବା ଆଗରୁ ଅର୍ଡ଼ର୍ଲିଟି କହିଲା– 'ସା'ବ ଡକେଇ ଥିଲେ' । 'ଇଏ ସେଇ ରତ୍ନାକର ଚଇନି'–

ପ୍ରିନ୍‌ସିପାଲ କାର୍ଯ୍ୟ ବ୍ୟସ୍ତତାରେ ଉଦ୍ଦେଶ୍ୟଟି ଭୁଲିଯାଇଥିଲେ । ଓ ହଁ...

ଏଥରକ ଡକାଇବାର କାରଣଟି ମନେପଡ଼ିଗଲା ।

ପଚାରିଲେ– ତୁମେ ସାଲେପୁରିଆ ପିଲା ?

ମୁଁ କହିଲି– ହଁ ସାର୍ ।

– ତୁମେ ମୋ ପାଇଁ କାମଟିଏ କରିବ । ଦେଖ, ଇଏ ମୋର ବ୍ୟକ୍ତିଗତ କାମ ହେଲେ ବି କିଛି ପରିମାଣରେ ତୁମ କଲେଜର । ପାଲା ପିଲାଏ ମିଠା ଖାଇବେ । ମୁଁ ଦୁଇଶହ ଟଙ୍କାର ସାଲେପୁର ମିଠା ମଗାଇବାକୁ ଚାହେ । ତୁମେ ସେଠିକା ପିଲା ବୋଲି ନିରଂଜନ ପଣ୍ଡା କହିଲେ । ଦେଖ, ତୁମକୁ ତା' ନାଁ ନ କହିବାକୁ ସେ ଅନୁରୋଧ କରିଥିଲେ । ମୋ ପାଟିରୁ ତ ବାହାରି ଗଲାଣି । ଏବେ ଆଉ କ'ଣ କରିବି ?

ମୁଁ କହିଲି, 'ମୁଁ ଯାଇ ମିଠା ନେଇ ଆସିବି ସାର୍ । କଲେଜ ପାଇଁ ଓ ଅଧ୍ୟକ୍ଷଙ୍କ ପାଇଁ କିଛି କାମ କରିବା ତ ଛାତ୍ରର ଗୌରବ । ମୁଁ ନିରଂଜନଙ୍କୁ ଏ ବିଷୟରେ କିଛି କହିବି ନାହିଁ । ତା'ଛଡ଼ା ସେ ମୋର ଜଣେ ଭଲ ବନ୍ଧୁ ।' ଏତକ କହି ମୁଁ ସାଲେପୁର ବାହାରିଗଲି ।

ଅଧ୍ୟକ୍ଷ ରମାନାଥ ମହାନ୍ତି ଜଣେ ସରଳ ଅମାୟିକ ବ୍ୟକ୍ତି । ଛାତ୍ରମାନଙ୍କୁ ନିଜ ପିଲାଭଳି ସେ ସ୍ନେହ କରୁଥିଲେ । ତାଙ୍କ ଅନୁରୋଧରେ ଆତ୍ମୀୟତା ଓ ଆନ୍ତରିକତା ପୂରି ରହିଥିଲା । ମୁଁ ଯାଇ ମାଛୁଆତିରେ ନାନୀ ଘରେ ପହଞ୍ଚି ଲକ୍ଷ୍ମୀଧର

ଭାଇନାଙ୍କୁ ସାଙ୍ଗରେ ଧରି ବିକଳ କରଙ୍କ ଦୋକାନକୁ ଗଲି । ଓଡ଼ିଶାର ସବୁଠୁଁ ବଡ଼ କଲେଜର ପ୍ରିନ୍‌ସିପାଲ୍ ମିଠା ବରାଦ କରିଛନ୍ତି ଶୁଣି ସେ ସୁଲଭ ଦରରେ ଦୁଇଟି ବଡ଼ ଟିଣରେ ରସଗୋଲା ପ୍ୟାକ୍ କରିଦେଲେ । କଲେଜରେ ସମସ୍ତେ ଖୁସି ହେଲେ ମିଠାଖାଇ । ପ୍ରିନ୍‌ସିପାଲଙ୍କ ଧାରଣା ହେଲା– କର ପରିବାର ବୋଧେ ମୋର ବନ୍ଧୁବାନ୍ଧବ । ନହେଲେ ଏତିକି ଟଙ୍କାରେ ଏତେ ମିଠା କେମିତି ସେ ଦେଲେ !

ସେଥରକର କଲେଜ ପାଲା ଓ ସାଲେପୁର ମିଠା–ଖିଆ ଚର୍ଚ୍ଚାର ବିଷୟ ହୋଇ ରହିଗଲା ଅନେକ କାଳ । ସାଙ୍ଗମାନେ ମତେ ସାଲେପୁରିଆ ମିଠା ବୋଲି ବରାବର କହୁଥିଲେ । ଦିନେ ନିରଂଜନ ଆସି ମତେ କହିଲା– 'ଭାଇ, ତୁ ଖୁସି ହଅ କି ଗାଳିଦେ– ତୋର ଏ ସାଲେପୁରିଆ ମିଠା ନାଁର ସୂତ୍ରଧର ହଉଚି ମୁଁ । ମତେ ଯାହା କହିବୁ କହ ।'

'ମୁଁ ଏକଥା ମୂଳରୁ ଜାଣିଥିଲି'– ମୁଁ କହିଲି ।

– ତତେ କିଏ କହିଲା ?

– ତୁ ଯାହାଙ୍କୁ ଏକଥା ନ କହିବାକୁ ଅନୁରୋଧ କରିଥିଲୁ ।

– ସତେରେ... ! ହଉ, ନିଜ ନାଁ ସହିତ ନିଜ ଅଞ୍ଚଳର କିମ୍ବା ନିଜ ରାଷ୍ଟ୍ରର ନାଁ ଯୋଡ଼ି ହେବା ଏକ ଗୌରବମୟ ପରଂପରା । ଦକ୍ଷିଣ ଭାରତରେ ଏ ପରଂପରା ଏବେବି ପ୍ରଚଳିତ ଅଛି । ମୁଁ ତତେ ସେଇ ପରଂପରାର ଭାଗୀଦାର କରେଇ ଦେଲି । ଏଥର ମତେ ଧନ୍ୟବାଦ ଦେ ।

ଦୁଇ ବନ୍ଧୁ ହସି ଉଠିଥିଲୁ ସେଦିନ ।

ମାତ୍ର ସାଲେପୁର ମିଠାର ସଂପର୍କ ମୋ ଜୀବନ ସହ ଅଛିଣ୍ଡା ସଂଯୋଗ ହେଇଗଲା । ଭାରତର ଯେଉଁ ଅଞ୍ଚଳକୁ ଯାଇଚି, ଓଡ଼ିଶା ନୁହେଁ, ବରଂ ଜଗନ୍ନାଥଙ୍କ ଦେଶର ଲୋକ ବୋଲି ମୋ ପରିଚୟ ଦିଆଯାଇଚି । ଓଡ଼ିଶାର ଯେଉଁ ଅଞ୍ଚଳରେ ମୋ ପରିଚୟ ଦିଆଯାଇଛି, ମୁଁ ସାଲେପୁର ମିଠା ଅଞ୍ଚଳର ଲୋକ ବୋଲି କୁହାଯାଇଛି । ତାହା ବୋଧେ ସବୁ ଅଞ୍ଚଳରେ ସହଜବୋଧ ହୋଇଛି ବୋଲି ମୋର ଧାରଣା ।

ନିଜ ଜନ୍ମମାଟିର ପରିଚୟରେ ପରିଚିତ ମୁଁ ।

କେଡ଼େ ଖୁସିର ଏ କଥା ।

ନିଜ ମାଟିର ମହକ ନିଆରା ।

ଦୂରରେ ଥିଲେ, ନିଜ ଜନ୍ମ ମାଟିରେ ଆସି ପାଦ ପକେଇଲା ମାତ୍ରେ, ଗୋଟିଏ ଅଲଗା ଅନୁଭବ ଆସେ । ସେ ଅନୁଭବ ସଂଚରିଯାଏ ସାରା ଦେହକୁ, ମନକୁ । ଅନେକ ଘଟଣା କୁଆଡୁ ଆସି ଯୋଡ଼ି ହୋଇଯାଆନ୍ତି ସ୍ମୃତିର ଇତିହାସ ସହିତ । ମନେହୁଏ, ଏସବୁ କଥା ଯେମିତି ଘଟିଯାଇଛି କାଆଲି ସକାଳେ । ମଣିଷ ପାଇଁ ଏଇଭଳି ଘଟଣା ରସ ଚିପୁଡ଼ି ଆନନ୍ଦ ଆଣିଦିଏ ।

ସ୍କୁଲରେ ପଢ଼ିଲାବେଳେ, ଆମେ ଯେତେଥର ଗାଁ–ମାଳ ଛାଡ଼ି ସାଲେପୁର ଆସୁ, ଫେରିଗଲା ପରେ, ଆମ ସାଙ୍ଗମାନଙ୍କ ପାଖରେ ନିଜକୁ ଖୁବ୍ ଉଚ୍ଚା ମନେକରୁ । ଧେତ୍, ଏଗୁଡ଼ାକ ନିହାତି ମଫସଲୀ ପିଲା । ବିଜୁଳି ଆଲୁଅ ଦେଖି ନାହାନ୍ତି, କି ବିକଳ କର ରସଗୋଲା ଖାଇ ନାହାଁନ୍ତି । ମୁଁ ଏସବୁ କେବଳ ଦେଖି ନାହିଁ, ଉପଭୋଗ କରି ଆସିଚି । କେଡ଼େ ତୋଫା ବିଜୁଳି ଆଲୁଅ ! ଅନ୍ଧାର ବିବାକ୍ ନାହିଁ ସେ ଅଞ୍ଚଳରେ । ତା' ଛଡ଼ା ବିକଳ କରଙ୍କ ଦୋକାନ କଥା ତ ନ କହିବା ଭଲ । ଗରମାଗରମ ବରା ସାଙ୍ଗରେ ଛଙ୍କା ଡାଲ୍‌ମା, ଆଃ ! ବାସନାରେ ପେଟ ପୂରିଯିବ । ତା'ପରେ ଅଣାକିଆ ରସଗୋଲା– ସତେ ଯେମିତି ଗୋଟାଏ ଲେଖାଁ ଛୋଟ ଫୁଟବଲ । ତା' ମଜା ନ ଖାଇଲେ ଜାଣିପାରିବନି । ସାଙ୍ଗମାନେ ମୋ ମୁହଁକୁ ଭକୁଆ ଭଳି ଚାହିଁ ରହି ଓଠ ଚାଟନ୍ତି ।

ପିଲାଦିନୁ ସାଲେପୁର ଓ ବିକଳ କର ରସଗୋଲା ମୋ ପାଇଁ ଏକ ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲା । ସପ୍ତମ ଶ୍ରେଣୀ କେନ୍ଦ୍ର ପରୀକ୍ଷା ବେଳେ, ପାଞ୍ଚଦିନ କାଳ ଏଠାରେ ରହି ବିଜୁଳି ଆଲୁଅ ଓ ବିକଳ କର ଦୋକାନର ମଜା ନିଖୁଣ ଭାବେ ଅନୁଭବ କରିଥିଲି । ସେତେବେଳକୁ ବିକଳ କର ଆମ ଅଞ୍ଚଳର ଜଣେ କିମ୍ବଦନ୍ତୀ ପୁରୁଷ ହୋଇସାରିଥିଲେ । ପ୍ରତିଦିନ ତାଙ୍କ ଦୋକାନରେ ଗ୍ରାହକଙ୍କ ଭିଡ଼ । ବସିବାକୁ ଟିକିଏ ରାହା ମିଳେନି । ଏହାର କାରଣ ନାନା ପ୍ରହେଳିକାର କାହାଣୀ ହୋଇ ସାରିଥାଏ ଲୋକମୁଖରେ । ତାନ୍ତ୍ରିକତା ବଳରେ ଏଭଳି କରାଯାଇଛି ବୋଲି କେହି କେହି କହନ୍ତି । ଗରାଖ ଏ ଦୋକାନ ଆଡ଼କୁ ଚାହିଁ ଦେଲାମାତ୍ରେ ଟାଣି ହୋଇ ଆସନ୍ତି । ଏସବୁ କଥା ଶୁଣିଲା ମାତ୍ରେ ମଣିଷ ତାଜୁବ ହୋଇଯାଏ ଓ ପାଟି ଅଣ୍ଟ ମେଲା ହୋଇରହିଯାଏ ।

ଆମେ ଶୁଣିଥିଲୁ, ସାଲେପୁର ବଜାରର ଦକ୍ଷିଣ ପୂର୍ବ କୋଣରେ ଏକ ରହସ୍ୟମୟ ବଗିଚା ଥିଲା । ପାଖରେ ଥିଲା ଶ୍ମଶାନ । ସେଠି ଜଣେ ଦିବ୍ୟ କାଳୀ

ସାଧକ ରହୁଥିଲେ । ରାତି କଥା ଛାଡ଼ନ୍ତୁ, ଦିନରେ ସେ ବଗିଚା ଭିତରକୁ ଯିବାପାଇଁ ଲୋକେ ଭୟ କରୁଥିଲେ । ବଗିଚାଟି ବେଶ୍ ବଡ଼ । ନାନା ଜାତିର ଫଳ ଫୁଲରେ ଭରପୂର । ପାଚିଲା ପିଜୁଳି, ସପେଟା, ସେଓ ଆଦି ସବୁଦିନେ ଲଦି ହୋଇଥାଏ ଗଛମାନଙ୍କରେ । ସାଧକ ରାମ କରଙ୍କ ଅନୁମତି ନ ନେଇ କେହି ଭିତରେ ପଶିବା ମନା । ଗଛ ମୂଳରେ, ଡାଳରେ ନରମୁଣ୍ଡମାଳ ସଜା ହୋଇଥାଏ । ଏକେ ତ ନିକାଞ୍ଚନ ଜାଗା । ଭୟ କାହା ମନକୁ ନ ଛୁଇଁବ ! ସାଧକ ରାମ କର ଭାରି ନାମଜାଦା । ଖୁବ୍ କମ କଥା କହନ୍ତି । ସେ ଯାହାକୁ ଯାହା କହନ୍ତି, ତାହା ସତ ହୋଇଯାଏ । ସେ ବିକଳ କରଙ୍କର ଶୁଭେଚ୍ଛୁ ଓ ସଂପର୍କରେ ବଡ଼ଭାଇ । ଶୁଣାଯାଏ, କରଙ୍କ ଦୋକାନରେ ଜମା ବିକ୍ରି ହେଉ ନ ଥିଲା । ପାଖ ଦୋକାନମାନଙ୍କରେ ଭାରି ଭିଡ଼ ହେଉଥିଲା । ମାତ୍ର ସେହି ସାଧକଙ୍କ ଦୟାରୁ ରାତାରାତି ସବୁ ବଦଳିଗଲା । ସେ ରାତିରେ ମନ୍ତ୍ରପାଠ କରି କିଛି ଗୋଟେ ଜିନିଷ ଦୋକାନ ଆଗରେ ପୋତି ଦେଲେ । ତା'ପରେ ସବୁ କିଛି ବଦଳିଗଲା ।

ପିଲାଦିନେ ଏଇଭଳି କିମ୍ବଦନ୍ତୀ ଶୁଣି ଆସିଥିଲି ବହୁବାର । ଏସବୁ କଥାକୁ ବିଶ୍ୱାସ କରି ନେଇଥିଲି କୌଣସି ଅବଲୁପ୍ତ ରାଜଉଆସର ହଜିଲା କାହାଣୀ ଭଳି । ତେବେ ଏକଥା ସତ, ବ୍ୟବସାୟ କରିବା ଓ ଲୋକଲୋଚନରେ ପ୍ରତିଷ୍ଠିତ ହେବାର ଏକ ଅସମ୍ଭବ ସଫଳତା ବିକଳ କରଙ୍କ ପଛରେ ଥିଲା । ଅନେକ ତ ବ୍ୟବସାୟ କରନ୍ତି । କେହି କେହି ଉଠିଯାଆନ୍ତି; କେହି କେହି ବୁଡ଼ି ଯାଆନ୍ତି । ମାତ୍ର ବ୍ୟବସାୟ କରିବାକୁ ଗଲାବେଳେ ବଜାରର ଚାହିଦା ଓ କଞ୍ଚାମାଲ ଉପଲବ୍ଧ ହେବାର ସୁବିଧାକୁ ଯିଏ ଲକ୍ଷ୍ୟ ରଖି କାର୍ଯ୍ୟ କରେ, ତାଆରି ତ କଚେ ପୁଅ ବାର୍ ହୁଏ । ବିକଳ କର ସେଇଭଳି ଜଣେ ଦିବ୍ୟଦୃଷ୍ଟି ସଂପନ୍ନ ବାଣିଜ୍ୟିକ ବ୍ୟକ୍ତି ଥିଲେ ।

ମୋ ହେତୁ ପାଇଲା ଦିନୁ, ମୁଁ ଶୁଣି ଆସିଚି ବିକଳ କରଙ୍କ ରସଗୋଲାର ପ୍ରସିଦ୍ଧି । କଟକ କେନ୍ଦ୍ରାପଡ଼ା ରାସ୍ତାର ଏକ ଗୁରୁତ୍ୱପୂର୍ଣ୍ଣ ଜାଗାରେ ଅବସ୍ଥିତ ସାଲେପୁର । ସେଇ ସାଲେପୁର ପେଣ୍ଠ ଜାଗାରେ ବିକଳ କରଙ୍କ ଖିରିମୋହନ ଦୋକାନ । ଲୋକେ ସେତେବେଳେ ରସଗୋଲା ଅପେକ୍ଷା ବେଶି ଖିରିମୋହନ ବୋଲି କହୁଥିଲେ । ଏବେ ଆଉ ଖିରିମୋହନ ଶବ୍ଦର ବେଶି ପ୍ରଚଳନ ନାହିଁ । ଦିଆସିଲି ଡବା ଭଳିଆ ଯୋଉ ଛୋଟ ଛୋଟ କୁଜୀ ବସ୍‌ମାନ ଏଇ ଲାଇନ୍‌ରେ ଯା'ଆସ କରୁଥିଲା, ତାହା ଲୋକଙ୍କୁ ବେଗଗାମୀ କରିପାରୁ ନ ଥିଲା । ଲୋକେ

ଏଠି ଅଟକି ଜଳଖିଆ ପତ୍ର ଖାଇ ପୁଣି ଯାତ୍ରା ଆରମ୍ଭ କରୁଥିଲେ । ଏଇ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ସ୍ଥାନ-କାଳ-ପାତ୍ର ସବୁକିଛିର ଅନେକ ପରିବର୍ତ୍ତନ ଆସିଗଲାଣି ।

ସେଦିନର ସାଲେପୁର ବଜାର ଆଜି ଆଉ ନାହିଁ । ରବିବାର ଓ ଗୁରୁବାରରେ ହେଉଥିଲା ହାଟପାଳି । ହାଟର ଭୂମିକା ଭାରି ଗୁରୁତ୍ୱପୂର୍ଣ୍ଣ ଥିଲା । ଆଜି ଅନେକ ପରିବର୍ତ୍ତନ । ବିକଳ କରଙ୍କ ଦୋକାନ ସାଲେପୁର ବଜାରର ପ୍ରମୁଖ ସ୍ଥାନ । ଏବେ ଆଉ ଅନେକ ଦୋକାନ ବଢ଼ିଛି । ଗ୍ରାହକ ହୁଏତ ବଢ଼ିଛନ୍ତି । ସାଲେପୁର ବାସିନ୍ଦା ନିଜର ପରିଚୟ ସହିତ ଆଉ ଏକ ପରିଚୟ ଯୋଡ଼ି ସାରିଛନ୍ତି । ଦିନେ ସାଲେପୁର ଭଗବତୀ ପୀଠ ଓ ଶାଳୀ ଅନ୍ନ ପାଇଁ ପ୍ରସିଦ୍ଧି ଲାଭ କରିଥିଲା ବୋଲି କବିମାନେ ଲେଖିଯାଇଛନ୍ତି । ଆଜି ସାଲେପୁରର ସେ ପରିଚୟ ହଜିଗଲାଣି । ସାଲେପୁରର ଆଧୁନିକ ପରିଚୟ ହେଉଚି- 'ବିକଳ କରଙ୍କ ରସଗୋଲା' ତିଆରି ଅଞ୍ଚଳ । ବିକଳ କର କିଏ, ତାଙ୍କ ପିତୃ ପିତାମହ କ'ଣ ଥିଲେ- ଏକଥା ଜାଣିବା ପାଇଁ ଏବେ ଲୋକେ ଆଗ୍ରହୀ ନୁହଁନ୍ତି । ନିଜ ନାଁକୁ ସୁଖ୍ୟାତ କରିପାରିଥିବା ଏହି ବ୍ୟକ୍ତି ବିଶେଷ ଆଜି ସ୍ମରଣୀୟ । ମଣିଷ ନିଜର ପରିଚୟକୁ ଯେତେବେଳେ ଗୋଟିଏ ଅନୁଷ୍ଠାନରେ ପରିଣତ କରିଦିଏ, ସେତେବେଳେ ସେ ଅମର ହୋଇଯାଏ । ବିକଳ କର କୌଣସି ବ୍ୟକ୍ତି ବିଶେଷର ଆଉ ନାମଟିଏ ମାତ୍ର ହୋଇ ରହି ନାହିଁ; ଏହା ଏକ ଅନୁଷ୍ଠାନର ନାମ । ବିକଳ କର ଜଣେ ସାଧାରଣ ମଣିଷରୁ ଅନୁଷ୍ଠାନରେ ପରିଣତ ହେବାପାଇଁ ପଚସ୍ତରୀ ବର୍ଷରୁ ଊର୍ଦ୍ଧ୍ୱ କାଳ ସାଧନା ଓ ସଂଗ୍ରାମ କରିଥିଲେ ।

ସେ ଯାହାହେଉ, ସାଲେପୁର ମିଠା ଯୋଗୁଁ କଲେଜ ଅଫିସ୍ କର୍ମଚାରୀ ଓ ସାଙ୍ଗମାନଙ୍କ ଭିତରେ ମୋର ଘନିଷ୍ଠତା ବଢ଼ିଗଲା । ଅବଶ୍ୟ ମୋର କେତେକ ଲେଖା ପ୍ରକାଶିତ ହୋଇ ସେତେବେଳକୁ ମତେ ପରିଚିତ ଜଗତ ଭିତରକୁ ନେଇସାରିଥିଲା ।

ବୋଧେ ପଞ୍ଚମ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କାଳ ମୋର ନିଜସ୍ୱ ପରିଚୟର ଭିତ୍ତିଭୂମି ପ୍ରସ୍ତୁତ କରିଥିଲା ।

।। ଚଉଦ ।।

# ରେଭେନ୍‌ସାରେ ଷଷ୍ଠ–ଚେତନା

ସେତେବେଳେ ଏମ୍.ଏ. ଫାଷ୍ଟ ପାର୍ଟ ପରୀକ୍ଷା ବାଧ୍ୟତାମୂଳକ ନ ଥିଲା । ଇଂରାଜୀ ଓଡ଼ିଆ ଆଦି ବିଷୟର ପିଲାମାନେ ପ୍ରାୟ କେହି ଫାଷ୍ଟ ପାର୍ଟ ପରୀକ୍ଷା ଦେଉ ନ ଥିଲେ । ଆଉ ଗୋଟାଏ ବର୍ଷ ପଢ଼ାପଢ଼ି ଭିତରେ ଚିନ୍ତାଧାରା ଅନେକ ପରିପକ୍ୱ ହେଇଯାଏ ବୋଲି ସମସ୍ତଙ୍କର ଧାରଣା । ମୋ ପାଇଁ କିନ୍ତୁ ସମସ୍ୟା ଥିଲା ଭିନ୍ନ । ଏକାଥରକେ ଟିକିଏ ଲମ୍ବା ଛୁଟି ନେଇ ପରୀକ୍ଷା ଦେବା ସୁବିଧା । କାରଣ ବିଶ୍ୱମ୍ଭର ବାବୁ ଡଃ ମହତାବଙ୍କୁ ପରୀକ୍ଷା ଛୁଟିକଥା ଥରକେ କହି ଅନୁମତି ନେଇନେବେ ।

ତେଣୁ ମୁଁ ଫାଷ୍ଟ ପାର୍ଟ ପରୀକ୍ଷା ଦେଲିନି ।

ମାତ୍ର ପଢ଼ାପଢ଼ି ରୀତିମତ ଚଳାଇଥାଏ । ସେତେବେଳକୁ ମୁଁ ରାଜାବଗିଚା ଲେବର କଲୋନୀ (କ୍ୱାଟର ନଂ. ସି/୩)ରେ ରହୁଥାଏ । ଏ ଘରଟି ବହୁ ଉଡ଼ା ଚଢ଼େଇଙ୍କ ବସାଘର ହୋଇସାରିଥାଏ । କବି ବ୍ରଜନାଥ ରଥ, ପ୍ରସନ୍ନ ପାଟଶାଣୀ, ସଦାଶିବ ଦାଶ, ଗୋପାଳକୃଷ୍ଣ ରଥ ଓ ବହୁ ଯୁବ ଲେଖକଙ୍କ ଏହା ଥିଲା ଆଡ୍ଡାସ୍ଥଳ । ମୋ ପାଖ କ୍ୱାଟର ନଂ. ସି/୪ ରେ ସପରିବାର ରହୁଥାନ୍ତି କବି ରବି ସିଂହ । ତାଙ୍କ ସ୍ତ୍ରୀ ବକୁଳ ଦିଦି ଭାରି ସ୍ନେହୀ ଓ ମେଳାପୀ । ମୋ ଘରର ଗୋଟିଏ ଚାବି ତାଙ୍କରି ପାଖରେ ଥାଏ । କିଏ ଗଲା–ଅଇଲାକୁ ଆଉ ଚାବି ପାଇଁ ଚିନ୍ତା କରିବାକୁ ପଡ଼େ ନାହିଁ ।

ମୋର ସହପାଠୀ ନିଶାକର ପାଢ଼ୀ ବରାବର ଆସି ଏଇଠି ରାତିବେଳା ପଢ଼ାପଢ଼ିରେ ମୋର ସାଙ୍ଗ ଦିଏ । ତେଣୁ ମୁଁ ଆଉ ରାତି ଖାଇବା ପାଇଁ ବାହାରକୁ ଯାଇପାରେନା । କଲୋନୀ ଗଡ଼ା ପାଖରେ ଗୋଟାଏ ଚା' ଜଳଖିଆ ଦୋକାନ ଥାଏ । ରାତି ଓଳି ସେ ରୁଟି ଭଜା କିମ୍ବା ରୁଟି ଦୁଧ ଛେନା ବିକେ । ମୋ ଖାଇବା

କାମ ସେଇଥିରେ ଚଳିଯାଏ । ଷଷ୍ଠ ବାର୍ଷିକ କ୍ଲାସ ଶେଷ ଆଡ଼କୁ ସେକ୍ ମତ୍‌ଲୁବ୍ ଅଲ୍ଲୀ ମଝିରେ ମଝିରେ ଆସି ସମୂହ ପଢ଼ା ଦଳରେ ଯୋଗ ଦେଉଥିଲେ । ଆମେ ପାଟିକରି ପଢୁ । ଯାହାର ଟିକେ ସମସ୍ୟା ଉପୁଜେ, ସେ ପଚାରିଲେ, ବୁଝିଥିବା ସାଙ୍ଗ ବୁଝାଇ ଦିଏ । ଏହା ଆମ ପାଇଁ ବେଶ୍ ଫଳପ୍ରଦ ହେଉଥିଲା ।

ରେଭେନ୍‌ସାରେ ପଞ୍ଚମ ବାର୍ଷିକ କ୍ଲାସ ଯେଡ଼େ ଆମୋଦପ୍ରଦ ପଢ଼ାବର୍ଷ ଥିଲା, ଷଷ୍ଠ ବାର୍ଷିକ ପଢ଼ାବର୍ଷର କ୍ଲାସ ସେତିକି ଜଟିଳ ହୋଇ ଉଠିଥିଲା । ଏହା ସ୍ପେଶାଲ ପେପରକୁ କେନ୍ଦ୍ରକରି ହୋଇଥିଲା । ଡଃ କୁଞ୍ଜବିହାରୀ ତ୍ରିପାଠୀ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ହୋଇ ବଦଳି ହୋଇଗଲେ । ଡଃ କୁଞ୍ଜବିହାରୀ ଦାଶ ପ୍ରଫେସର ଦାୟିତ୍ୱରେ ରହିଲେ । ପ୍ରଫେସର ଗୋଲୋକ ବିହାରୀ ଧଳ ଅବିଭାଜିତ ସଂସ୍କୃତ-ଓଡ଼ିଆ ବିଭାଗରୁ ଓଡ଼ିଆରେ ରହିବା ପାଇଁ ଆବେଦନ କରିଥିଲେ ମଧ୍ୟ ତାଙ୍କୁ ସଂସ୍କୃତ ବିଭାଗରେ ରଖା ଯାଇଥିଲା । ଏଥିପାଇଁ ସେ ଆଇନ ଅଦାଲତର ସାହାରା ନେଇଥିଲେ । କେଶ୍ ଚାଲୁଥିବାରୁ ତାଙ୍କୁ ଓଡ଼ିଆ କ୍ଲାସ ନେବା ପାଇଁ ସ୍ୱତନ୍ତ୍ର ଅନୁମତି ମିଳିଥିଲା ।

ଆମେ ଜାଣିଚେ, ମୁନି ଗୋଟିଏକୁ ମତ ଗୋଟିଏ, ଆଖଡ଼ା ଗୋଟିଏ । ଯେତେ ଜଣ ଶିକ୍ଷକ ପ୍ରାୟ ସେତିକିଟି ସ୍ପେଶାଲ ପେପର ହେଲା । ଡଃ କୁଞ୍ଜବିହାରୀ ଦାଶଙ୍କ ପଲ୍ଲୀଗୀତି, ଡଃ କାହ୍ନୁଚରଣ ମିଶ୍ରଙ୍କ ଧର୍ମଧାରା, ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ଗୀତିକବିତା, ଡଃ ଗୋପାଳଚନ୍ଦ୍ର ମିଶ୍ରଙ୍କ ଆଧୁନିକ ଓ ଗୋଲୋକ ବିହାରୀ ଧଳଙ୍କ ଧ୍ୱନିତତ୍ତ୍ୱ ସ୍ପେଶାଲ ପେପର୍ ରହିବା ସ୍ଥିର ହେଲା । କ୍ଲାସ ଆରମ୍ଭ ବେଳକୁ ପ୍ରାୟ ୨୫ ଜଣ ପିଲା ନେଇଥିଲେ ଧ୍ୱନିତତ୍ତ୍ୱ ସ୍ପେଶାଲ ପେପର୍ । ମୁଁ, ନୀଳାଦ୍ରି, ଉପେନ୍ଦ୍ର ଦଳେଇ ଆଦି କେତେଜଣ ପ୍ରଥମେ ଏହାକୁ ଏକ ନୂଆ ଜାଣିବାର ବିଷୟ ଭାବି ସ୍ପେଶାଲ ନେବାକୁ ସ୍ଥିର କରିଥିଲୁ । କେହି ଜଣେ କହିଦେଲା- ଏହା ସବୁଠୁଁ ଅଧିକ ମାର୍କ ମିଳିବା ବିଷୟ । ତେଣୁ ପିଲାଙ୍କ ଭିଡ଼ ବଢ଼ିଗଲା ।

ଦୁଇ ଚାରି ଦିନ ଭିତରେ ପୁଣି ପ୍ରଚାରିତ ହୋଇଗଲା, 'ଡଃ ଦାଶ ହେଲେ ପ୍ରଫେସର । ତାଙ୍କ ବିଷୟକୁ ସ୍ପେଶାଲ ନ ନେଲେ ଡିଭିଜନ ଭଲ ରହିବନି ।' ଫଳରେ ଦେଖାଗଲା ଅର୍ଦ୍ଧାଧିକ ପିଲା ପଲ୍ଲୀଗୀତି ସ୍ପେଶାଲ କ୍ଲାସକୁ ଚାଲିଗଲେ । ଡଃ ଦାଶ ଟିକେ ଉଚ୍ଚମନା ବ୍ୟକ୍ତି । ସେ ନିର୍ଣ୍ଣୟ ନେଇ କହିଲେ, ଯାହାର ଯେଉଁ

ବିଷୟରେ ଆଗ୍ରହ ସେ ସେଇ ବିଷୟ ନେଇ ପଢ଼ । ସବୁ ବିଷୟରେ କିଛି କିଛି ପିଲା ରହିବା ଭଲ ।

ଶେଷକୁ ଧ୍ୱନିତତ୍ତ୍ୱରେ ଆମେ ନୀଳାଦ୍ରି, ମୁଁ, ଉପେନ୍ଦ୍ର ଓ ଗୁଣନିଧି ରହିଲୁ । ଧର୍ମଧାରାରେ ଆଠ/ନଅ ଜଣ, ଆଧୁନିକରେ ତିନିଜଣ, ଗୀତିକବିତାରେ ଚାରିଜଣ ଏବଂ ଅବଶିଷ୍ଟ ନେଲେ ପଲ୍ଲୀଗୀତି । ନାରାୟଣ ଚୌଧୁରୀ ବୋଧେ ଆଧୁନିକ କିମ୍ବା ଗୀତି କବିତା ସ୍ପେଶାଲ ନେଇଥିଲା । କାରଣ ସେ ଅନ୍ୟମାନଙ୍କୁ ପରିହାସଧର୍ମୀ କମେଣ୍ଟ ମାରୁଥିଲା । ମତେ ସାକ୍ଷୀ କରି ସେ କହେ– ବୁଝିଲୁ, ମୁଁ ଡଃ ଦାଶଙ୍କ କ୍ଲାସ ବାଟେ ଗଲାବେଳେ ଶୁଣିଲି ଆମ ସାଙ୍ଗ ଶକୁନ୍ତଳା କାନ୍ଦଣା ଲହରୀ ବହି ଧରି ଆବୃତ୍ତି କରୁଛି । ତାଙ୍କୁ ଟପି କାହ୍ନୁ ସାରଙ୍କ କ୍ଲାସ ଆଗରେ ଗଲାବେଳେ ଆମ ସାଙ୍ଗ ବିଜୟ ପଟ୍ଟନାୟକ ଚିତ୍କାର କରୁଚି– ନାଦ, ବ୍ରହ୍ମ, ପିଣ୍ଡ ବ୍ରହ୍ମାଣ୍ଡ– ତା'ପରେ ଠୋ ଠା, ଫଟ୍‌ଫାଟ୍ ତାଳି । ପଛକୁ ଫେରି ପ୍ରଫେସର ଧଳଙ୍କ କ୍ଲାସରୁ ଶୁଣିଲି– ନୀଳାଦ୍ରି ସ୍ୱର– ଫ୍‌ଫ, ବ୍‌ବ, ଏଇ, ଅଉ–

ଏ ମନ୍ତବ୍ୟ ଶୁଣି ସବୁରି ମନରେ ପ୍ରତିକ୍ରିୟା ଉଠେ । ପୁଣି କିଛିଟା ତିକ୍ତ ଗୁଞ୍ଜରଣ । ପରେପରେ କିଛି ଦିନ ଅନ୍ତରରେ ଟିକିଏ ସ୍ଥିରତା ଆସିଯାଏ । ଏମିତି ଉଠ୍‌ପଡ୍ ସଂପର୍କର ଝଡ଼ ଭିତରେ ଷଷ୍ଠ ବାର୍ଷିକ ପାଠ–ବର୍ଷ ଗତି କରୁଥାଏ । ଫେବୃୟାରୀ କିମ୍ବା ମାର୍ଚ୍ଚ ମାସ ହେବ । ରେଭେନ୍‌ସା ସାହିତ୍ୟ ସଂସଦର ବସନ୍ତ ଉତ୍ସବ ହେବା ସ୍ଥିର ହେଲା । କବିତା ପାଠ, ଆଲୋଚନା ପର୍ବ ଓ କବି ମିଳନରେ ବସନ୍ତକୁ ସ୍ୱାଗତ କରାଯିବ । ଏଇ ଉଷ୍ଣତା ସମଗ୍ର କଲେଜ ବାତାବରଣକୁ ଚଳଚଞ୍ଚଳ କରି ଦେଉଥାଏ । ତେବେ ତାରି ଭିତରେ ଆଉ ଜଣକ ସ୍ମୃତି ମତେ ଭିନ୍ନମୁଖୀ କରିଦେଲା ।

ସେ ହେଲେ 'ମାତୃଭୂମି' ପତ୍ରିକାର ସଂପାଦକ ବିଚିତ୍ରାନନ୍ଦ କର ।

ମୋ ପାଇଁ ସେ ସ୍ମୃତିସଜଳ ।

ସ୍ମୃତିର ପୃଷ୍ଠାରେ ସେ ଚିର ଜୀବନ୍ତ । ଏଭଳି ତଟକା ବଞ୍ଚି ରହିବା ସମସ୍ତଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ମଣିଷ ଜନ୍ମ ହୁଏ, କର୍ମ କରେ, ସଂସାରରୁ ବିଦାୟ ନିଏ । ଜନ୍ମ ମୃତ୍ୟୁର ଗୋଲକ ଧନ୍ଦାରେ ପଡ଼ିବା ତ ଜୀବଧର୍ମ । ମାତ୍ର ସେଇଥିରୁ ଉତୁରିଯାଇ, ନିଜସ୍ୱ ଏକ ସ୍ୱତନ୍ତ୍ର ଧାରା ସୃଷ୍ଟି କରି, ଅନେକଙ୍କ ମନରେ ବହୁକାଳ ପାଇଁ ଜୀଇଁ ରହିବା ଏକ ଈଶ୍ୱର–ଦତ୍ତ କଳା । ସେଇଭଳି କଳାର ଅଧିକାରୀ ହୋଇପାରିଥିଲେ ଏଇ ବିଚିତ୍ରକର୍ମା ବ୍ୟକ୍ତି ବିଚିତ୍ରାନନ୍ଦ କର ।

ସେ ମୋର ସମବୟସ୍କ ନ ଥିଲେ; ପୁଣି ସମଧର୍ମା କହିଲେ ବି ଭୁଲ୍ ହେବ । ହଁ, ଏକଥା ସତ ଯେ, ସାହିତ୍ୟ ସଂଗଠନ ଓ ସାହିତ୍ୟ ସୃଷ୍ଟିରେ ଆମ ଉଭୟଙ୍କର କିଛିଟା ସାମଞ୍ଜସ୍ୟ ଥିଲା । ମାତ୍ର ସେ ବହୁ କ୍ଷେତ୍ରରେ ଥିଲେ ମୋ'ଠାରୁ ଉପର ପାହାଚର ବ୍ୟକ୍ତି ସତ୍ତାଟିଏ । ମୁଁ ତାଙ୍କୁ ସମ୍ମାନ ଦେଉଥିଲି; ସେ ମତେ ଶ୍ରଦ୍ଧା କରୁଥିଲେ । ଏହି ଶ୍ରଦ୍ଧା ଓ ସମ୍ମାନ ଭିତରେ ଆମ ଦୁହିଁଙ୍କର ନିବିଡ଼ ଆତ୍ମୀୟତା ଗଢ଼ିଉଠିଥିଲା । ଏକଥା ମୁଁ ବିଶେଷ ଭାବରେ ଅନୁଭବ କଲି ତାଙ୍କ ଅବର୍ତ୍ତମାନରେ । ସେ ଆମ ଗହଣରୁ ଦୂରେଇ ଗଲା ପରେ–

ହଁ, ପୁଣି କଲେଜ ପାଠ ପଢ଼ା ସହ ଯୋଡ଼ି ହୋଇଯାଉଛି । ମୁଁ ଏମ୍.ଏ. ପଢୁଥାଏ ଷଷ୍ଠ ବର୍ଷରେ । ସେତେବେଳେ ଡଃ କୁଞ୍ଜବିହାରୀ ଦାଶ ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତା ଥାନ୍ତି । ଆମେ କେତେଜଣ ବରାବର ଆସୁଥିଲୁ ସାହିତ୍ୟ-ସମାଜର ମିଟିଂକୁ । ଦିନେ ବିଚିତ୍ରାନନ୍ଦ କରଙ୍କ ସାଙ୍ଗରେ ସେଇଠି ମୋର ପରିଚୟ ହେଲା । ମୁଁ ତାଙ୍କୁ ଆଗରୁ ଚିହ୍ନିଥିଲି । ସେ ମୋ ନାଁ ସହିତ ପରିଚିତ ଥିଲେ ମଧ୍ୟ ମତେ ଭଲ ଭାବେ ଜାଣିନଥିଲେ । ଜାଣିବାର ସୁଯୋଗ ବି କେବେ ସୃଷ୍ଟି ହୋଇ ନ ଥିଲା । ଦିନେ ମୋ ପରିଚୟ ପାଇ ସେ କେବଳ ଖୁସି ହେଲେ ନାହିଁ; ମତେ ଉତ୍କଳ ସାହିତ୍ୟ ସମାଜର ସଭ୍ୟ ହେବାପାଇଁ ବାଧ୍ୟ କଲେ । ତାଙ୍କରି ପ୍ରେରଣା ଓ ଉତ୍ସାହ ଯୋଗୁଁ ମୁଁ ପ୍ରଥମେ ବାର୍ଷିକ ସଭ୍ୟ ହୋଇଥିଲି ସାହିତ୍ୟ ସମାଜର ।

ପ୍ରଥମରୁ ହିଁ ମୁଁ ତାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇଯାଇଥିଲି । ମିଷ୍ଟଭାଷୀ, ମିତବାକ୍, ହସହସ ମୁହଁ । ଧୋତି ପଞ୍ଜାବୀର ସଫେଦ୍ ବ୍ୟକ୍ତିତ୍ୱ । ବ୍ୟବହାର ମାର୍ଜିତ । କେତେ ପଦ କଥାରେ ଆପଣାର କରି ନେବାର ଭାବ । ମତେ ସେଦିନ ଆଶ୍ଚର୍ଯ୍ୟ ଲାଗିଲା, ପ୍ରଥମ ବାକ୍ୟାଳାପ ବେଳେ । ସେ ମତେ କହିଲେ– 'ଆପଣ ପରା ଆମରି ଅଞ୍ଚଳର ଲୋକ । ତେଣୁ ମୋର ଆପଣଙ୍କ ଉପରେ ଏକ ସ୍ୱତନ୍ତ୍ର ଅଧିକାର ଅଛି ।' ମୋ ବିଷୟରେ ସେ ଏତେ କଥା କେବେ ସଂଗ୍ରହ କରିଥିଲେ, ତାହା ମୁଁ ଜାଣିପାରି ନ ଥିଲି । ଭାବୁଥିଲି, ବୋଧହୁଏ ଜଣେ ଅନୁସନ୍ଧାନକାରୀ ସାମ୍ବାଦିକ ସେ । ତାଙ୍କ ମୁହଁରୁ ଏତେ କଥା ଶୁଣି, ମୁଁ ଭରସି କରି ପଚାରି ପାରିନଥିଲି– ଏ କଥା ଜାଣିଲେ କେମିତି ?

ଅନେକ ସଭାସମିତିରେ ତାଙ୍କୁ ଦେଖିଚି; ତାଙ୍କ ସହିତ ମିଶିଚି; ଆଳାପ କରିଚି; କିନ୍ତୁ ସାହସ କରି ଅଧିକ କିଛି ପଚାରି ପାରିନାହିଁ । କାରଣ ସେଇଦିନୁ

ମୋର କେମିତି ଗୋଟାଏ ଧାରଣା ହୋଇଯାଇଥିଲା ଯେ, ସେ ଆପଣାଛାଏଁ ବହୁ କଥା ଜାଣିପାରନ୍ତି । ଥରେ ବାଲିଯାତ୍ରା ଚାଲିଥିବା ସମୟରେ ମହାନଦୀ ବାଲିରେ ସାହିତ୍ୟ-ସମାଜର ଏକ ସଭା ହେଉଥିଲା । ବିଶିଷ୍ଟ ଆଇନଜ୍ଞ ମଧୁ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ନଗେନ୍ ବେଉରିଆ, ମୁରାରି ମୋହନ ଜେନା, ଉଦୟନାଥ ଷଡ଼ଙ୍ଗୀ ଆଦି ଅନେକ ଜଣାଶୁଣା ସାହିତ୍ୟିକଙ୍କ ମେଳଣ ହୋଇଥିଲା ସେଦିନ । ବିଚିତ୍ରାନନ୍ଦ କର ପ୍ରସ୍ତାବ ଦେଲେ- ଆଜିର ଏ ସାହିତ୍ୟ ସମାରୋହ ଟିକେ ଭିନ୍ନ ଧରଣର କରିବା । ଗୋଟାଏ ଗୁଡ଼ାଖୁ ଟିଣରେ ଗୁଡ଼ାଏ ବିଷୟର ନାମ ଲେଖା ହୋଇ ଚିରକୁଟ୍ ପଡ଼ିବ । ପ୍ରତ୍ୟେକ ଗୋଟାଏ ଲେଖା ଚିରକୁଟ୍ ଉଠାଇବେ । ଯାହାର ଚିରକୁଟ୍‌ରେ ଯେଉଁ ବିଷୟ ଲେଖାଥିବ, ସେଇ ବିଷୟରେ ସେ ପାଞ୍ଚ ମିନିଟ୍ କହିବେ ।

ସତରେ, ଭାରି ଆମୋଦଦାୟକ ହୋଇଥିଲା ସେ ଆଲୋଚନା ସଭା । ସମସ୍ତେ ହସିଖୁସି ମଜା କଲେ । ସମସ୍ତେ ନିଜ ନିଜର ମୁଖା ଖୋଲି ସେଠି ସେ ସାହିତ୍ୟ ଆସରରେ ଭାଗ ନେଲେ । ମୋର ମନେଅଛି, ସେଦିନ ସଂପାଦକ ବିଚିତ୍ରାନନ୍ଦ ବାବୁଙ୍କ ଯୁବସୁଲଭ ଉଦ୍ଦାମତା ଉଚ୍ଛୁଳି ଉଠିଥିଲା । ରାତି ସାଢ଼େ ଦଶଟାରେ ସେ ସଭା ସରିଥିଲେ ମଧ, ତାହା ଆଉ କିଛି ସମୟ ଚାଲିଥିଲେ ଆହୁରି ମଜା ହୋଇଥାଆନ୍ତା ବୋଲି ସେ ମତ ଦେଇଥିଲେ । ସେକାଳର ସାହିତ୍ୟ ସଭା ରସମୟ ହୋଇ ଉଠୁଥିଲା । ସାହିତ୍ୟିକ ସହୃଦୟତାରେ ପରିବେଶ ଓ ପରିସ୍ଥିତି ମଧୁର ହୋଇଯାଉଥିଲା । ଗୋଟାଏ ସଭାର ସ୍ମୃତି ଅନେକ ଦିନ ପର୍ଯ୍ୟନ୍ତ ଛାତିରେ ଚାପି ହୋଇ ରହିଯାଉଥିଲା । ବିଜ୍ଞାନ ଓ ବୈଷୟିକ କଳା ମଣିଷକୁ ଜଟିଳ ଓ ସ୍ୱାର୍ଥପର କରିବାର ତାହା ସମ୍ଭବତଃ ଥିଲା ସନ୍ଧିକ୍ଷଣ । ତା'ପରେ ସେ ଚେତନା କ୍ରମଶଃ ହଜି ହଜି ଗଲା ।

ତା'ପରେ କଲେଜରେ ଏଇ ଘଟଣା ।

ରେଭେନ୍‌ସା କଲେଜରେ ଏମ୍.ଏ. ପାଠପଢ଼ାର ଶେଷ ବର୍ଷ । ମୁଁ କଲେଜ ସାହିତ୍ୟ ସଂସଦର ସଂପାଦକ ନିର୍ବାଚିତ ହୋଇଥାଏ । ରାଧାମୋହନ ଗଡ଼ନାୟକ ଓ ବିନୋଦ ଚନ୍ଦ୍ର ନାୟକଙ୍କୁ ଡାକି ବସନ୍ତର କାବ୍ୟିକ ସନ୍ଧ୍ୟାର ଆୟୋଜନ କରିଥାଏ । ରେଭେନ୍‌ସା କଲେଜ ପି.ଏଲ୍.ଟି. ରେ ବସିବା ପାଇଁ ଟିକେ ହେଲେ ଜାଗା ନ ଥାଏ । ବାହାରେ ଦୁଇପଟ ବାରଣ୍ଡାରେ ବି ଭିଡ଼ । ଆଜି ବିସ୍ମୟ ମନେ ହେଉଚି,

ସାହିତ୍ୟ ପାଇଁ ଦିନେ କେତେ ଆଗ୍ରହ ଥିଲା । ଏବେ କୁଆଡ଼େ ଗଲା ସେ ଆଗ୍ରହ ! ଛାଡ଼ନ୍ତୁ, ସିଏ ଏକ ଭିନ୍ନ ସମସ୍ୟା । ସେ କଥା ଚିନ୍ତା କଲେ, ମୁଁ ହୁଏତ ମୂଳ କଥାରୁ ଦୂରେଇ ଯାଇପାରେ । ଜଣେ ବିବାହିତା ଭଦ୍ର ମହିଳା ଆସି ହସି ହସି ମତେ ନମସ୍କାର ଜଣାଇଲେ । ତାଙ୍କ ସାଙ୍ଗରେ ଆଉ କେତେଜଣ ଝିଅ ମଧ୍ୟ ଥିଲେ– ଯେଉଁମାନେ ପଞ୍ଚମ ବାର୍ଷିକ ଓଡ଼ିଆ ଏମ୍.ଏ. ପଢୁଥିଲେ । ସେମାନେ ବସିବା ସମସ୍ୟା କଥା କହିଲେ ।

ଏଇଠି କହି ରଖେ– ସେ ବିବାହିତା ମହିଳା ଜଣକ ଅନ୍ୟ କେହି ନୁହଁନ୍ତି– ଶ୍ରୀମତୀ ରମା କର । ସୁସାହିତ୍ୟିକ ବିଚିତ୍ରାନନ୍ଦ କରଙ୍କ ଧର୍ମପତ୍ନୀ । ମୁଁ କେତେଜଣ ଛାତ୍ରୀ ପ୍ରତିନିଧିଙ୍କୁ କହି ସେମାନଙ୍କର ବସିବାର ବନ୍ଦୋବସ୍ତ କରାଇଲା ବେଳେ ସେ କହିଥିଲେ– 'ମଲା, ତୁମମାନଙ୍କ ପାଇଁ ସେ ସିନା ସଂପାଦକ, ମୋ ପାଇଁ ସେ ପରା ଆମ ଗାଁ ଲୋକ ।' ସେଦିନ ପୁଣିଥରେ ଚମକ ଲାଗିଥିଲା ମୋ ମନରେ । ଏମାନେ ଏତେ କଥା ଜାଣୁଛନ୍ତି କେମିତି ? ମତେ ଅବଶ୍ୟ ଖୁସି ଲାଗିଥିଲା । ଆତ୍ମୀୟତା ଓ ଆପଣାର ଭାବରେ ମୁଁ ପୁଣିଥରେ ବାନ୍ଧି ହୋଇଯାଇଥିଲି । ତେବେ ଏ କଥାର ରହସ୍ୟ ମୁଁ ମୋଟେ ଜାଣିପାରି ନ ଥାନ୍ତି, ଯଦି ସ୍ୱୟଂ ବିଚିତ୍ରାନନ୍ଦ ବାବୁ ତାହା ଦିନେ ଉଦ୍‌ଘାଟନ କରି ନ ଥାନ୍ତେ । ତାହା ପୁଣି ଆକସ୍ମିକ ଭାବରେ ।

ଉଣେଇଶ ଛସ୍ତରି କିମ୍ବା ସତସ୍ତରି ମସିହା ।

ମୁଁ ସେତେବେଳେ ଥିଲି ଢେଙ୍କାନାଳ କଲେଜର ଅଧ୍ୟାପକ ।

ବିଚିତ୍ରାନନ୍ଦ ବାବୁ ଅନୁଗୁଳ କି ସମ୍ବଲପୁର ଯାଇଥିଲେ ।

ଫେରୁଥିଲେ କଟକ ।

ହଠାତ୍ ବାଟରେ ଅଟକିଗଲେ ମୋ ବସାଘରେ । କଲେଜରୁ ଘର ଠିକଣା ବୁଝି ସେଠି ପହଞ୍ଚି ଯାଇଥିଲେ । ସେତେବେଳକୁ ସନ୍ଧ୍ୟା ଆସନ୍ନ । ମୁଁ ଘରେ ଥାଏ । ତାଙ୍କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କ'ଣ ଖାଇବେ, କ'ଣ ପିଇବେ ବୋଲି ପଚାରିଲି । ସେ କହିଲେ– 'ଆଗ ପାଣି, ତା'ପରେ ଚା' । ତା'ପରେ ଆରମ୍ଭ କରିଦେଲେ ଆତ୍ମୀୟତାପୂର୍ଣ୍ଣ ଆଳାପ ।

'ଏଇ ବାଟେ ଫେରୁଥିଲି । ଭାବିଲି, ଟିକେ ଦେଖା କରିଦେଇ ଯିବା । ଅନେକ ଦିନ ହେଲା ସାକ୍ଷାତ୍ ହେଇ ନାହିଁ । ସୁଯୋଗ ଥାଇ, ନିଜ ଲୋକ ସଙ୍ଗେ ସାକ୍ଷାତ୍ ନ କଲେ, ଘଟଣାଟି କେମିତି ଗୋଟାଏ ଅଧାପନ୍ତରିଆ ଲାଗେ । ଦଶ

ପନ୍ଦର ମିନିଟ୍ ବିଶ୍ରାମ; କପେ ଚା' । ବାସ୍, କଟକ ଫେରିଯିବାରେ ଅସୁବିଧା କିଛି ନାହିଁ । ମତେ ପଚାରିଲେ– ଆଉ ଲେଖାଲେଖି କେମିତି ଚାଲିଚି ? ହଁ, ଗୋଟିଏ କଥା । ତମର 'ଉଭଟ ନାଟ୍ୟ ପରଂପରା' ବହିଟି ଖୁବ୍ ଭଲ ହେଇଚି । ଅନେକ ନୂଆ କଥା ଜାଣିବାକୁ ମିଳିଲା ସେଥିରୁ । ସେ ଆଲୋଚନା ବହିଟିକୁ ପଢ଼ିଲାବେଳେ ଗପ ବହି ପଢ଼ିଲା ଭଳି ମତେ ଲାଗିଲା । ସମାଲୋଚନାର ଏକ ନୂଆ ଶୈଳୀ, ସୁନ୍ଦର ଭାଷା । ସତରେ, ମୁଁ ଅଭିଭୂତ ହୋଇଗଲି ବହିଟିକୁ ପଢ଼ି । ସେ ବହି ପାଇଁ ଏଥରକ ତମକୁ ଏକାଡେମୀ ପୁରସ୍କାର ମିଳିବା ପ୍ରାୟ ନିଶ୍ଚିତ । ଆମେ କେତେଜଣ ସେ କମିଟିରେ ଅଛୁ । ତାକୁ ହିଁ ମନୋନୀତ କରିଚୁ; ଦେଖାଯାଉ ।

ମୁଁ ଜାଣିଥିଲି, ବିଚିତ୍ରାନନ୍ଦ ବାବୁ ସେତେବେଳେ ଏକାଡେମୀର କାର୍ଯ୍ୟକାରୀ ସଦସ୍ୟ ଥିଲେ । ତାଙ୍କର ପ୍ରଶଂସା ମୋତେ ଉତ୍ସାହିତ କରିଥିଲା । ସେ ବେଶି ଖୁସି ହୋଇ ଉଠୁଥିଲେ, ମୁଁ ତାଙ୍କ ଅଞ୍ଚଳର ଲୋକ ବୋଲି । ସେଇ ଆନନ୍ଦ ବିଭୋର ମୁହୂର୍ତ୍ତରେ ସେ କହିଥିଲେ– ଲେଖକ ନିଜ ବହିରେ କୌଣସି ନା କୌଣସି ଜାଗାରେ ନିଜ ପରିଚୟ ସଂକ୍ଷିପ୍ତ ଭାବରେ ହେଉ ପଛକେ, ଛାପି ଦେଇଥାଏ । ତା' ଫଳରେ ତାକୁ ଚିହ୍ନିବାକୁ ଏବଂ ଜାଣିବାକୁ ସହଜ ହୁଏ । ମୁଁ ତମର କେତୋଟି ବହିରୁ ଏଇ ପରିଚୟ ପାଇଥିଲି । ସେଇଥିରୁ ଜାଣିଥିଲି, ତମେ ଆମ ସାଲେପୁର ଅଞ୍ଚଳର ଲୋକ ।

ବୋକା ତିନିଥର ହସିବା ଭଳି ସେଦିନ ମୁଁ ହସିଥିଲି । ମୋରି ପାଖରୁ ମୋ ପରିଚୟ ସଂଗ୍ରହ କରି ସେ ମତେ ଆଜିଯାଏ ଚକିତ ତଥା ବିସ୍ମିତ କରି ଆସିଛନ୍ତି । ଅଥଚ ମୁଁ ତାଙ୍କୁ କେବେ ବି ପଚାରିବାକୁ ସାହସ କରି ନାହିଁ । ପଚାରି ନାହିଁ, ଏସବୁ ଜାଣିଲେ କେମିତି ? ସେଦିନ ସେ ଏ ରହସ୍ୟ ଖୋଲିଦେଲା ପରେ ମୋର ତାଙ୍କ ପ୍ରତି ସମ୍ମାନ ଅଧିକ ବଢ଼ିଗଲା । କାରଣ ସେ କୌଣସି ବହିକୁ ଉପର ଠାଉରିଆ ପଢୁ ନ ଥିବା ମୁଁ ଜାଣିଲି । ପାଠକୀୟ ଅନ୍ୱେଷା ତାଙ୍କ ବ୍ୟକ୍ତିତ୍ୱର ଏକ ଅଜଣା ପୃଷ୍ଠା, ଯାହା ଏବେ ମୋ ଆଗରେ ଖୋଲିଗଲା ।

ଉତ୍କଳ ସାହିତ୍ୟ ସମାଜର ସାଙ୍ଗଠନିକ ଦାୟିତ୍ୱ ନେଲାବେଳେ ସେ ଆମମାନଙ୍କର ମୁରବୀ ହୋଇଯାଉଥିଲେ । ନାନା କଥାରେ ମନ୍ତ୍ରଣା ଦେଉଥିଲେ, ଉଚିତ ଅନୁଚିତ କଥା କହୁଥିଲେ ଏବଂ କ'ଣ କରାଗଲେ ଭଲ ହେବ, ସେ ଉପଦେଶ ଦେଉଥିଲେ । ବହୁ ଅବାଞ୍ଛିତ ଲୋକ ସେ ସଂସ୍ଥା ଭିତରକୁ ନାଁ–ନେବା ଆଶାରେ

ପଶି ଆସିବାର ସୁଯୋଗ ଅଛି– ସେଥିପାଇଁ ସତର୍କ ହେବାକୁ ପଡ଼ିବ ବୋଲି ସେ କହୁଥିଲେ । ଉତ୍କଳ ସାହିତ୍ୟ ସମାଜର ଉତ୍ଥାନ ପତନର ସେ ଏକ ମୂକସାକ୍ଷୀ । ସେ ଥିଲେ ଜଣେ ଜାଗ୍ରତ ପ୍ରହରୀ । ପରେ ମୁଁ ଯେତେବେଳେ ଏକୁଟିଆ ମୁହୂର୍ତ୍ତରେ ସାହିତ୍ୟ ସମାଜରେ ବସୁଥିଲି, ମୋର ମନେ ହେଉଥିଲା ସେ ଯେମିତି ଧୋତି ପଞ୍ଜାବି ପରିଧାନ କରି ପଶି ଆସୁଛନ୍ତି ଧୀର ମୃଦୁ ଢଙ୍ଗରେ । କ'ଣ କେତେ କହି ଯାଉଛନ୍ତି, ହସୁଛନ୍ତି, ବୁଲୁଛନ୍ତି, ପୁଣି କୁଆଡ଼େ ଚାଲି ଯାଉଛନ୍ତି । ସାହିତ୍ୟ ସମାଜ ତାଙ୍କୁ ଛାଡ଼ି ନାହିଁ, ସାହିତ୍ୟ ସମାଜକୁ ମଧ୍ୟ ସେ ଛାଡ଼ି ନାହାନ୍ତି ।

'ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର... ।' ମୋର ଚେତନାର ସରହଦରେ ସେ ଏବେ ମଧ୍ୟ ଜୀବନ୍ତ ଅଛନ୍ତି– ଭବିଷ୍ୟତରେ ବୋଧହୁଏ ଏମିତି ରହିଥିବେ.....

।। ପନ୍ଦର ।।

# ବୃତ୍ତି : ବୃତ୍ତି ଘଟାନ୍ତର

ପାଠପଢ଼ାରେ ନିଷ୍ଠା ଓ ଏକାଗ୍ରତା କେମିତି ଦରକାର ପଡ଼େ ତାହା ଜାଣିଲି ଏମ୍.ଏ. ପରୀକ୍ଷା ବେଳେ । ସେ ସମୟରେ ନିଶାକର ପାଢ଼ୀ ଓ ମୁଁ ଏକା ଜାଗାରେ ଏକା ସମୟରେ ଦୁଇଟା ଚାବିଦିଆ କଣ୍ଢେଇ ପାଲଟି ଯାଉଥିଲୁ । ଆମ ଭିତରେ ସେତେବେଳେ ଏଭଳି ଗୋଟେ ଆତ୍ମବିଶ୍ୱାସ ଆସିଯାଇଥିଲା ଯେ– ଏମିତି କିଛି ବିଷୟ ଆମ ପାଠ୍ୟ–ଖସଡ଼ାରେ ନାହିଁ, ଯେଉଁଥିରୁ ପ୍ରଶ୍ନ ପଡ଼ିଲେ ଆମେ ତାହାର ଉତ୍ତର ଲେଖିପାରିବୁ ନାହିଁ । ନିଶାକର ଆଉ ପାହାଚେ ଆଗକୁ ଯାଇ କହୁଥିଲା– ଚଇନି ଦା’, ଦେଖିବ ୟୁନିଭରସିଟି ରେଜଲ୍ଟ ତାଲିକାରେ ଆମ ଦି’ଜଣଙ୍କ ନାଁ ପାଖାପାଖି ହେଇ ରହିବ ।

ନିଶାକରଙ୍କ କଥା ସତ ହେଇଥିଲା ।

ସେତେବେଳେ ସମଗ୍ର ଓଡ଼ିଶାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଏକମାତ୍ର ଉଚ୍ଚତର ଶିକ୍ଷା କେନ୍ଦ୍ର ଥିଲା । ପୁଣି ଓଡ଼ିଶାରେ ରେଭେନ୍‌ସା କଲେଜରେ ହିଁ କେବଳ ଓଡ଼ିଆ ଏମ୍.ଏ. ପାଠ ପଢ଼ା ଯାଉଥିଲା । ସେଥିରେ ଫାଷ୍ଟ କ୍ଲାସଟିଏ ପାଇବା ଭାରି କଷ୍ଟସାଧ୍ୟ ବ୍ୟାପାର ଥିଲା । ତା’ଛଡ଼ା ଆମେ କେଇଟା ଗୋଷ୍ଠୀଛଡ଼ା ହେଇ ଗୋଲୋକ ବିହାରୀ ଧଳଙ୍କ ଧ୍ୱନିତତ୍ତ୍ୱ ପଢୁଥିଲୁ । ଏଣୁ ଆମର କପାଳ ଫଟା ବୋଲି ସାଙ୍ଗମାନେ ବହୁ ଆଗରୁ ଆମକୁ କହିସାରିଥିଲେ । ଅତଏବ ଫାଷ୍ଟ କ୍ଲାସ ପାଇବା ଦିବାସ୍ୱପ୍ନ ମନେ ହେଉଥିଲା । କିନ୍ତୁ ଗୋଟିଏ କଥାରେ ମନକୁ ପରମ ସନ୍ତୋଷ ଆସୁଥିଲା । ତାହା ହେଲା– ଧଳ ସାର୍‌ଙ୍କ ପାଖରେ ପାଠ ପଢ଼ି ନ ଥିଲେ ଜୀବନରେ ବଡ଼ ଅବସୋସ ରହି ଯାଇଥାଆନ୍ତା । ଚମତ୍କାର ପଢ଼ା ଶୈଳୀ । ଥରେ ତାଙ୍କ ମୁହଁରୁ ପାଠ ଶୁଣିଲେ ସବୁ କିଛି ମନରେ ଛାପିହୋଇ ରହିଯାଏ । ଓଜନିଆ ତତ୍ତ୍ୱକୁ ସହଜ ଲଳିତ ଆକର୍ଷଣୀୟ ଢଙ୍ଗରେ ସେ ବୁଝାଇ କହନ୍ତି ।

ପରୀକ୍ଷା ସରିବାର ସାଢ଼େ ତିନିମାସ ପରେ ଫଳ ବାହାରିଲା । ଆମରି ବର୍ଷ ରେକର୍ଡ ପରିମାଣର ଫାଷ୍ଟ କ୍ଲାସ ମିଳିଲା । ଚାରିଜଣ ଆମେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲୁ । ନିଶାକର ସେକେଣ୍ଡ କ୍ଲାସ ଫାଷ୍ଟ ହୋଇଥିଲା । ସବୁଠୁଁ ଚମକପ୍ରଦ କଥା ଥିଲା- ସରକାରୀ କଲେଜରେ ୧୯ଟି ଓଡ଼ିଆ ଅଧ୍ୟାପକ ପଦବୀ ଖାଲି ଥିଲା ଏବଂ ପ୍ରାଇଭେଟ କଲେଜରେ ୩୪ ରୁ ଅଧିକ ପଦବୀ ଖାଲି ଥିଲା । ତେଣୁ ଯିଏ ଯୋଉଠି ଚାହିଲା ସେଠି ରହିଲା । ଆମେ କେତେଜଣ ଡିପିଆଇଙ୍କ ନିର୍ଦ୍ଦେଶରେ ଦଶଦିନ ଭିତରେ ସରକାରୀ କଲେଜରେ ଆଡ୍‌ହକ ଭାବରେ ଯୋଗ ଦେବାକୁ ବାଧ୍ୟ ହେଲୁ । ନୀଳାଦ୍ରି ରେଭେନ୍ସାରେ, ନିରଞ୍ଜନ ସମ୍ବଲପୁରରେ, ମତେ ବଲାଙ୍ଗିରରେ ଏବଂ ଗଦାଧର ନାଥ ଏନ୍.ସି. କଲେଜରେ ଯୋଗ ଦେବାକୁ ନିର୍ଦ୍ଦେଶ ପାଇଥିଲୁ ।

ହାତରେ ସମୟ ଖୁବ୍ କମ୍ ଥିଲା ।

ସିଡ଼ିଏମ୍‌ଓଙ୍କ ସ୍ୱାସ୍ଥ୍ୟଗତ ସାର୍ଟିଫିକେଟ୍, ପୋଲିସ ରେକର୍ଡ ଏବଂ ନିଜର ଜିନିଷପତ୍ର ସଜିଲ କରି ବାହାରିବାକୁ ପଡ଼ିବ । ତା'ଛଡ଼ା ଭଦ୍ରାମି ଦୃଷ୍ଟିରୁ 'ପ୍ରଜାତନ୍ତ୍ର'ରେ ବିଶ୍ୱମ୍ଭର ବାବୁ ଓ ମହତାବଜୀଙ୍କୁ ଏକଥା ଜଣାଇ ଅନୁମତି ନେବା ଆବଶ୍ୟକ । କେମିତି ଗୋଟାଏ ଅଶ୍ୱସ୍ତିକର ପରିସ୍ଥିତି । ବିଶ୍ୱମ୍ଭର ବାବୁଙ୍କୁ ପ୍ରଥମେ ଏକଥା କହିଲି । ସେ ମୋଟେ ବିଶ୍ୱାସ କଲେନି । ମୁଁ ସରକାରୀ ଚିଠି ଦେଖାଇଲି । ଏଥର ସେ ଗମ୍ଭୀର ହୋଇଗଲେ ।

ଅନେକ ଦିନ ଧରି 'ପ୍ରଜାତନ୍ତ୍ର' ପରିବାରର ମୁଁ ଜଣେ ସଭ୍ୟ ହେଇଯାଇଥିଲି । 'ପ୍ରଜାତନ୍ତ୍ର'ର ସୁଖ ଦୁଃଖରେ ମୁଁ ଭାଗିଦାର ଥିଲି । 'ପ୍ରଜାତନ୍ତ୍ର' ଛାଡ଼ିଲା ବେଳକୁ ଭାରି ମନ ଦୁଃଖ ହେଉଥିଲା । ନିଜ ଘର ଛାଡ଼ି ଆଉ କୁଆଡ଼େ ଗଲା ଭଳି ମତେ ଲାଗୁଥିଲା । ୧୯୬୯ ମସିହା ନଭେମ୍ବର ମାସ ଶେଷ ସପ୍ତାହ । ହଠାତ୍ ମହତାବଜୀ ମତେ ଡକେଇ ପଠେଇଲେ ତାଙ୍କ ବୈଠକ ଜାଗାକୁ । ମତେ ପଚାରିଲେ- 'ହଇହୋ ରତ୍ନାକର ! ଶୁଣିଲି, ତମେ 'ପ୍ରଜାତନ୍ତ୍ର' ଛାଡ଼ିବାକୁ ନିଷ୍ପତ୍ତି ନେଇଗଲଣି । ଏକଥା କ'ଣ ସତ ?'

-ହଁ... । ଧୀର ସ୍ୱରରେ କହିଲି ।

ମହତାବଜୀ ତାଙ୍କ ସ୍ୱଭାବ ସୁଲଭ ଗମ୍ଭୀର ସ୍ୱରରେ କହିଲେ- ଶୁଣ, ତମେ ଏବେ ଯୁବକ । ଗୋଟାଏ ନିଷ୍ପତ୍ତି ନେବା ପୂର୍ବରୁ ଆଗପଛ ଭଲ ଭାବରେ ବିଚାର କରି ଭାବିବା ଉଚିତ । ଅଧ୍ୟାପକ ବୃତ୍ତି ଖରାପ ବୋଲି ମୁଁ କହୁନି; ସେଠି ସମ୍ମାନ

ଅଛି– ମର୍ଯ୍ୟାଦା ଅଛି । କିନ୍ତୁ ଏଠି ସମ୍ବାଦପତ୍ର ସହିତ ଜଡ଼ିତ ହୋଇ ରହିବାରେ ବି ଗୋଟାଏ ଗୌରବ ଅଛି । ତମେ ଭଲ ଭାବେ ବିଚାର କରି ଦେଖ ।

ମୁଁ ବିନମ୍ରତା ସହ କହିଲି– ନାଇଁ, ମୋ ଜୀବନରେ, ମନୋଜ ଦାସ, ପଠାଣି ପଟ୍ଟନାୟକ କିମ୍ବା ଗୋଲୋକ ବିହାରୀ ଧଳଙ୍କ ଭଳି ଜଣେ ଭଲ ଅଧ୍ୟାପକ ହେବାର ମୋହ ଖୁବ୍ ବେଶି । ଧନ କି ସମ୍ମାନ ପାଇଁ ମୁଁ ବ୍ୟାକୁଳ ନୁହେଁ । ମତେ ସେମାନଙ୍କ ଆଦର୍ଶ ଆକର୍ଷଣ କରୁଛି । ଆପଣ ଆଶୀର୍ବାଦ କରନ୍ତୁ; ସେଥିରେ ମୁଁ ଯେମିତି ସଫଳ ହୁଏ ।

ଭାରି ଖୁସି ହୋଇଗଲେ ସେ । କେତେବେଳେ ତାଆରି ଭିତରେ ସେ କଫି ମଗାଇ ସାରିଥିଲେ । ଆମେ ବସି କଫି ପିଇଲୁ । ନୀରବତା ଭାଙ୍ଗି ସେ କହିଲେ– ଭାରି ଖୁସିର କଥା, ତମେ ତମ ଜୀବନର ଗୋଟାଏ ଲକ୍ଷ୍ୟ ସ୍ଥିର କରି ନେଇଚ । କଥା କ'ଣ କି, ୟା' ଫଳରେ ତମ ଜୀବନରେ ଆଉ ଅବସୋସ ରହିବ ନାହିଁ– ଏଇୟା ହେଇପାରିଥାନ୍ତି; ଭୁଲ ନିଷ୍ପତ୍ତି ଯୋଗୁଁ ଏଇୟା ହେଲି । ଗୋଟିଏ କଥା ମନେରଖିବ; ଯୋଉ ମାଟିରେ ଠିଆହୋଇ ମଣିଷ ହେଇଚ, ଜୀବନରେ ତାକୁ କେବେ ଭୁଲିବ ନାହିଁ । ଆମ ସମାଜରେ ବର୍ତ୍ତମାନ ଏଇ ବ୍ୟାଧି ବେଶି ଦେଖାଯାଉଚି । ଆଉ କାହା କଥା କ'ଣ କହିବା– ଲୋକେ ପରା ନିଜ ବାପ–ମାଆଙ୍କ ଅବଦାନକୁ ବି ଭୁଲି ଯାଉଚନ୍ତି ।

ମୁଁ ପୁଣି ଥରେ ଅନୁନୟ ଭଙ୍ଗୀରେ କହିଲି– ଈଶ୍ୱର କରନ୍ତୁ, ମୁଁ ଜୀବନରେ ଯେମିତି କୃତଘ୍ନ ନ ହୁଏ ।

'ପ୍ରଜାତନ୍ତ୍ର' ଛାଡ଼ିଲି ।

ତା'ପରେ ଯେତେଥର କଟକ ଆସିଚି, ନିଶ୍ଚିତ ଭାବରେ 'ପ୍ରଜାତନ୍ତ୍ର' ଯାଇଛି । ଡଃ ମହତାବ ଉପସ୍ଥିତ ଥିଲେ, ତାଙ୍କ ସହିତ ସାକ୍ଷାତ କରିଚି; ମଜଲିସ ଆଲୋଚନାରେ ଭାଗ ନେଇଚି । ପ୍ରଜାତନ୍ତ୍ର ପରିବାର ସହିତ ପିକ୍‌ନିକ୍‌ରେ ଯାଇଚି । ଭୋଜି ଭାତରେ ଯୋଗ ଦେଇଚି । ବିଷୁବ ମିଳନରେ ଯୋଗଦେବା ତ ଏକ ବାଧ୍ୟତାମୂଳକ ବିଷୟ ।

କିନ୍ତୁ ଦିନେ ଏମିତି ଗୋଟାଏ ସମୟ ଆସିଲା– ବୋଧହୁଏ ମତେ କୃତଘ୍ନ ହେବାକୁ ପଡ଼ିଲା ।

ଠିକ୍ କୃତଘ୍ନ ବୋଲି ମୁଁ ନିଜକୁ ଦୋଷ ଦଉନି; ତେବେ ମତେ ସେତେବେଳେ ସେମିତି ଲାଗିଥିଲା । ଅନେକ ଦିନ ଧରି ସେକଥା ମୁଁ ଭାବି ହେଇଥିଲି ।

ପୁରୀଠାରେ 'ନ୍ୟାସନାଲ ବୁକ୍ ଟ୍ରଷ୍ଟ' ତରଫରୁ ଏକ ଦୁଇ ଦିନିଆ ସେମିନାର ହେଉଥିଲା । ସେଥିରେ ମତେ ଅଂଶଗ୍ରହଣ କରିବାକୁ ନିମନ୍ତ୍ରଣ ଥିଲା । ଏହି କର୍ମଶାଳାର ବିଷୟବସ୍ତୁ ଲେଖକ ଓ ପ୍ରକାଶକଙ୍କ ସମସ୍ୟାଭିତ୍ତିକ ଥିଲା । ସୁସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ସେଥିରେ ସଭାପତିତ୍ୱ କରୁଥିଲେ । ଡଃ ମହତାବ ଥିଲେ ଉଦ୍‌ଘାଟକ ଅତିଥି ।

ସେଇ ଅଧିବେଶନରେ ଗ୍ରନ୍ଥମନ୍ଦିରର ପ୍ରକାଶକ ଶ୍ରୀଧର ମହାପାତ୍ର ଗୋଟିଏ ଭିତ୍ତି ପ୍ରବନ୍ଧ ପାଠ କରିଥିଲେ । ସେଥିରେ ସେ ପ୍ରକାଶକଙ୍କ ସମସ୍ୟା ଉତ୍ଥାପନ କରିବା ସଙ୍ଗେସଙ୍ଗେ ବହି ଛାପାରେ ବିଶେଷ ଲାଭ ହେଉ ନ ଥିବା କଥା ଉଲ୍ଲେଖ କରିଥିଲେ । ପ୍ରବନ୍ଧଟି ତଥ୍ୟାତ୍ମକ କରିବାକୁ ସେ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ । ଗୋଟିଏ ଡିମେଇ ଫର୍ମା ଛାପିଲେ ଦୁଇ ନୂଆ ପଇସା ଲାଭ ହେଉଚି ବୋଲି ଶୁଣି ଡକ୍ଟର ମହତାବ ଆଶ୍ଚର୍ଯ୍ୟ ହେଇ ଯାଇଥିଲେ ।

ସେ ତାଙ୍କ ଅଭିଭାଷଣରେ ଏହି ପ୍ରସଙ୍ଗ ଉଲ୍ଲେଖ କରି କହିଲେ- 'ଓହୋ-ହୋ ! ଓଡ଼ିଶାର ପ୍ରକାଶକମାନେ ଏଭଳି କଷ୍ଟରେ ପ୍ରକାଶନ କାର୍ଯ୍ୟ ଚାଲୁ ରଖିଛନ୍ତି ନା ! ଆରେ, ସେଇଥିପାଇଁ ମୋ ପ୍ରକାଶକ ମୋତେ ଅନେକ ବର୍ଷ ଧରି ରୟାଲଟି ଦେଇପାରୁ ନାହାନ୍ତି । ଏଥିରେ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ବିକାଶ ହେବ କିଭଳି ? ଏହା ଏକ ଚିନ୍ତାର ବିଷୟ ।'

ମହତାବଜୀଙ୍କ ଏଭଳି ମନ୍ତବ୍ୟ ସମବେତ ଲେଖକମାନଙ୍କ ମନରେ ହତାଶା ସୃଷ୍ଟି କଲା । ନିଜେ ସୁରେନ୍ଦ୍ର ମହାନ୍ତି ମତେ ଡାକି ଧୀର ସ୍ୱରରେ କହିଲେ- ରତ୍ନାକର ! ମହତାବଙ୍କ କଥାକୁ ଏଠି କେହି ଖଣ୍ଡନ କରିବେ ନାହିଁ । ଏକଥା ଭୁଲ୍ ବୋଲି ଜାଣି ମଧ୍ୟ କେହି ସ୍ୱର ଖୋଲିବେ ନାହିଁ ? ତମେ ତ ସତ କଥା କ'ଣ, ଜାଣିଚ । ଏ ବିଷୟରେ ତମେ ଆଗ କୁହ । ନ ହେଲେ ଏ ସଭାର ଉଦ୍ଦେଶ୍ୟ ବିଫଳ ହୋଇଯିବ । ମୁଁ ତମକୁ ଆଗ ଡାକିବି ।

ମୁଁ କହିବାକୁ ରାଜି ହେଲି ସତ; କିନ୍ତୁ ମହତାବଜୀଙ୍କ କଥାକୁ ଖଣ୍ଡନ କରିବା ପାଇଁ ମନରେ ଦ୍ୱିଧା ଆସିଲା । କ'ଣ କରିବି, କିଛି ଭାବିପାରୁ ନ ଥାଏ । ଶେଷରେ ସଭାପତିଙ୍କ ଡକରା ପଡ଼ିଲା । କହିବାକୁ ଯାଇ ଠିଆହେଲି । ମୁଁ କହିଲି- ଡଃ ମହତାବ ଜଣେ ସାହିତ୍ୟିକ ହୋଇପାରନ୍ତି; ମାତ୍ର ବସ୍ତୁତଃ ସେ ଜଣେ ରାଜନୀତିକ ବ୍ୟକ୍ତି । ପ୍ରକାଶକଙ୍କ ପ୍ରଦତ୍ତ ତଥ୍ୟକୁ ସେ ଆଖିବୁଜି ଗ୍ରହଣ କରିନେଲେ, ଯେମିତି

ମନ୍ତ୍ରୀମାନେ ତାଙ୍କ ସେକ୍ରେଟାରୀଙ୍କ ଉପସ୍ଥାପିତ ତଥ୍ୟକୁ ମୋଟାମୋଟି ଭାବେ ଗ୍ରହଣ କରିନେଇ ଥାଆନ୍ତି । ଅସଲ କଥା, ସେଥିରେ ସତ୍ୟତା କେତେ ଥାଏ, ଜଣାପଡ଼େ ନାହିଁ । ଠିକ୍ ଏଇ ଆଲୋଚ୍ୟ ପ୍ରବନ୍ଧରେ ପ୍ରକାଶକଙ୍କ ତଥ୍ୟ ଭଳି–

ତା'ପରେ ଅନେକ ତଥ୍ୟ ଦେଇ ମୁଁ ସତ୍ୟ ବାଢ଼ିଥିଲି ।

ସୁରେନ୍ଦ୍ର ମହାନ୍ତିଙ୍କର ଉଦ୍ଦେଶ୍ୟ ସଫଳ ହେଲା ।

ଆଲୋଚନାର ଧାରା ବଦଳିଗଲା ।

ଅଧିକାଂଶ ଲେଖକ ମୋରି ବିରୋଧ ସ୍ୱର ସହିତ ସ୍ୱର ମିଳାଇଲେ । ଆଲୋଚନାଟି ସରଗରମ ହୋଇ ଉଠିଲା । କିଛି ଲେଖକ ଓ ପ୍ରକାଶକ ମନ ଫଟାଫଟି ହେଲେ । ସେମିନାର ସଇଲା । ଯେ ଯାହାର ସ୍ମୃତି ଧରି ନିଜ ନିଜ ଜାଗାକୁ ଫେରିଗଲେ ।

ପ୍ରାୟ ମାସକ ପରେ ପଡ଼ିଲା ବିଷୁବ ମିଳନ ।

ବିଷୁବ ଆସର ପ୍ରକୃତରେ ଆରମ୍ଭ ହୁଏ ବନ୍ଧୁ ମିଳନରୁ । କେନ୍ଦ୍ରସ୍ଥଳରେ ବସନ୍ତି ଡକ୍ଟର ମହତାବ ଓ ବିଶିଷ୍ଟ ଅତିଥିମାନେ । ସେଥରକ ମୁଁ ବନ୍ଧୁ ମିଳନରେ ପହଞ୍ଚିଲି ସାମାନ୍ୟ ବିଳମ୍ବରେ । ସେତେବେଳକୁ ଭିଡ଼ ଜମି ସାରିଥିଲା । ମତେ ଦେଖିପାରି ଖଣ୍ଡେ ଦୂରରୁ ଡାକ ପକାଇଲେ ଡକ୍ଟର ମହତାବ । ହଇହୋ ରତ୍ନାକର, ଏଠିକି ଆସ–

ମୁଁ ପାଖକୁ ଗଲି ।

ମନରେ ସଂକୋଚ ଭାବ; କାଳେ ପୁରୀ କଥା ମତେ ପଚାରିଦେବେ କି ? ମୁଁ କି ଉତ୍ତର ଦେବି ? ମତେ ଯେଉଁ ଉପଦେଶ ପଦକ 'ପ୍ରଜାତନ୍ତ୍ର' ଛାଡ଼ିଲାବେଳକୁ ସେ ଦେଇଥିଲେ ମୁଁ ତ ରଖିପାରିଲି ନାହିଁ । ସେଦିନ ଈଶ୍ୱରଙ୍କ ନାଆଁରେ ଯୋଉ କଥା ତାଙ୍କୁ କହିଯାଇଥିଲି, ତା'ର ବିରୁଦ୍ଧାଚରଣ ମୁଁ କରିଚି । ମୁଁ ଭାବିପାରିଲି ନାହିଁ କ'ଣ କହିବି ତାଙ୍କୁ ।

ତାଙ୍କ ପାଖରେ ପହଞ୍ଚୁ ପହଞ୍ଚୁ ସେ ଆହ୍ଲାଦଭରା କଣ୍ଠରେ କହି ଉଠିଲେ– 'ହଇହୋ ରତ୍ନାକର ! ସେଦିନ ବୁଢ଼ାମାନେ ମୋ କଥାକୁ ସିନା ବୁଝିପାରିଲେନି, ତୁମେ ଯୁବକ ହୋଇ ମୋ କଥାକୁ ଠିକ୍ ଧରିପାରିଲନି ତ ? ମୁଁ ଦେଖୁଚି, ମୋ କଥା କହିବାର ଢଙ୍ଗରେ ବୋଧେ କୋଉଠି ଟିକେ ତ୍ରୁଟି ରହିଯାଉଚି । ହେଲେ, ମୁଁ ଯୋଉ ପ୍ରକାଶକଙ୍କ ଉଦ୍ଦେଶ୍ୟରେ ସେଦିନ ସେକଥା କହିଥିଲି, ସିଏ ମୋ କଥାର

ମର୍ମ ଠିକ୍ ବୁଝିଥିଲେ । ପନ୍ଦର ଦିନ ତଳେ ମୋର ସବୁତକ ରୟାଲଟି ଟଙ୍କା ଆଣି ହିସାବ କରି ସେ ମତେ ଦେଇଯାଇଛନ୍ତି ।'

ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଏବଂ ମନର ଭାବକୁ ଚପେଇ ରଖି ନ ପାରି ଜୋରରେ ହସି ଉଠିଲି । ଡଃ ମହତାବ ବି ସ୍ୱଭାବ ସୁଲଭ ହସ ହସି ଉଠିଲେ । କହିଲେ– ଭଲ, ଭଲ । ସମୁଦ୍ର ମନ୍ଥନ ହୋଇ ନ ଥିଲେ ଅମୃତ ବାହାରି ନ ଥାନ୍ତା ।

ଭାବିଲି, ଜୀବନର ସ୍ୱର୍ଣ୍ଣ ସନ୍ଧ୍ୟାରେ ଉପନୀତ ହୋଇଥିବା ଏହି ପ୍ରଜ୍ଞା ପୁରୁଷଟି ନିଜ କଥା କହିବାର ଢଙ୍ଗରେ ତ୍ରୁଟି ରହିଯାଉଚି ବୋଲି ସ୍ୱୀକାର କରୁଛନ୍ତି । ଅଥଚ ଆମେ... ? ଆମେ ଜୀବନରେ ଭୁଲ କରୁ ନାହୁଁ– ଯାହା କହୁଚୁ ବା କରୁଚୁ, ତାହା ଠିକ୍– ଏଇୟା ବିଶ୍ୱାସ କରି ଆଗେଇଚୁ । ପ୍ରକୃତରେ ବଡ଼ପଣିଆ କୋଉଠି ରହିଛି ?

ମୁଁ ବାଟ ହୁଡ଼ି ଯାଉଚି ।

ମୂଳ କଥାରୁ ଅଲଗା ହେଇ ଯାଉଚି ।

ମୁଁ ପ୍ରଜାତନ୍ତ୍ର ଛାଡ଼ିଲି ନଭେମ୍ବର ତିରିଶ ତାରିଖରେ । ରାଜେନ୍ଦ୍ର କଲେଜ ବଲାଙ୍ଗିରରେ ଯୋଗଦେଲି ଡିସେମ୍ବର ପହିଲା ଦିନ । ଦୁଇଟା ଭିନ୍ନମୁଖୀ ବୃତ୍ତି ଯୋଡ଼ି ହେଇଗଲେ ସମୟର ସାରଣୀରେ । ମଝିରେ ଗୋଟାଏ ରାତି । ସେତେବେଳେ ଦୀର୍ଘ ଏଗାର ଘଣ୍ଟା ବସ୍ ଯାତ୍ରା କରିବାକୁ ପଡୁଥିଲା । ସମ୍ବଲପୁର ଦେଇ ଯିବାକୁ ହେଉଥିଲା ବଲାଙ୍ଗିର ।

ବଲାଙ୍ଗିର ମୋ ପାଇଁ ନୂଆ ଜାଗା ହେଇ ନ ଥିଲା ।

ଏଇଠି 'ଯୁବ ଲେଖକ ସମ୍ମେଳନ' ପୂର୍ବ ବର୍ଷ ହେଇଥିଲା ।

ଆମେ ସମସ୍ତେ ଆସି ବଲାଙ୍ଗିରକୁ ସ୍ୱାଗତ ଜଣାଇଥିଲୁ ।

ଆଜି ତାହା ମୋର କର୍ମଭୂମି ହେବାକୁ ଯାଉଚି ।

ଆସିଲାବେଳେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଖଣ୍ଡିଏ ଚିଠି ଦେଇଥିଲେ ତାଙ୍କ ଧର୍ମଝିଅ ସୌଦାମିନୀ ପଟ୍ଟନାୟକଙ୍କୁ ମୋ ହାତରେ । ମୋର ସୁବିଧା ଅସୁବିଧା ବୁଝିବାର ଦାୟିତ୍ୱ ଥାପିଥିଲେ ତାଙ୍କ ଉପରେ । ସେ ଥିଲେ ସ୍ଥାନୀୟ ଗାର୍ଲ୍ସ ସ୍କୁଲର ଶିକ୍ଷୟିତ୍ରୀ । ପ୍ରଫେସର ଧଳ ରାଜେନ୍ଦ୍ର କଲେଜ ପ୍ରିନ୍‌ସିପାଲ କେ.ପି. ନିଗମଙ୍କ ସଂପର୍କରେ ଏକ ବିଚିତ୍ର ପରିଚୟ ମତେ ଦେଇଥିଲେ । ସେ କହିଥିଲେ ଲୋକଟା ଅଦ୍ଭୁତ । କଥା କଥାକେ 'ଶାଳା' ବୋଲି କହେ । ଟିକେ ହୁସିଆର ଚଳିବ ।

ଗୋଟାଏ କଥା ମନେରଖିବ କ୍ଲାସକୁ ଠିକ୍ ଟାଇମ୍‌ରେ ଯିବ । ଠିକ୍ ଟାଇମ୍‌ରେ କ୍ଲାସରୁ ଆସିବ । ପଢ଼ାପାଠ ପ୍ରସ୍ତୁତ କରି ଯିବ । ବାସ୍, ଏତକ ଜଗିଲେ ଠିକ୍ ଅଧ୍ୟାପକ ହୋଇପାରିବ । ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ମତେ କହିଥିଲେ, ତୁମର ସେଠିକା ଏଚ୍.ଓ.ଡ଼ି ଚିନ୍ତାମଣି ବେହେରା । ଲୋକଟି ଜ୍ଞାନୀ ଗୁଣୀ; କିନ୍ତୁ ଘୋର ମଦ୍ୟପ । ଦେଖିଚାହିଁ କାରବାର କରିବ ।

ଏମିତି ଅନେକ ସୁପାରିଶ ଓ ଉପଦେଶକୁ ସାଙ୍ଗରେ ଧରି ମୋ ସ୍ୱପ୍ନର ବଲାଙ୍ଗିରକୁ ମୁଁ ମୁହାଁଇଥିଲି । ପଛରେ ସାମ୍ବାଦିକ ବୃତ୍ତିକୁ ଛାଡ଼ି ଆସି ଅଧ୍ୟାପକ ହେବାର ଦୁର୍ବାର ଲାଳସାକୁ ମୋ ଆଗେ ଆଗେ ନେଇଚାଲିଥିଲି । ଶୀତାର୍ତ୍ତ ରାତିର ବସ୍‌ଯାତ୍ରା ମୋ ଆଖିକୁ ମୁଦିବା ପାଇଁ ସୁଯୋଗ ଦେଉ ନ ଥିଲା । ନିଜକୁ କର୍ମଭୂମି ବଲାଙ୍ଗିରର କରିବା ପାଇଁ ଯାତ୍ରା...

।। ଷୋହଳ ।।

# ନୂଆ ଜୀବନ : ନୂଆ ଯନ୍ତ୍ରଣା

ଡିସେମ୍ବର ପହିଲା, ୧୯୬୯ ମସିହା । ମୁଁ ରାଜେନ୍ଦ୍ର କଲେଜରେ ଅଧ୍ୟାପକ ଭାବେ ଜଏନ୍ କଲି । ବିଭାଗୀୟ ମୁଖ୍ୟ ଅଧ୍ୟାପକ ଚିନ୍ତାମଣି ବେହେରା ମତେ ପାଛୋଟି ନେଲେ । ଅନ୍ୟ ଅଧ୍ୟାପକ ବନ୍ଧୁଙ୍କ ସହିତ ସେ ପରିଚିତ କରାଇ ଦେଲେ । ସେତେବେଳେ ଓଡ଼ିଆ ବିଭାଗର ଅଧ୍ୟାପକ ଥିବା ନାରାୟଣ ଚନ୍ଦ୍ର ନାଏକ, କ୍ଷେତ୍ରବାସୀ ନାୟକ, ଡ. ପ୍ରସନ୍ନ କୁମାର ମିଶ୍ର ବିଭାଗରେ ମତେ ପାଇ ଖୁସି ହେଲେ । କାରଣ ଏଣିକି ସେମାନଙ୍କର କ୍ଲାସ ନେବା ବୋଝ ହାଲୁକା ହେବ । ଆହୁରି ଦୁଇଜଣ ନୂଆ ଅଧ୍ୟାପକ ଯୋଗ ଦେବାର ଅଛି ବୋଲି ସେମାନଙ୍କଠାରୁ ଶୁଣିଲି । ମତେ ସାଙ୍ଗରେ ଧରି ଚିନ୍ତାମଣି ବେହେରା ପ୍ରିନ୍‌ସିପାଲ ନିଗମଙ୍କ ପାଖକୁ ଗଲେ । ସେ ମୋର ସାର୍ଟିଫିକେଟ୍‌ରୁ ଜନ୍ମ ତାରିଖ ଦେଖି କହି ଉଠିଲେ– 'ଆରେ ଶାଲା, ତୁମ୍ ତ ମେରା ବେଟା ମାଫିକ୍ ହୋ' । କହି ରଖେ, ଅଧ୍ୟକ୍ଷ ନିଗମ ସବୁ ସମୟରେ 'ଶାଲା' ଶବ୍ଦକୁ 'କ୍ୟାଚ୍ ୱାର୍ଡ' ଭାବେ ପ୍ରୟୋଗ କରନ୍ତି । ଏକଥା ମୁଁ ଆଗରୁ ଜାଣି ନ ଥିଲି; ଶୁଣିଥିଲି ।

ଏଭଳି କଥା ଶୁଣି ମୁଁ କାଳେ କିଛି ପ୍ରତିକ୍ରିୟା ପ୍ରକାଶ କରି ପକାଇବି, ସେଥିପାଇଁ ଚିନ୍ତାମଣି ବାବୁ ମୋ ହାତକୁ ଟାଣି ଧରିଲେ । ଅଧ୍ୟକ୍ଷ ନିଗମ ପୁଣି କହିଲେ, ମୋ ସାନପୁଅର ଜନ୍ମ ତାରିଖ ତୁମାରା ଜନ୍ମ ତାରିଖ ଏକ ହେଁ । ଏକଥା ଶୁଣି ମୁଁ ଚୁପ୍ ରହିଲି । ମତେ ବହୁ ଆଗରୁ ପ୍ରଫେସର ଧଳ ତ ଏହାଙ୍କର ଉଚ୍ଚାରଣ ବିଷୟରେ ସତର୍କ ସୂଚନା ଦେଇ ସାରିଥିଲେ । ମାତ୍ର ଚିନ୍ତାମଣି ବାବୁଙ୍କ ବିଷୟରେ ଯାହା ଶୁଣିଥିଲି ତାହା ମତେ ମିଥ୍ୟା ଭଳି ମନେ ହେଉଥିଲା । ସେ ମତେ ନେଇ ବିଭିନ୍ନ କ୍ଲାସ ଆରମ୍ଭରେ ପିଲାଙ୍କ ସହିତ ପରିଚିତ କରାଇ ଦେଉଥିଲେ । ମୋ ବିଷୟରେ ଏତେ ପ୍ରଶଂସା କରି ସେ ପିଲାଙ୍କୁ କହୁଥିଲେ ଯେ ସେମାନେ ଆଶ୍ଚର୍ଯ୍ୟ

ଚକିତ ହୋଇଯାଉଥିଲେ । ସେଦିନ ମୋର ପ୍ରଥମ କ୍ଲାସ ଥିଲା ଶେଷବର୍ଷ ଓଡ଼ିଆ ଅନର୍ସ ପିଲାଙ୍କର । ସେ କ୍ଲାସରେ ଛାତ୍ର ଥିଲେ କୁମୁଦରଂଜନ ପାଣିଗ୍ରାହୀ, ରାମକୁମାର ଅଗ୍ରୱାଲ ଓ ଭାନୁପ୍ରକାଶ ଯୋଶୀ ଭଳି ପ୍ରତିଭାବାନ ପିଲା । କୁମୁଦ ପରବର୍ତ୍ତୀ କାଳରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସୁଦକ୍ଷ ପ୍ରଫେସର ହେଲା । ରାମକୁମାର ଜଣେ କବି ଓ ସାମ୍ବାଦିକ ଭାବେ ସୁନାମ ଅର୍ଜନ କଲା । ଭାନୁପ୍ରକାଶ କଂଗ୍ରେସ ଦଳର ବିଧାୟକ ଭାବେ ନିଜ ଦକ୍ଷତା ପ୍ରଦର୍ଶନ କରିଥିଲା ।

ପ୍ରଥମରୁ କହି ରଖେ, ଅଧ୍ୟାପନା କର୍ମ ଆରମ୍ଭରୁ ହିଁ ମତେ ଖୁବ୍ ଭଲ ଲାଗିଲା । ବାଧ୍ୟବାଧକତା ଯୋଗୁଁ ଓ ଆଗ୍ରହରୁ, ଏଇ ଉଭୟ କାରଣରୁ ଅଧିକ କ୍ଲାସ ନେବାକୁ ମୁଁ ପସନ୍ଦ କଲି । କେତୋଟି ଦିନ ପରେ ଚିନ୍ତାମଣି ବାବୁଙ୍କ ଅସଲ ଅବସ୍ଥା ମୁଁ ଦେଖିଲି ଓ ଜାଣିଲି । ଦିନେ ସକାଳ ନଅଟାରେ ସେ ଟଳିଟଳି କଲେଜ ଷ୍ଟାଫ୍ କମନ୍‌ରୁମ୍‌କୁ ପଶି ଆସିଲେ । ଲଙ୍ଗଳା ପାଦ; କଛା ଖୋଲା । ତାହା ପୁଣି ବାଟଯାକ ଘୁଷୁରୁଥିଲା । ସାମ୍ନାରେ ମତେ ଦେଖି ସେ କହିଲେ– 'ରତ୍ନାକର ! ଆଜିଠୁଁ ମୋର ସବୁ କ୍ଲାସ ମୁଁ ତୁମକୁ ଦେଇଦେଲି । ଆଉ କାହାକୁ ଦେବିନି । ଯାଃ...'

ତାଙ୍କ ଅବସ୍ଥାରୁ ଓ କହିବା ଢଙ୍ଗରୁ ମୁଁ ସବୁକିଛି ଅନୁମାନ କରିନେଲି । ମୁଁ ତାଙ୍କୁ ଆଶ୍ୱସ୍ତି ଦେବାପାଇଁ ହିଁ ଭରିଲି ଏବଂ ବୁଢୁ ପିଅନକୁ ଡାକି ତାଙ୍କୁ ତାଙ୍କ କ୍ୱାଟରରେ ଛାଡ଼ି ଆସିବାକୁ ପଠାଇଲି । ଏଣିକି ତାଙ୍କ କ୍ଲାସ ଯାକ ମୁଁ ଆତଯକ୍ଷ୍ଟ କରିନେଲି । ମୁଁ ଜାଣିଥିଲି ସେ ଜଣେ ପ୍ରତିଭାଧର ସ୍ରଷ୍ଟା; ଓଡ଼ିଶାର ଖ୍ୟାତନାମା ଅଧ୍ୟାପକ । ଠିକେଠିକେ ତାଙ୍କ ପାରିବାରିକ ଯନ୍ତ୍ରଣା କଥା ଜାଣିବାକୁ ପାଇଲି । ତାଙ୍କ ପ୍ରତିଭା ପ୍ରତି ମୋର ଯଥେଷ୍ଟ ସମ୍ମାନ ଥିଲା । ପାରିବାରିକ ପ୍ରସଙ୍ଗ ଜାଣିଲା ପରେ ଜଣେ ସହାୟକ ସାନଭାଇ ଭାବେ ତାଙ୍କ ପାଖରେ ଠିଆ ହେବାକୁ ମନସ୍ଥ କଲି । ଯୋଉଠି ତାଙ୍କର ସଭାସମିତି ଭାଷଣ କାର୍ଯ୍ୟକ୍ରମ ଥାଏ ସେଠିକି ମୁଁ ସାଙ୍ଗରେ ଗଲି । କ୍ରମେ ସବୁଠି ତାଙ୍କ ନାଁ ସହିତ ମୋ ନାଁ ବକ୍ତା ଭାବରେ ଯୋଡ଼ି ହୋଇଗଲା । ଏଣେ ଅଧ୍ୟାପକ ବନ୍ଧୁ ଭାବରେ କ୍ଷେତ୍ରବାସୀ ନାୟକ, ଡ. ପ୍ରସନ୍ନ କୁମାର ମିଶ୍ର, ଚୈତନ୍ୟ ପ୍ରସାଦ ସେଠୀ ଓ ପରେ ପରେ ସନତ୍ ଦାସପଟ୍ଟନାୟକଙ୍କ ସହିତ ନିବିଡ଼ ସାନ୍ନିଧ ମତେ ବେଶ୍ ଆନନ୍ଦ ଦେଲା । ମୋଟ ଉପରେ ଆରମ୍ଭରୁ ବଲାଙ୍ଗିର ମୋ ପାଇଁ ପ୍ରୀତିପଦ ହୋଇଗଲା ।

ଇଂରାଜୀ ବିଭାଗରେ ଥିଲେ କଳାପ୍ରେମୀ ଅଧ୍ୟାପକ ଗୌରୀପଦ ତ୍ରିପାଠୀ । ପୂର୍ବରୁ ସେ ସମ୍ବାଦପତ୍ର ସମୀକ୍ଷା ପୃଷ୍ଠାରୁ ମୋ ନାଟକ 'ରାଜହଂସ' ସଂପର୍କରେ ପଢ଼ିଥିଲେ । ଦିନେ ମତେ ଜିଦିକରି କହିଲେ, ସେ ପାଣ୍ଡୁଲିପି ଆଣନ୍ତୁ– ଆମେ ଏ ବର୍ଷ ସେଇ ନାଟକକୁ ଆମ ବାର୍ଷିକ ନାଟକ ଉତ୍ସବରେ ପରିବେଷଣ କରିବା । ତାହାହିଁ ହେଲା । ମାତ୍ର ପ୍ରଥମ ସମସ୍ୟା ହେଲା, ଏଠାରେ କଲେଜ ଝିଅଙ୍କର ପୁଅପିଲାଙ୍କ ସାଙ୍ଗରେ ମିଶି ନାଟକ କରିବା ପରଂପରା ନ ଥିଲା । ତେଣୁ ଗୌରୀପଦ ବାବୁଙ୍କ ମନ ମରିଗଲା । ମତେ କହିଲେ କ'ଣ କରିବା ? କିଛି ଗୋଟେ ବାଟ ବାହାର କରନ୍ତୁ । ମୁଁ ମନେମନେ ସ୍ଥିର କଲି, ସୌଦାମିନୀ ପଟ୍ଟନାୟକଙ୍କ ସାନ ଭଉଣୀକୁ ମୁଁ ଦାୟିତ୍ୱ ନେଇ ଆଣିପାରିବି । ମୁଖ୍ୟ ନାୟିକା ପାଇଁ ରାମକୁମାର ଅଗ୍ରୱାଲ ମୋ କାନରେ ଏକ ମନ୍ତ୍ର ଦେଲା । କହିଲା, ସାର୍ ! ଅହଲ୍ୟା ମେହେର କବି; ଆପଣ ତାକୁ ଯୁବ ଲେଖକ ସମ୍ମେଳନ ବେଳୁ ଜାଣିଛନ୍ତି । ତା' ସାନ ଭଉଣୀ ଏଠି ସାଇନ୍ସ ପଢୁଚି । ଆପଣ ଟିକେ ଅହଲ୍ୟାକୁ କହିଲେ ସେ ରାଜି ହୋଇଯିବ ।

ସତକୁ ସତ ସେଇୟା ହେଲା । ଡ୍ରାମା ରିହରସାଲ ଚାଲିଲା । ଗୋଟିଏ ସେଟ୍‌ର ଏ ନାଟକ । ତେଣୁ କନା, କଣ୍ଢା ଓ କାଠ ବଟନରେ ନିଜେ ନିଜେ ସେଟ୍ ତିଆରି କଲୁ । ଆଗରୁ ସ୍ଥିର ହୋଇଥିଲା– ନାଟକଟି ଦୁଇ ଦିନ ହେବ । ସମ୍ବଲପୁରରୁ ପେଣ୍ଟର ଓ ପେଣ୍ଟିଂ ସାମଗ୍ରୀ ଆଣିବା ବ୍ୟୟବହୁଳ କାମ । ଡ୍ରାମା ଫଣ୍ଡରେ ବି ଏତେ ପଇସା ନ ଥିଲା । ମୁଁ ନିଜେ ଦୁଃସାହସ କଲି । ଅଧ୍ୟାପିକା ସରୋଜିନୀ ମହାପାତ୍ର, ଯେ କି ଡ୍ରାମାଟିକ୍ ସୋସାଇଟିର ଅନ୍ୟତମ ଉପସଭାପତି ଥିଲେ, ତାଙ୍କୁ ତାଙ୍କର ସାହାଯ୍ୟ ମାଗିଲି । ଲେଡିଜ୍ କସ୍‌ମେଟିକ୍ ଯାହା ସେଠିକା ବଜାରରେ ମିଳେ, କିଛି କିଣି ଆଣିବା ପାଇଁ ତାଙ୍କୁ ବରାଦ ଦେଲି । ଡ୍ରାମା ଦିନ ସେ ଟର୍ଚ୍ଚ ଧରି ମୋ ପାଖରେ ବସିଲେ । ମୁଁ ପେଣ୍ଟିଂ କଲି । ଡ୍ରାମା ଆଶାତୀତ ଭାବେ ସଫଳ ହେଲା । ପ୍ରଥମ ଦିନ ଷ୍ଟୁଡ଼େଣ୍ଟ ସୋ, ଦ୍ୱିତୀୟ ଦିନ ଗେଷ୍ଟ ସୋ ହେଲା । ପ୍ରତ୍ୟେକ ଅଭିନେତା ଅଭିନେତ୍ରୀ ଜନସାଧାରଣଙ୍କଠାରୁ ଅଜସ୍ର ପ୍ରଶଂସା ସହ ପ୍ରଚୁର ଉପହାର ପାଇଲେ । ପରବର୍ତ୍ତୀ କାଳରେ ଜାତୀୟ ସ୍ତରରେ ଅଭିନୟ ଓ ଚଳଚ୍ଚିତ୍ର ନିର୍ମାଣରେ ସୁନାମ ଅର୍ଜନ କରିଥିବା ସବ୍ୟସାଚୀ ମହାପାତ୍ରଙ୍କର ଅଭିନୟର ମୂଳଦୁଆ ପଡ଼ିଥିଲା ଏଇ ନାଟକ 'ରାଜହଂସ'ରେ । ସେ ବରାବର ଏକଥା ସ୍ୱୀକାର କରି ଆସିଛନ୍ତି ।

ବଲାଙ୍ଗିରରେ ସେତେବେଳେ ଜିଲାପାଳ ଥିଲେ ଏ.ଏନ୍. ତିଓ୍ୱାରୀ । ସେ ପ୍ରିନ୍‌ସିପାଲ୍‌ଙ୍କୁ ଆଉ ଗୋଟିଏ ଦିନ ସେ ନାଟକ ମଞ୍ଚସ୍ଥ କରିବାକୁ ଅନୁରୋଧ କଲେ । ମାତ୍ର ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଖ ହେଇ ଆସିଥିବାରୁ ପିଲାଙ୍କ ପାଠପଢ଼ାରେ ଆଉ ବ୍ୟାଘାତ ନ କରିବା ପାଇଁ ଅଧକ୍ଷ ବିନମ୍ରତା ସହ ଜିଲାପାଳଙ୍କୁ ଜଣାଇଥିଲେ ।

ଏହାପରେ ହଠାତ୍ ମୁଁ ସାରା ବଲାଙ୍ଗିରର ହୋଇଗଲି ଏବଂ ବଲାଙ୍ଗିର ହେଇଗଲା ମୋର ଅତି ପ୍ରିୟ ସହର । ଯୋଉଠି ଯାହା ସାଂସ୍କୃତିକ ଉତ୍ସବ ହେଲା ସେଠି ମତେ ଖୋଜାପଡ଼ିଲା । ପ୍ରିନ୍‌ସିପାଲ ନିଗମଙ୍କର ମୁଁ ଗେହ୍ଲା ପୁଅ ପାଲଟିଗଲି । ଛାତ୍ର ବିଶୃଙ୍ଖଳା ହେଲେ ସେ ମତେ ବୁଝାସୁଝା କରିବାକୁ ପଠାନ୍ତି । କିଛି ଦିନ ପରେ ପ୍ରଫେସର ଧଳ ତାଙ୍କରି ମୁହଁରୁ ମୋର ଭୂୟସୀ ପ୍ରଶଂସା ଶୁଣିଲେ ପ୍ରିନ୍‌ସିପାଲମାନଙ୍କ ସମ୍ମେଳନରେ । ସେ ଭାରି ଖୁସି ହୋଇଯାଇଥାଆନ୍ତି । ମୁଁ କଟକ ଆସି ତାଙ୍କୁ ସାକ୍ଷାତ କରିବାକୁ ଯିବା ଦିନ ସେ ଆନନ୍ଦରେ ମତେ କୁଣ୍ଢେଇ ପକାଇଲେ । କହିଲେ, ଜାଣିଚ ! ଜଣେ ଶିକ୍ଷକର ସବୁଠୁଁ ବଡ଼ ଗର୍ବର କଥା କ'ଣ ? ଯେତେବେଳେ ତା' ଛାତ୍ରର ଭଲ କାମ ତା' ଶତ୍ରୁ ମୁହଁରେ ପ୍ରଶଂସା ହୋଇ ବାହାରି ଆସେ, ସେତେବେଳେ ଶିକ୍ଷକର ଛାତି କୁଣ୍ଢେମୋଟ ହେଇଯାଏ । ତମ ପାଠପଢ଼ାର ସୁନାମ ଓ ସଫଳତା, ପ୍ରଶାସନକୁ ଶୃଙ୍ଖଳା ରକ୍ଷାରେ ସହାୟତା– ସବୁ କଥା ମୁଁ ନିଗମଙ୍କ ମୁହଁରୁ ଶୁଣିଚି । ବାସ୍, ଏମିତି ଏଥର ଆଗେଇ ଚାଲ ।

ଏଠିକାର ଆଉ ଜଣେ ଇଂରାଜି ଅଧାପକଙ୍କ କଥା କହିବାକୁ ଭୁଲିଯାଉଚି । ସେ ହେଲେ ରାଜକିଶୋର ମିଶ୍ର । ଜ୍ୟୋତିଷୀ ବିଦ୍ୟାପାଇଁ ତାଙ୍କର ଖ୍ୟାତି ଥିଲା ଖୁବ୍ ବେଶି । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ଜ୍ୟେଷ୍ଠ ଜାମାତା ସେ । ଭାରି ମେଳାପୀ, ସ୍ନେହୀ ଓ ଖୁସି ମିଜାସର ମଣିଷ । ଥରେ ସେ ବେଶ୍ ଆମୋଦଦାୟକ କାମଟିଏ କରିଥିଲେ । ଫେବୃୟାରୀ ମାସ ବେଳକୁ ବଲାଙ୍ଗିରକୁ ଖରାଦିନ ଆସିଯାଏ । ରାଜୁ ବାବୁଙ୍କ ପ୍ଲାନରେ କ୍ଷେତ୍ରବାସୀ ବାବୁଙ୍କ କ୍ୱାଟରରେ ଫେବୃୟାରୀର ଗୋଟିଏ ଶନିବାରିଆ ରାତିରେ ଭୋଜି ବ୍ୟବସ୍ଥା କରାଯାଇଥିଲା । ସେଥିରେ ଚୈତନ୍ୟବାବୁ, ଟ୍ରେନିଂ କଲେଜର ଅଧାପକ ରବୀନ୍ ଘୋଷ, ପ୍ରସନ୍ନ ବାବୁ ଓ ମୁଁ ଯୋଗ ଦେଇଥାଉ । ସେଦିନ ରାଜୁବାବୁଙ୍କ ମୁଣ୍ଡକୁ ଜୁଟିଲା ଭୋଜି ପୂର୍ବରୁ ଭାଙ୍ଗପଣା ହେବ । କ୍ଷେତ୍ରବାସୀବାବୁ ଓ ତାଙ୍କର ଅଧାପିକା ପତ୍ନୀ ଲାବଣ୍ୟ ନାୟକ ଏହାକୁ

ବିରୋଧ କଲେ । କିନ୍ତୁ ପ୍ରସନ୍ନବାବୁ ଓ ରାଜୁବାବୁ ପରିହାସ ଛଳରେ କହି ଉଠିଲେ– 'କି କଥା, ଭାଙ୍ଗ୍ ନା'ହଲେ କି ଭୋଜି ହଏ ? ବଲ ନା ରବୀନ୍ ?' ଶେଷକୁ ସ୍ଥିର ହେଲା ପଣା ବି ହବ । ପଣାରେ ଅଳ୍ପ ପରିମାଣରେ ଭାଙ୍ଗ ମିଶିବ । ତା'ଛଡ଼ା ଯିଏ ଅଧିକ ଭାଙ୍ଗ ନିଶା ଚାହିବ, ସେ ଭାଙ୍ଗମୋଦକ ଖାଇପାରିବ ।

ରାତି ସାଢ଼େ ଆଠଟା ବେଳକୁ ପଣାଖିଆ ପର୍ବ ସରିଗଲା । ତା'ପରେ ଖୁସି ଗପକରି ଚାଲି ଚାଲି ମେନ୍ ପୋଷ୍ଟ ଅଫିସ୍ ଯାଏ ଆମର ପଦଯାତ୍ରା ଆରମ୍ଭ ହେଲା । ମଝିରେ ରାଜୁବାବୁ, ପ୍ରସନ୍ନ ବାବୁ ଆଗରେ ଯାଇ ଭାଙ୍ଗମୋଦକ ଖୋଜିବାରେ ଲାଗିଗଲେ । ଆମେ ସବୁ ଧୀରେ ସୁସ୍ଥେ ଚାଲିଚାଲି ଯାଉଥିଲୁ । କଚେରୀ ଛକରେ ପହଞ୍ଚିଲା ବେଳକୁ ଆମେ ଦେଖିଲୁ, ଗୋଟାଏ ଷଣ୍ଢ ଶୋଇରହି ପାକୁଳି କରୁଚି । ରାଜୁବାବୁ ସେ ଷଣ୍ଢ ଆଗରେ ଚୁପ୍‌ଚାପ୍ ବସିଛନ୍ତି । ଘଟଣା କ'ଣ ଆମେ କେହି ବୁଝିପାରି ନ ଥିଲୁ । ରାଜୁବାବୁଙ୍କୁ ପଚାରିବାରୁ ସେ ନିରବ ରହିବାକୁ ସତର୍କ କରିଦେଲେ । ତା'ପରେ ଧୀର ସ୍ୱରରେ କହିଲେ, ମୁଁ ପାଚିଲା କଦଳୀରେ ଚାରିଟା ମୋଦକ ପୂରାଇ ଏ ଷଣ୍ଢକୁ ଖୁଆଇ ଦେଇଚି । ଦେଖୁଚି, ତାକୁ ନିଶା ହଉଚି କି ନାଇଁ । ଆମକୁ ହସ ଲାଗିଲା । ରାଜୁବାବୁଙ୍କୁ ବୋଧେ ଭାଙ୍ଗନିଶା ହୋଇଗଲାଣି ବୋଲି ଅନୁମାନ କଲୁ । ତେଣୁ ଆଉ ଆଗକୁ ନ ଯାଇ ସେଇଠୁ କ୍ଷେତ୍ରବାସୀବାବୁଙ୍କ କ୍ୱାଟରକୁ ଫେରିଆସିଲୁ । ବାସ୍ତବରେ ଭୋଜି ମଉଜ ଫିକା ପଡ଼ିଗଲା ସେଦିନ । କାରଣ କ୍ଷେତ୍ରବାସୀବାବୁଙ୍କୁ ମଧ୍ୟ ନିଶା ଧରି ସାରିଥିଲା । ସେ ନ ଖାଇବା ଲୋକ; ବାଧ୍ୟବାଧକତାରେ ଗୋଟାଏ ଗ୍ଲାସ ପଣା ପିଇଥିଲେ । ସେ ହେଇଗଲେ ନିଶାତୁର । ତେଣୁ କାହାର ଖିଆପିଆର ଠିକ୍ ଠିକଣା ରହିଲାନି ।

ମାର୍ଚ୍ଚ ମାସ ସନ୍ଧ୍ୟାରେ ବଲାଙ୍ଗିର ସହର ଏକ ବିଚିତ୍ର ରୂପ ଧରେ । କଲେଜ ପଛପାଖ ପାହାଡ଼ମାନେ ଆଲୋକର ଲମ୍ବା ମାଳା ପିନ୍ଧି ଅଦ୍ଭୁତ ଦୃଶ୍ୟ ସୃଷ୍ଟି କରନ୍ତି । ତାତି ପବନ ସେଇ ପଟୁ ଆସି ସହରକୁ ବହୁ ସମୟ ଧରି ଉତପ୍ତ ରଖେ । ମୋ ଜୀବନରେ ଏଭଳି ଦୃଶ୍ୟ ଦେଖିବା ତାହା ଥିଲା ପ୍ରଥମ । ବଲାଙ୍ଗିରର ସ୍ଥାୟୀ ବାସିନ୍ଦାଙ୍କ ସହିତ ମୋର କ୍ରମେ ଘନିଷ୍ଠତା ବଢ଼ି ଚାଲିଥିଲା । ସାହିତ୍ୟିକ ଅଗ୍ରଜ ଶ୍ରୀନିବାସ ଉଦ୍‌ଗାତା ସବୁଠୁଁ ବେଶି ଆପଣାର ହୋଇଯିବା ସ୍ୱାଭାବିକ । ରାଜୁବାବୁ, କ୍ଷେତ୍ରବାସୀବାବୁ ଆଦି ବହୁ ଆଗରୁ ତାଙ୍କର ଅତ୍ୟନ୍ତ ଆତ୍ମୀୟ ହୋଇସାରିଥିଲେ । ମୁଁ ପଛରେ ଆସି ଏହି ବନ୍ଧୁ ମହଲରେ ଯୋଗ ଦେଇଥିଲେ ବି ଖୁବ୍ କମ୍ ଦିନ

ଭିତରେ ଏଠି ମୋ ସତ୍ତା ମୁଁ ହଜାଇ ଦେଲି । ମନେହେଲା, ଆମେ ସମସ୍ତେ ଯେମିତି ବହୁଦିନୁଁ ପରିଚିତ ।

ଶ୍ରୀନିବାସବାବୁଙ୍କ ହସ୍ତାକ୍ଷର ଖୁବ୍ ସୁନ୍ଦର । ପ୍ରାୟ ଛାପା ଅକ୍ଷର ଭଳି ଦିଶେ । ସେ କଚେରୀ ବାରଣ୍ଡାରେ ବସି ଲେଖାପଢ଼ା କରନ୍ତି । ଆମେ ଯିଏ ଯେତେବେଳେ ସେଇ ବାଟେ ଆସୁ, ତାଙ୍କ ପାଖରେ ଅଟକି ଯାଉ । ଚା' ପିଉ । ସଂସ୍କୃତ ଓ ହିନ୍ଦୀରେ ତାଙ୍କର ବିଦ୍ୱତ୍ତା ପ୍ରଶଂସନୀୟ । ମଝିରେ ମଝିରେ ସନ୍ଧ୍ୟାରେ ପାଟଣେଶ୍ୱରୀ ମନ୍ଦିର ବେଢ଼ାରେ ବସି ସାହିତ୍ୟ ଚର୍ଚ୍ଚା କରୁ । ବେଳେବେଳେ ଶ୍ରୀନିବାସବାବୁଙ୍କ ଘରେ ବି ଆସର ଜମେ । ମେ ମାସ ପ୍ରଥମ ସପ୍ତାହରେ ଖରାଦିନ ଛୁଟି ହୁଏ । ଛୁଟି ହେବାଯାଏ ଏ ପର୍ବ ଏମିତି ଚାଲୁ ରହୁଥିଲା । ଖରାଛୁଟି ଦି'ମାସ ମୁଁ କଟକରେ କଟାଉଥିଲି । ମୋ ପାଇଁ ଲେଖାଲେଖି ପ୍ରକାଶନ କାମର ଏହା ଥିଲା ଭଲ ସମୟ । ସେତିକିବେଳେ ମୁଁ ଜାଣିଲି ପରିବେଶ ଓ ପରିସ୍ଥିତି ମଣିଷ ପାଇଁ ସବୁଠାରୁ ବଡ଼ ପରୀକ୍ଷା କେନ୍ଦ୍ର । ଏଇଠି ନିଜକୁ ସାମ୍ନା କରିବାକୁ ଯାଇଁ ମଣିଷର ସ୍ୱଭାବ ବଦଳିଯାଏ; ବିଶ୍ୱାସର ବଡ଼ବଡ଼ ମହାଦ୍ରୁମ ଧରାଶାୟୀ ହୋଇଯାଏ । ବେଳେବେଳେ ନିଜର ମଜବୁତ ଅହଂ ଗୋଟାଏ ଫୁଙ୍କା ବେଲୁନ୍ ଭଳି ଫାଟି ପବନରେ ମିଳେଇ ଯାଏ । ପରିସ୍ଥିତିରେ ପଡ଼ିଲେ ଏ କଥାକୁ ସହଜେ ଅନୁଭବ କରିହେବ । ସେତେବେଳେ ନିଜ ଅଙ୍ଗେ ଲିଭାଇଥିବା ଗୋଟିଏ କଥା ଏବେ ମନେପଡ଼ି ଯାଉଚି ।

ଦୀର୍ଘ ଖରାଛୁଟି ପରେ କଲେଜ ଖୋଲିଲା ବେଳକୁ ବର୍ଷାଋତୁ ଜମି ଆସିଥିଲା । ମନେପଡୁଚି, ତାହା ଥିଲା ଜୁଲାଇ ଦୁଇ ତାରିଖ ୧୯୭୦ ମସିହା । ଯାତ୍ରାର ଅନ୍ୟ ମାଧ୍ୟମ ସେତେବେଳେ କିଛି ନ ଥିବାରୁ ଦ୍ରୁତଗାମୀ ସରକାରୀ ବସ୍‌ରେ ଆମେ ସମସ୍ତେ ଫେରୁଥିଲୁ ଆମ କର୍ମକ୍ଷେତ୍ର ବଲାଙ୍ଗିରକୁ । ସେଥରକ ଫେରିଲା ଦିନ ଅବିରାମ ବର୍ଷା ଲାଗି ରହିଥିଲା । ସହଜେ ରାତ୍ରିକାଳୀନ ଯାତ୍ରା । ବସ୍‌ରେ ଯାତ୍ରୀ ଭରପୂର । ରାତି ସାଢ଼େ ଗୋଟାଏ ବେଳ । ଯାତ୍ରୀମାନେ ନିଦ ଢୁଳୁମୁଳୁ । ହଠାତ୍ ଚିତ୍କାର ଶୁଭିଲା ଏବଂ ଆମେ ଜାଣିଲୁ ଆମେ ଏବେ ବସ୍ ଭିତରେ ନୁହଁ, ପାଣି ଭିତରେ ଅଛୁ । ଅଗତ୍ୟା ବସ୍ ଛାଡ଼ି ସେଇ ଅନ୍ଧାର ରାତିରେ ବାହାରକୁ ଦୌଡ଼ିଲୁ । ବସ୍ ଭିତରେ ଆମ ଜିନିଷପତ୍ର, ବେଡ଼ିଂ; ବ୍ୟାଗ୍ ଭାସି ବୁଲୁଥିଲା । ଅନେକ ସମୟ ପରେ ଜାଣିଲୁ ଇଏ ଅନୁଗୁଳ ଆଗକୁ ଜରପଡ଼ା

ନାମକ ଅଞ୍ଚଳ । ଜାତୀୟ ରାଜରାସ୍ତା ଏଠି ଏକ ଖାଲୁଆ ଜାଗାରୁ ଉଠାଣିକୁ ଉଠିଚି । ପ୍ରବଳ ବର୍ଷା ଯୋଗୁ ସେଇ ଜାଗା ଜଳପୂର୍ଣ୍ଣ ହୋଇ ବିପତ୍ତିକୁ ଡାକି ଆଣିଚି । ଡ୍ରାଇଭର ବର୍ଷା ପାଣି ଅଟକଳ କରି ନ ପାରି ବସ୍ ଚଳାଇ ନେଉନେଉ ଏ ଅଘଟଣ ଘଟିଲା ।

ଆମେ ସମସ୍ତେ ସାରା ରାତି ବର୍ଷା ପାଣିରେ ଭିଜିଲୁ । ଅଣ୍ଟାଏ ପାଣିରେ ଠିଆ ହୋଇ ରହିଲୁ । ପଛକୁପଛ ଆଉ କେତୋଟି ବସ୍ ସେଠି ଅଟକି ରହିଲା । କେହି କିନ୍ତୁ ବସ୍ ଗେଟ୍ ଖୋଲି ଆମକୁ ଆଶ୍ରା ଟିକେ ଦେଲେନି ତାଙ୍କ ପାଖରେ । କାରଣ ଅନ୍ଧାର ରାତି । ଏଠି ଚୋର ଖଣ୍ଟଙ୍କ ଭୟ । ସେମିତି ପାଣିରେ ଠିଆ ହୋଇ ହୋଇ ସକାଳ ହେଲା । ବର୍ଷା କମି ଯାଇଥିଲା । ଅନ୍ୟ ବସ୍‌ମାନେ ବାଟ ଭାଙ୍ଗି ଚାଲିଗଲେ । ଆଶ୍ୱାସନା ଦେଇଗଲେ, ସମ୍ବଲପୁରରୁ ରେସ୍‌କିଉ ବସ୍ ପଠାଇଦେବେ । ବସ୍ କେତେବେଳେ ଆସିବ, ତା'ର କିଛି ଠିକ୍ ଠିକଣା ନ ଥିଲା । ବାଧ ହୋଇ ଆମେ ବାହାରିଲୁ, ପାଖ ଗାଁର ଦୋକାନ ବଜାର ଖୋଜି । ମୋ ସାଙ୍ଗରେ ସାରା ରାତି ଗୋଟିଏ ଛତାତଳେ ରହିଥିଲେ ଜଣେ ସୌମ୍ୟକାନ୍ତ ବ୍ୟକ୍ତି । ସକାଳୁ ଜାଣିଲି, ସେ ଜଣେ ଡାକ୍ତର, ବିଭୂତିବାବୁ । ବଲାଙ୍ଗିର ଜିଲା ମୁଖ୍ୟ ଡାକ୍ତରଖାନାକୁ ତାଙ୍କର ବଦଳି ହୋଇଥିଲା । ମୋ ସାଙ୍ଗରେ ସେ ଗ୍ରାମୀଣ ଚା' ଦୋକାନକୁ ଗଲେ; କିନ୍ତୁ ଚା' ଛଡ଼ା ଆଉ କିଛି ସେଠି ଖାଇବେ ନାହିଁ ବୋଲି ସେ ମତେ କହିଲେ । ଆହୁରି କହିଲେ– ଏଠିକା ବରା ପକୁଡ଼ି ଆଦି ଖାଦ୍ୟ ଓ ଏଠିକା ପିଇବା ପାଣି ଜୀବାଣୁ ମୁକ୍ତ ନୁହଁ । ସ୍ୱାସ୍ଥ୍ୟ ପ୍ରତି ଏସବୁ ମୋଟେ ଅନୁକୂଳ ନୁହଁ ।

ମୁଁ ତାଙ୍କୁ ବୁଝାଇଲି– ଦିନ ବାରଟା ଗୋଟାଏ ଭିତରେ ଏଠି ଆଉ କିଛି କୋଉଠି ମିଳିବାର ସମ୍ଭାବନା ନାହିଁ । ତେଣୁ ଯାହା କିଛି ମିଳୁଛି, ଖାଇ ନିଅନ୍ତୁ । ଦେଖନ୍ତୁ, ଆପଣ ହେଲେ ଡାକ୍ତର । ଆପଣ ରୋଗୀମାନଙ୍କୁ ଯେଉଁ ଔଷଦ ବା ଇଂଜେକ୍‌ସନ ଦେଉଛନ୍ତି, ତାକୁ ସାଧାରଣ ଲୋକ ଦେବତାଙ୍କ ପାଦୁକ ମନେକରି, ବିଶ୍ୱାସରେ ନେଉଛନ୍ତି ଓ ଖାଉଛନ୍ତି । ଆପଣ ବିଷ କି ଅମୃତ ଦେଲେ ସେଠି ସେ ଅବିଶ୍ୱାସ କରୁ ନାହାନ୍ତି । ଏଠି ଜଣେ ସାଧାରଣ ଲୋକକୁ ଆପଣ ଅନ୍ତତଃ ଟିକେ ବିଶ୍ୱାସ କରନ୍ତୁ । ସେ ତା' ଜାଣତରେ ଆପଣଙ୍କୁ ବିଷ କିମ୍ୱା ଅସ୍ୱାସ୍ଥ୍ୟକର ଖାଦ୍ୟ ଦେଉ ନାହିଁ । ଶବରୀ ପ୍ରଭୁ ରାମଚନ୍ଦ୍ରଙ୍କୁ ଖଟାମିଠା ଫଳ ଚାଖି କରି ଦେଲାଭଳି, ଇଏ ପ୍ରଥମେ କ'ଣ ତିଆରି କଲା ନିଜେ ଚାଖିଥିବ । ତା'ପରେ ଗଭୀର ବିଶ୍ୱାସରେ

ଆପଣଙ୍କୁ ସେ ଖାଇବାକୁ ଦେଉଚି । ଏହାପରେ ତେଣିକି ଭଗବାନ୍ ଭରସା । ଆମ ଦେଶରେ ଲକ୍ଷଲକ୍ଷ ଲୋକ ତ ଏମିତି ଈଶ୍ୱର ବିଶ୍ୱାସରେ ଚଳୁଛନ୍ତି ।

ସେଦିନ ସେ ଡାକ୍ତର ବନ୍ଧୁ ମୋ କଥାରେ କେବଳ ସେଠି ଖାଇଲେ ନାହିଁ, ତା' ପରେ ସେ ବଲାଙ୍ଗିରରେ ସାଧାରଣ ଲୋକଙ୍କ ପରିବାରର ଚଳଣି ସହିତ ମିଶି ସେମାନଙ୍କର ଆପଣାର ଡାକ୍ତର ହେଇଗଲେ । ବନ୍ଧୁ ବିଭୂତିବାବୁ ବଲାଙ୍ଗିରର ସ୍ଥାୟୀ ବାସିନ୍ଦା ମଧ୍ୟ ହେଇଯାଇଥିଲେ ।

ସେଇଦିନୁ ସବୁଦିନ ପାଇଁ ସେ ମୋର ଘନିଷ୍ଠ ବନ୍ଧୁ ମଧ୍ୟ ହୋଇଗଲେ ।

ବଲାଙ୍ଗିରରେ ବହୁ ଲୋକଙ୍କୁ ପରିହାସ ଛଳରେ ସେ କହନ୍ତି– ଏ ମାଷ୍ଟରଟି ମୋର ବି ଗୁରୁ ହେଇଗଲା । ଭାରି ମଞ୍ଜାଳୁଆଁ କଥା ପଦିଏ କହି ମତେ ବଦଳେଇ ଦେଲା । ମୁଁ ଜାଣିଲି ପରିସ୍ଥିତି ଓ ପରିବେଶରୁ ମଣିଷ ଅନେକ କଥା ଶିଖେ ।

ମୋ ପାଇଁ ଏଠି ଏମିତି ଅନେକ ଆକସ୍ମିକ ଘଟଣା ଘଟିଥିଲା, ସ୍ମୃତିର ଫସଲ ହୋଇ ।

ଅବଶ୍ୟ ରାଜେନ୍ଦ୍ର କଲେଜ ଥିଲା ମୋର କର୍ମକ୍ଷେତ୍ର । ମାତ୍ର ସାରା ସହର ଥିଲା ମୋର ଆତ୍ମୀୟତାର କ୍ଷେତ୍ର । ଏକ ଚଳମାନ ଜୀବନଧାରାର ମହାତୀର୍ଥ ।

ବଲାଙ୍ଗିର ମୋର ସ୍ମୃତିର ସହର । ଜୀବନର ଓଜନିଆ ସମୟତକ ମୁଁ ଏଇଠି କଟେଇଚି । ବଲାଙ୍ଗିର ସହରକୁ ପାଦରେ ବାରମ୍ବାର ମାପିବା ବେଳେ ମୁଁ ମୋ ଜୀବନର ସାମ ସଙ୍ଗୀତ ଶୁଣିଚି– ଭାଗ୍ୟର ନିର୍ମମ ଉପହାସ ସହିଚି; ସ୍ନେହୀ ଲୋକଙ୍କର ମଧୁର ହାର୍ଦ୍ଦିକତା ପାଇଚି । ବଲାଙ୍ଗିର କେବେ ମତେ ନିଃସଙ୍ଗ କରି ନାହିଁ; କିନ୍ତୁ ମୁଁ ବାରମ୍ବାର ନିଃସଙ୍ଗ ହୋଇଚି । ନିଜକୁ ନିଜେ ନିଃସଙ୍ଗ କରିଚି । ଅନେକ ବନ୍ଧୁମାନଙ୍କ ଗହଣରେ ଥାଇ ମୁଁ ନିଃସଙ୍ଗ ପାଲଟିଚି ।

ଶୁଣିଚି, ଅତଳ ସମୁଦ୍ର କୁଆଡ଼େ ନିରବ; ଦିଗହଜା ମରୁଭୂମି ମଧ୍ୟ ଶବ୍ଦହୀନ । ମାତ୍ର ବଲାଙ୍ଗିର ମୋ ପାଇଁ ଅତଳ ସମୁଦ୍ର ସାଜିଥିଲା ଏବଂ ଦିଗହଜା ମରୁଭୂମି ଭଳି ନିରବ ହୋଇଥିଲା ମୋର ଚେତନଶୀଳ ପ୍ରଜ୍ଞା ଏକକଟି ପାଇଁ । ଏଇ ଭିଡ଼ର ସହର ଭିତରେ ମୁଁ ଏକଲା ମଣିଷଟିଏ ହୋଇଥିଲି । ବେଦନାବୋଧ ଓ ଯନ୍ତ୍ରଣା– ଜର୍ଜରିତ ମୁହୂର୍ତ୍ତଗୁଡ଼ିକୁ ମୁଁ ମୋ କୁରୁମ ପିଠିରେ ଲଦି ନିଃସଙ୍ଗ ହେଉଥିଲି । କିନ୍ତୁ ଗୋଟାଏ କଥା ନିଶ୍ଚିତ ଭାବେ କହିବି; ମୁଁ କୁରୁମ ହେଇଚି ସତ, ହେଲେ ଅନେକ ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ଦ୍ଦେଶରେ ଜାତୀୟ ବଡ଼ ଦେଉଳ ସୃଷ୍ଟି ପାଇଁ ବୋଧହୁଏ ମୋର

ଥିଲା ସେଇ କୂର୍ମ ରୂପ । ବଡ଼ ଦେଉଳ ସୃଷ୍ଟି କରିପାରିଚି କି ନା ମୁଁ ଜାଣେନା, ମାତ୍ର କେବେ କେଉଁଠି ସେ ଇନ୍ଦ୍ରଦ୍ୟୁମ୍ନମାନଙ୍କୁ ଦେଖିଲେ କେମିତି ଗୋଟାଏ ଭୟ ଲାଗୁଥିଲା । ପର ମୁହୂର୍ତ୍ତରେ ଭାବୁଥିଲି, ସେଇ ଇନ୍ଦ୍ରଦ୍ୟୁମ୍ନମାନେ ମତେ ଖଟାନ୍ତୁ ପଛେ, ଆଉ ଥରେ ସେମିତି ବଡ଼ ଦେଉଳ ସୃଷ୍ଟି କରିବାକୁ ସୁଯୋଗ ମିଳନ୍ତା କି ? ଆଃ, ସେ ଯନ୍ତ୍ରଣାରେ ବି ଥିଲା ଆନନ୍ଦ ! ଦୁଃଖ ଯନ୍ତ୍ରଣାରେ ଯେଉଁ ଆନନ୍ଦ ଥାଏ, ସୁଖ ଆନନ୍ଦରେ ବୋଧେ ତାହା ନ ଥାଏ ।

ମୋ ଜୀବନରେ ବଲାଙ୍ଗିରରେ ଥିବା କାଳରେ ଏମିତି କିଛି ନିର୍ଯାତନା ନାହିଁ ଯାହାକୁ ମୁଁ ସହ୍ୟ ନ କରିଚି । ଦୁଇ ଦୁଇଥର ପି.ଏସ୍.ସି. ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଛି । ଥରେ ସାକ୍ଷାତ୍‌କାର ହୋଇଥିଲା; ଆଉ ଥରେ ଫର୍ମରୁ ପ୍ରମାଣପତ୍ର ହଜିଗଲା । ବଡ଼ ଦୁର୍ଭାଗ୍ୟ ସେ କଥା । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଠୋକ୍‌କର ଖାଇଚି ଏଇଠି । ଲେଖକୀୟ ପ୍ରେମରେ ଦିନେ ଉବୁଟୁବୁ ହେଇଥିଲି । ମୋ ଲେଖା ପଢ଼ି ଜଣେ ମୋର ପ୍ରେମିକା ସାଜିଥିଲେ । ପରସ୍ପରକୁ ନ ଦେଖି ପ୍ରେମ । ରୋମାଣ୍ଟିକ୍ ପତ୍ରାଳାପ । ଶେଷରେ ଆଉ ଜଣକୁ ସେ ବାହା ହେଇ ଚାଲିଗଲା । ଏଭଳି ମୃତ ସ୍ୱପ୍ନର ସହର ଥିଲା ଏଇ ବଲାଙ୍ଗିର । ପ୍ରେମିକା ବୋଲି ମାୟା କରିଥିବା ଚରିତ୍ରଟି ଏ ସହରଠାରୁ ବହୁ ଦୂରର । ମାତ୍ର ଏ ସହର ମତେ ଆଶ୍ୱାସନା ଦେଲା । ସମସ୍ତ ପ୍ରକାରର ଯନ୍ତ୍ରଣାକୁ ନିଜର କରିବାର ମନ୍ତ୍ର ଶିଖାଇଲା । ହଁ, ଏକଥା ସତ– ଏଇଠି ମୁଁ ହେଇଚି ସବୁଠାରୁ ଅଧିକ ସୃଜନଶୀଳ । ବଲାଙ୍ଗିର ମତେ ବାରମ୍ବାର ଆତ୍ମୀୟତା ଦେଖାଇଥିଲା; କିନ୍ତୁ ଭାଗ୍ୟ ମୋତେ ବାରମ୍ବାର ଠକିଥିଲା । ଏବେବି ରାଜେନ୍ଦ୍ର କଲେଜରେ, କବି କୁଟୀରରେ, ପାଟନା ହୋଟେଲରେ, ପାଣିଗ୍ରାହୀ ପ୍ରେସ୍‌ରେ, ଜ୍ୟୋତି ଟ୍ରେଡ଼ିଂ ହାଉସ୍‌ରେ, ସିନେମା ହଲ ଛକରେ, ବନ୍ଧୁମାନଙ୍କ ଘରେ (ଏବଂ... କେଉଁଠି ନୁହେଁ ?) ମୋ ସ୍ମୃତିମାନେ ବିଚରଣ କରୁଛନ୍ତି । ମୁଁ ସ୍ମୃତିର ଗୋଟାଏ ଭାରବାହୀ ପଶୁ ହୋଇ ସେଠୁ ଚାଲିଆସିଥିଲି । ବଲାଙ୍ଗିର ମୋର ଅନେକ ଗଳ୍ପର, ଅନେକ ନାଟକର ଏବଂ ଅନେକ ଆଲୋଚନାର ସହର ।

ପାଖାପାଖି ଛଅଟା ବର୍ଷ ଏଠି କଟିଗଲା ।

ଦିନେ ତ ଉପଲବ୍ଧି କରି ନାହିଁ ନିଃସଙ୍ଗତାକୁ ନେଇ ଏତେଗୁଡ଼ା ଦିନ ମୁଁ କେମିତି କଟେଇବି ଏଠି । ବରଂ ଦିନଗୁଡ଼ାକ କେମିତି ଆସିଲେ ଏବଂ କେମିତି ଗଲେ, ମୁଁ ଜାଣିପାରିଲିନି । ଏକଥା ସତ, ମୁଁ ବଲାଙ୍ଗିରର ହୋଇସାରିଥିଲି । କିନ୍ତୁ

ମୁଁ ନିଜେ ମୋ ନିଜର ହୋଇପାରି ନ ଥିଲି । ଦୁଃଖ–ଯନ୍ତ୍ରଣା ଭିତରେ କେମିତି ବଞ୍ଚିବାକୁ ହୁଏ ତାହା ମୋତେ ବଲାଙ୍ଗିର ଶିଖେଇଥିଲା । ଶିଖେଇଥିଲେ ବଲାଙ୍ଗିରର ମଣିଷ, ପାଣି, ପବନ– ସବୁକିଛି । ମୋ ପାଇଁ ଚିରଦିନ ଅମାୟିକ ଏଇ ବଲାଙ୍ଗିର ! ତା'ଠୁଁ ଦୂରକୁ ଆସି ତାକୁ ମୁଁ କେତେ ଭଲ ପାଉଥିଲି, ତାହା ବୁଝିପାରୁଚି । ବୋଧେ ବିଚ୍ଛେଦ ପ୍ରକୃତ ଭଲ ପାଇବାକୁ ମାପିବାର ସୁଯୋଗ ଦିଏ ।

ବଲାଙ୍ଗିର ମୋ ପାଇଁ ଥିଲା ଅନେକ ହୀରା, ମୋତି, ମାଣିକର ବଣିକଙ୍କ ସହର । ମାତ୍ର ମୁଁ ଥିଲି ତା'ର ଜଣେ କପର୍ଦ୍ଦକଶୂନ୍ୟ ଗ୍ରାହକ ।

।। ସତର ।।

# ବିଲମ୍ବିତ ମଧ୍ୟାହ୍ନ

ବଲାଙ୍ଗିର ଥିଲା ମୋ ପାଇଁ ଉତ୍ଥାନ ପତନର କର୍ମଭୂମି, ଏବଂ ମୋର ଆତ୍ମପ୍ରତିଷ୍ଠାର ଆଦିଭୂମି । ଜଣେ ଭଲ ଅଧ୍ୟାପକ ବୋଲାଇବାର ଭିତ୍ତି ମତେ ଏଇଠି ମିଳିଥିଲା । ଏଠି କୌଣସି ସ୍କୁଲର ବାର୍ଷିକ ଉତ୍ସବ, ଗଙ୍ଗାଧର ଜୟନ୍ତୀ ଓ ଏ ଅଞ୍ଚଳର କଲେଜ ଉତ୍ସବ ଆଦିରେ ଯୋଗଦେବା ମୋ ପାଇଁ ବାଧ୍ୟବାଧକତା କାମରେ ପରିଣତ ହୋଇଯାଇଥିଲା । ପ୍ରାୟ ଦିନ ସନ୍ଧ୍ୟାରେ ମୁଁ ଏଇ କାମରେ ବ୍ୟସ୍ତ ରହୁଥିଲି । ମେହେର ଜୟନ୍ତୀ ଏ ଅଞ୍ଚଳର ଜାତୀୟ ପର୍ବ । ପାଖାପାଖି ପନ୍ଦର / କୋଡ଼ିଏ ଦିନ ଧରି ଏ ଉତ୍ସବ ଜିଲ୍ଲାର ଭିନ୍ନ ଭିନ୍ନ ସ୍ଥାନରେ ପାଳିତ ହୁଏ । ଏଭଳି ଉତ୍ସାହଜନକ ଭାବେ କବିଙ୍କ ଜୟନ୍ତୀ ପାଳନ ହେଉଥିବା ଦେଖି ମତେ ଭାରି ଆନନ୍ଦ ଲାଗୁଥିଲା । ଭାବୁଥିଲି, ଗଙ୍ଗାଧର କେବଳ ଜଣେ ପ୍ରତିଭାଧର କବି ନୁହଁନ୍ତି, ଜଣେ ଭାଗ୍ୟବାନ୍ ସ୍ରଷ୍ଟା । ଏତେ ବିପୁଳ ଉତ୍ସାହ ଉଦ୍ଦୀପନାର ସହିତ ଜୟନ୍ତୀ ପାଳନ ହେବା ଅନ୍ୟ ସାହିତ୍ୟିକଙ୍କ ଭାଗ୍ୟରେ ଜୁଟିବା ବିରଳ । ପ୍ରତିଟି ସଭାରେ ମତେ ଗଙ୍ଗାଧରଙ୍କ ବିଷୟରେ ନୂଆ ଦିଗରୁ ନୂଆ କଥା କହିବାକୁ ପଡୁଥିଲା । କାରଣ କିଛି ଶ୍ରୋତା ଯେତେ ଦୂର ହେଉପଛେ ସେଠିକୁ ଯାଉଥିଲେ ଏବଂ ପରେ ପରେ ନିଜ ମତାମତ ଜଣାଉଥିଲେ ।

୧୯୭୧ ମସିହା ମୋ ପାଇଁ ହୋଇ ଉଠିଥିଲା ଏକ ବ୍ୟସ୍ତବହୁଳ ବର୍ଷ । କେଜାଣି କେମିତି ଗୁଡ଼ାଏ ଉଲ୍ଲେଖନୀୟ ସାମାଜିକ ଅନୁଷ୍ଠାନରେ ମୁଁ ଯୋଡ଼ି ହୋଇଯାଇଥିଲି । ମୋର ଦୁଇଜଣ ସାହିତ୍ୟିକ ବନ୍ଧୁ ପ୍ରସନ୍ନ କୁମାର ପାଟଶାଣୀ ଓ ସଦାଶିବ ଦାଶ ଦୁଇଟି ପତ୍ରିକା ପ୍ରକାଶ କରୁଥିଲେ । ସଦାଶିବର ପତ୍ରିକା ନାଁ ଥିଲା 'ଆଭା' ଏବଂ ପ୍ରସନ୍ନର ପତ୍ରିକା ନାଁ ଥିଲା 'ବେଳା' । 'ବେଳା'ର ଥିଲା ସମାଜବାଦୀ ବାମପନ୍ଥୀ ଆଭିମୁଖ୍ୟ । ମୁଁ ଏ ଦୁଇଟିଯାକ ପତ୍ରିକାର ଉପଦେଷ୍ଟା ଥିଲି । ବେଳା

ସହିତ 'ଅବଧୂତ ସାହିତ୍ୟ ଗୋଷ୍ଠୀ' ସଂପୃକ୍ତ ଥିଲେ । ଏମାନେ ଥିଲେ ଚରମପନ୍ଥୀ ବାମମାର୍ଗୀ ସ୍ରଷ୍ଟା । ସମସ୍ତେ ଛଦ୍ମ ନାମରେ ଲେଖୁଥିଲେ । ଏବେ ସେମାନଙ୍କ ପରିଚୟ ପ୍ରକାଶ କଲେ, ଭାବୁଚି କିଛି ଅସୁବିଧା ହେବ ନାହିଁ । ମୁଖ୍ୟତଃ ପ୍ରସନ୍ନ, ସଦାଶିବ, ମୁଁ ଆଉ ନବୀନ ସୁବୁଦ୍ଧି ଏ ଗୋଷ୍ଠୀରେ ଥିଲୁ । ନକ୍ସଲ ପନ୍ଥୀଙ୍କ କାର୍ଯ୍ୟକଳାପ ସେତେବେଳେ ସମସ୍ତଙ୍କର ଚର୍ଚ୍ଚିତ ପ୍ରସଙ୍ଗ ଥିଲା । ବାମପନ୍ଥୀ ଚିନ୍ତାଧାରାରେ ବିଶ୍ୱାସ ରଖିବା ଅର୍ଥ ତୁମକୁ ନକ୍ସଲପନ୍ଥୀ ରୂପେ ସନ୍ଦେହ କରାଯିବା ସ୍ୱାଭାବିକ । ସେହି ସୂତ୍ରରେ ବେଶି ପ୍ରସନ୍ନ ସନ୍ଦେହର ବଳୟ ଭିତରେ ରହିଥିଲା । ତା' ସହିତ ସଂପର୍କ ବା ଯୋଗାଯୋଗ ରଖିଥିବା ବ୍ୟକ୍ତିମାନଙ୍କର ଗତିବିଧିକୁ ବି ସତର୍କ ଦୃଷ୍ଟିରେ ଦେଖାଯାଉଥିଲା ।

ସେ ସନ୍ଦେହ ତାଲିକାରେ ମୁଁ ବି ଥିଲି ।

ଏହା ଜାଣିବା ସେତେବେଳେ ମୋ ସାଧ ବାହାରେ ଥିଲା ।

ମୁଁ ଜାଣିଥିଲି, ଛଦ୍ମ ନାମରୁ ଆମକୁ ଚିହ୍ନି ହେବ ନାହିଁ ।

ବିପଦ ଆପଦର ଯୋଗାଯୋଗ ବଡ଼ ବିଚିତ୍ର ।

ଠିକ୍ ସେଇ ସମୟରେ ଆଉ ଗୋଟାଏ ଘଟଣା ଘଟିଗଲା । ବଲାଙ୍ଗିରରେ ଜଣେ ତରୁଣ ନାମକରା ଡାକ୍ତର ଥିଲେ । ତାଙ୍କ ନାଁ ବୋଧହୁଏ ପ୍ରିୟବ୍ରତ ରଥ । ସେ ଜନସଂଘର ଜଣେ ସଚ୍ଚା କର୍ମୀ । ମାଟିଆ ହାପ୍ ପ୍ୟାଣ୍ଟ ଓ ଧଳା ହାପ୍ ସାର୍ଟ ପିନ୍ଧି ପ୍ରତିଦିନ ସନ୍ଧ୍ୟାରେ ସେ ଦଳେ ଯୁବକଙ୍କୁ ନେଇ ଡ୍ରିଲ ପାରେଡ୍ କରୁଥିଲେ । ସ୍ଥାନୀୟ ଲୋକଙ୍କ ଭାଷାରେ ସେ ବାଡ଼ିଖେଳ କରନ୍ତି । ଏ ବାଡ଼ିଖେଳ ସହିତ ତାଙ୍କ ରାଜନୀତିକ ଆଦର୍ଶର କି ସଂପର୍କ, ସେ ବିଷୟରେ ମୋର କିଛି ସ୍ପଷ୍ଟ ଧାରଣା ନ ଥିଲା । ମତେ ଡକ୍ଟର ରଥଙ୍କ ବ୍ୟକ୍ତିତ୍ୱ ଖୁବ୍ ଭଲ ଲାଗୁଥିଲା । ଗଲା-ଅଇଲା ବେଳେ କୋଉଠି ଦେଖା ହେଇଗଲେ ସେ ହସହସ ମୁହଁରେ ମତେ ସମ୍ଭାଷଣ ଜଣାନ୍ତି । ଦିନେ ଦିନେ କହନ୍ତି– 'ଆପଣ ଏଠି କିଛି ବର୍ଷ ରହିଯାଆନ୍ତୁ; ଅନ୍ୟମାନଙ୍କ ଭଳି ବଦଳି ହେଇ କଟକ ଭୁବନେଶ୍ୱର ପଳେଇ ଯିବାକୁ ଚେଷ୍ଟା କରନ୍ତୁ ନାହିଁ । ଆମ ଏଠିକା ପିଲାଙ୍କର ଲାଭ ହେବ' ।

ମୁଁ ତାଙ୍କ କଥାରେ ହସି ଦିଏ ।

ତାହାହିଁ ମୋର ଉତ୍ତର । ଏଠୁ ଯିବା ନ ଯିବା ତ ମୋ ଅକ୍ତିଆର ବାହାରେ । ସେ କଥା ସରକାରୀ କଳ ସ୍ଥିର କରିବ । ଏସବୁ କଥା ମନରେ ଭାବିଥିଲେ ବି

ତାଙ୍କୁ କିଛି କହେ ନାହିଁ । ଦିନେ ସେ ଏକ ପ୍ରସ୍ତାବ ରଖିଲେ ମୋ ପାଖରେ । ତାଙ୍କ ସଂଘ ତରଫରୁ ଖୁବ୍ ବଡ଼ ଆକାରରେ ନେତାଜୀ ଜୟନ୍ତୀ ପାଳନ କରାଯିବ କଳାମଣ୍ଡପ ପଡ଼ିଆରେ । ପ୍ରତିବର୍ଷ ପାଳିତ ହୁଏ । ଏ ବର୍ଷ ଟିକେ ନିଆରା । ରାୟପୁରରୁ ଜଣେ ମହାନ୍ ସଜ୍ଜନ ସେଥିରେ ଯୋଗ ଦେବେ । ଆପଣ ସେଦିନ ଆମର ମୁଖ୍ୟବକ୍ତା । ଆପଣଙ୍କୁ ଶୁଣିବା ପାଇଁ ଆମମାନଙ୍କର ବିଶେଷ ଆଗ୍ରହ । ସେଦିନ ସନ୍ଧ୍ୟାରେ ଅନ୍ୟ କୌଣସି କାର୍ଯ୍ୟକ୍ରମ ରଖିବେ ନାହିଁ । ଆମର ସଭା ଆରମ୍ଭ ହେବ ଠିକ୍ ସାଢ଼େ ପାଞ୍ଚକୁ । ମନେ ରଖିବେ ଦୟାକରି ।

ମୁଁ ହଁ ଭରିଲି । ଆଗରୁ କହିଚି, ଜାତୀୟ ସ୍ୱାଭିମାନର ପୃଷ୍ଠଭୂମିରେ ମୋର ପ୍ରିୟତମ ମହାନାୟକ ହେଲେ ନେତାଜୀ ସୁଭାଷଚନ୍ଦ୍ର ବୋଷ । 'ପ୍ରଜାତନ୍ତ୍ର'ରେ ଥିଲାବେଳେ ଶ୍ରୀ ରାଜେନ୍ଦ୍ର ବର୍ମାଙ୍କ ପ୍ରେରଣାରେ ସୁଭାଷ ଚନ୍ଦ୍ରଙ୍କ ଉପରେ ଲିଖିତ ପ୍ରାୟ ଅଧିକାଂଶ ବହି ପଢ଼ିବାର ସୁଯୋଗ ପାଇଥିଲି । ତେଣୁ ନେତାଜୀ ଜୟନ୍ତୀରେ ଯୋଗ ଦେବାକୁ ଆଗ୍ରହରେ ହଁ କହିଲି । ଏ ପର୍ଯ୍ୟନ୍ତ ଏଠି ଅଧିକାଂଶ ସଭା ସାହିତ୍ୟ ବା ସାହିତ୍ୟିକଙ୍କୁ ନେଇ ହେଉଥିଲା । ଏ ସଭା ଭିନ୍ନ ପ୍ରକାରର; ଶ୍ରୋତା ବି ଭିନ୍ନ ରୁଚିର । ଠିକ୍ ଅଛି, ଯିବା ।

ସଭାଦିନ ସଭାସ୍ଥଳକୁ ଦେଖି ମୁଁ ଚକିତ ହୋଇଗଲି । ବା–ବା ! କେତେ ଲୋକ ! ଚାରିଆଡ଼ ମୁଣ୍ଡମୟ । ଶୁଣିଲି, ସେମାନେ ବୁହାହୋଇ ଆସିନାହାନ୍ତି । ନେତାଜୀ ପ୍ରୀତି କିମ୍ବା ସଂଘ କାର୍ଯ୍ୟ ଭାବି ଏମାନଙ୍କର ଭିଡ଼ । ଡକ୍ଟର ରଥଙ୍କ ସାଂଗଠନିକ ଦକ୍ଷତାକୁ ମଧ ପ୍ରଶଂସା କରିବାକୁ ପଡ଼ିବ । ସେଦିନ ସେ ନିଜେ ସଭା ପରିଚାଳନା କରୁଥିଲେ । ସଭାର ଆଭିମୁଖ୍ୟ ଓ ଅତିଥି ପରିଚୟ ପ୍ରଦାନ ପରେ ମତେ ପ୍ରଥମେ ବକ୍ତବ୍ୟ ରଖିବା ପାଇଁ ସେ ଅନୁରୋଧ କଲେ । ନେତାଜୀଙ୍କ ସଂପର୍କରେ କିଛି କହିବା ମୋ ପାଇଁ ଥିଲା ଭାବପ୍ରବଣତାର ପ୍ରସଙ୍ଗ । ମୁଁ ଉଦାତ୍ତ କଣ୍ଠରେ କହି ଚାଲିଲି । ସହସ୍ରାଧିକ ଲୋକ ସ୍ତବ୍ଧ–ନୀରବତା ଭିତରେ ଶୁଣୁଥିଲେ । ଅଧ୍ୟାପକ ସୁଲଭ ଢଙ୍ଗରେ ପ୍ରାୟ ପଇଁଚାଳିଶ ମିନଟ୍ କହି ସାରିବା ପରେ ମୁଁ ବାଣୀକୁ ବିରାମ ଦେଲି । ଜୋରରେ କରତାଳି ବାଜିଲା । ଡକ୍ଟର ରଥ ଅତ୍ୟନ୍ତ ଖୁସିହୋଇ ମତେ କୁଣ୍ଢାଇ ପକାଇଲେ ।

ଘଟଣାଟି ଏଇଠି ସରିଲା ନାହିଁ । ଗୋଟିଏ ରାଷ୍ଟ୍ରୀୟ ହିନ୍ଦୀ ଦୈନିକ ପତ୍ରିକାର ସାମ୍ନା ପୃଷ୍ଠାରେ ଫଟୋ ସହିତ ଏ ସମ୍ବାଦ ବିସ୍ତାରିତ ଭାବରେ ପ୍ରକାଶ ପାଇଥିଲା ।

ତା'ପରେ ଆମ ରାଜ୍ୟ ପୋଲିସ ଓ ପ୍ରଶାସନ ମୋ ବିଷୟରେ ଅଧିକ ତଥ୍ୟ ସଂଗ୍ରହ ପାଇଁ ତତ୍ପର ହୋଇ ଉଠିଲେ । ବଲାଙ୍ଗିରରେ ସେତେବେଳେ ଏସ୍.ପି. ଥିଲେ ଶ୍ରୀ ଚୌହାନ । ସେ ଚଳନ୍ତା ବସ୍‌ରେ ଆଉ ଜଣେ ଆଇ.ପି.ଏସ୍. ଅଫିସର ମଲ୍ଲିକଙ୍କ ସହ ମିଶି ଜଣେ ମହିଳା ଡାକ୍ତରଙ୍କୁ ଅସଦାଚରଣ କରିଥିଲେ । ତେଣୁ ସେ କିଛିଦିନ ସସ୍‌ପେଣ୍ଡ ହୋଇଥିଲେ । ତା'ପରେ ତାଙ୍କୁ ବଲାଙ୍ଗିରକୁ ପୋଷ୍ଟିଂ ହୋଇଥିଲା । ତାଙ୍କରି ପାଖରେ ମୋ ଗତିବିଧି ଓ କ୍ରିୟାକଳାପର ତଦନ୍ତ ଦାୟିତ୍ୱ ଥିଲା । ଏକଥା ମୁଁ ବହୁ ପରେ ଜାଣିଲି । ଆଗରୁ ନକ୍ସଲ ସମର୍ଥକ ବୋଲି ରିପୋର୍ଟର ପରୀକ୍ଷା ଚାଲିଥିଲା । ଏବେ ଜନସଂଘର ସକ୍ରିୟ ସହଯୋଗୀ ବୋଲି ଏକ ଗୋପନୀୟ ଅନୁସନ୍ଧାନ କାର୍ଯ୍ୟ ଯୋଡ଼ି ହେଲା । ଏକଥା ପ୍ରଶାସନ ଖୁବ ଧୀରସ୍ଥିର ଓ ଗୋପନ ଭାବରେ ଚାଲୁ ରଖିଥିଲେ । କାରଣ ମୁଁ ଜଣେ ଗେଜେଟେଡ୍ ସରକାରୀ କର୍ମଚାରୀ । ମୋର ଗତିବିଧି ଓ କ୍ରିୟାକଳାପ ସରକାରଙ୍କ ଆଖି ଆଗରେ ସ୍ୱଷ୍ଟ ଦିଶୁଥିବା ଦରକାର ।

ଏକସ୍ତରୀ ମସିହାର ଶେଷ ପାଦକୁ ଭାରତର ଜାତୀୟ ପୃଷ୍ଠପଟରେ ଏକ ରାଜନୀତିକ ଘନଘଟା ଘଟିଗଲା । ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏହି ସମୟରେ ଏକ ସଫଳ କୂଟନୀତିକ ପଦକ୍ଷେପ ନେଲେ । ଦେଶ ସ୍ୱାଧୀନ ହେବା କାଳରେ ବ୍ରିଟିଶ ସରକାର ଚକ୍ରାନ୍ତକରି ଭାରତ ଭୂମିକୁ ତିନି ଖଣ୍ଡରେ ବିଭାଜନ କରି ଦେଇଯାଇଥିଲେ । ପୂର୍ବ ଓ ପଶ୍ଚିମ ପଟର ଦୁଇଖଣ୍ଡ ପାକିସ୍ଥାନ ଆଉ ବୃହତ୍ତର ହିନ୍ଦୁ ଭୂଖଣ୍ଡଟି ହିନ୍ଦୁସ୍ଥାନ ବା ଭାରତ ହୋଇଥିଲା । ପୂର୍ବ ପାକିସ୍ଥାନ ଅଧିକ ଶସ୍ୟଶ୍ୟାମଳା ଓ କୃଷି ଉତ୍ପାଦନକ୍ଷମ ଥିଲା । ମାତ୍ର ପଶ୍ଚିମ ପାକିସ୍ଥାନ ଥିଲା ସରକାରୀ କ୍ଷମତାର କେନ୍ଦ୍ରସ୍ଥଳ; ଉପଭୋକ୍ତାଙ୍କ ଉପଭୋଗର ଭୂମି । ପୂର୍ବର ଉପାଦାନ ପଶ୍ଚିମରେ ବିଶେଷ ଭାବେ ବିନିଯୋଗ ହେଉଥିଲା । ଫଳରେ ଅଭାବ, ଦୈନ୍ୟ ଓ ପଶ୍ଚିମ ପାକିସ୍ଥାନର ସୈନ୍ୟ ଶାସକଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ପଡ଼ିଥିଲେ ପୂର୍ବ ପାକିସ୍ତାନୀମାନେ । ସେତିକିବେଳେ ସୀମାହୀନ ପୂର୍ବ ପାକିସ୍ଥାନୀ ଶରଣାର୍ଥୀ ଆସି ଭାରତବର୍ଷରେ ଆଶ୍ରୟ ନେଉଥିଲେ । ଭାରତୀୟ ଲୋକେ ସେମାନଙ୍କ ପାଇଁ ଅତିରିକ୍ତ ଡାକଟିକେଟ ଆକାରରେ ଅର୍ଥଦାନ କରି ସେମାନଙ୍କ ଖର୍ଚ୍ଚ ବହନ କରୁଥିଲେ । ଶରଣାର୍ଥୀ ବୋଝ ଓ ଅର୍ଥବୋଝ କ୍ରମଶଃ ଭାରତୀୟଙ୍କ ଉପରେ ଚାପ ହୋଇପଡ଼ିଲା । ଆନ୍ତର୍ଜାତିକ ସ୍ତରରେ ଏ ସମସ୍ୟା ମଧ୍ୟ ଆଲୋଚିତ ହେଲା ।

ଭାରତକୁ କୂଟନୀତିକ ସମର୍ଥନ ଜଣାଇଲା ମିତ୍ର ରାଷ୍ଟ୍ର ଋଷିଆ । ମାତ୍ର ପାକିସ୍ଥାନକୁ ସହଯୋଗ କଲା ଆମେରିକା । ଏପରିକି ଆମେରିକା ଭାରତକୁ ଧମକ ଦେଇ ଯୁଦ୍ଧାସ୍ତ୍ର ପରିପୂର୍ଣ୍ଣ ସପ୍ତମ ନୌବହର ନାମକ ବିଶାଳ ଯୁଦ୍ଧ ଜାହାଜ ଭାରତ ମହାସାଗର ଆଡ଼କୁ ମୁହାଁଇଦେଲା । ତେଣେ ପୂର୍ବ ପାକିସ୍ଥାନର ଆର୍ଥିକ ଓ ସାମାଜିକ ସ୍ଥିତିକୁ ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରୁଥିବା ବଙ୍ଗବନ୍ଧୁ ମୁଜିବର ରହମାନଙ୍କୁ ବନ୍ଦୀକରି ପଶ୍ଚିମ ପାକିସ୍ଥାନର ନିରନ୍ଧ୍ର କାରାଗାରରେ ରଖି ଦିଆଗଲା । ଏହାକୁ ବିଶ୍ୱବାସୀ ନିନ୍ଦା କଲେ ।

ଫଳରେ ପୂର୍ବ ପାକିସ୍ଥାନରେ ଉତ୍ତେଜନା ଆହୁରି ବଢ଼ିଗଲା । ଢାକାର ରାଜରାସ୍ତାରେ ବିଦ୍ରୋହର ସୁଅ ଛୁଟିଲା । ହଜାର ହଜାର ଯୁବକ-ଯୁବତୀ ବଳିଦାନ ପାଇଁ ନିଜେ ନିଜେ ଆଗେଇ ଆସିଲେ । ସାଧାରଣ ଜନତା ଦେଶପାଇଁ ମୁକ୍ତିଯୋଦ୍ଧା ସାଜି ଗରିଲା ଯୁଦ୍ଧ ଆରମ୍ଭ କରିଦେଲେ । ଦେଶ ରକ୍ତସ୍ନାତ ହେଲା । ପଦ୍ମା ନଦୀର ଜଳ ଲାଲ ହୋଇଗଲା । ସେତିକିବେଳେ ଭାରତବର୍ଷ କୌଣସି ଧମକକୁ ଖାତିର ନ କରି ପୂର୍ବବଙ୍ଗକୁ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଘୋଷଣା କଲା । ପରେ ପରେ ଋଷିଆ ସମେତ ଅନେକ ରାଷ୍ଟ୍ର ଏହାକୁ ସ୍ୱୀକୃତି ଦେଲେ । ଯେ କୌଣସି ପରିସ୍ଥିତିକୁ ମୁକାବିଲା ପାଇଁ ଋଷର ଆଣବିକ ରଣତରୀ ଭାରତର ଜଳସୀମା ପାଖରେ ପ୍ରସ୍ତୁତ ହୋଇ ରହିଲା । ସବୁ ସମୟରେ ମନେହେଉଥିଲା- ଯେ କୌଣସି ମୁହୂର୍ତ୍ତରେ ତୃତୀୟ ବିଶ୍ୱଯୁଦ୍ଧ ଲାଗି ଯାଇପାରେ । କୂଟନୀତି ବିଶାରଦା ଇନ୍ଦିରା ଗାନ୍ଧୀ ଜଗତଜିତ୍ ସିଂ ଅରୋରାଙ୍କୁ ଇଷ୍ଟର୍ଣ୍ଣ ମୁଖ୍ୟ କମାଣ୍ଡାଣ୍ଟ ଭାବେ ପୂର୍ବପଟ ଦାୟିତ୍ୱରେ ଆଣି ରଖିଦେଲେ । ସେ ଜେନେରାଲ ମାନେକ୍‌ସାଙ୍କ ନିର୍ଦ୍ଦେଶନାରେ ସେନା ପରିଚାଳନା କରୁଥିଲେ । ମୁକ୍ତିଯୋଦ୍ଧାଙ୍କ ସହିତ ଭାରତୀୟ ସେନା ମିଶି ପୂର୍ବ ବଙ୍ଗର ସବୁ ଅଞ୍ଚଳରେ ଛାଇ ହୋଇଗଲେ । ସେତେବେଳେ ପାକିସ୍ଥାନର ନବେ ହଜାର ସୈନ୍ୟ ପୂର୍ବବଙ୍ଗରେ ରହିଥିଲେ । ଜେନେରାଲ ମାନେକ୍‌ସା ସେମାନଙ୍କ ଗତିବିଧିକୁ ଲକ୍ଷ୍ୟ କରିପାରୁଥିଲେ । ସେ ବେତାର ବାର୍ତ୍ତାରେ ବାରମ୍ବାର ଘୋଷଣା କରୁଥିଲେ- ''ଷ୍ଟପ ଫାଇଟିଂ ଆଣ୍ଡ୍ ସରେଣ୍ଡର' । ଆମେ ତୁମମାନଙ୍କୁ ଚାରିଆଡୁ ଘେରି ସାରିଲୁଣି । ଆତ୍ମ ସମର୍ପଣ ବ୍ୟତୀତ ତୁମମାନଙ୍କର ଅନ୍ୟ କୌଣସି ରାସ୍ତା ନାହିଁ ।''

ଶେଷକୁ ତାହାହିଁ ହେଲା । ପାକିସ୍ଥାନ ସେନାଧ୍ୟକ୍ଷ ଜେନେରାଲ ନିଆଜି ତାଙ୍କର ଏକଦା ସହାଧ୍ୟାୟୀ ଭାରତର ସେନାଧ୍ୟକ୍ଷ ଜଗତ୍‌ଜିତ ସିଂ ଅରୋରାଙ୍କ

ପାଖରେ ତାଙ୍କର ସମଗ୍ର ସେନା ସହ ଆତ୍ମସମର୍ପଣ କଲେ । ସେହିଦିନ ବିଶ୍ୱରେ ଲେଖାହେଲା ଏକ ନବଜାତ ରାଷ୍ଟ୍ର ବାଙ୍ଗଲା ଦେଶର ଜନ୍ମଜାତକ । ସାରା ଭାରତବର୍ଷରେ ଆନନ୍ଦ ଉଲ୍ଲାସ ଖେଳିଗଲା । ବିଭିନ୍ନ ସ୍ଥାନରେ ବିଜୟ ପର୍ବ ପାଳିତ ହେଲା । ଓଡ଼ିଶାରେ ତତ୍‌କାଳରେ ମୁଖ୍ୟମନ୍ତ୍ରୀ ଥିଲେ ରାଜେନ୍ଦ୍ର ନାରାୟଣ ସିଂହଦେଓ । ସେ ବଲାଙ୍ଗିର ପାଟଣାର ରାଜା ଥିଲେ । ସେ ଜିଲାପାଳଙ୍କୁ ନିର୍ଦ୍ଦେଶ ଦେଲେ ଏ ବିଜୟ ଉତ୍ସବ ଖୁବ୍ ଜାକଯମକରେ ତାଙ୍କ ଜିଲାରେ ପାଳନ କରାହେଉ । ସେ ପୁଣି କହିଲେ ପାଳନ ଦିନ ସେ ଉପସ୍ଥିତ ରହିବାକୁ ଆଗ୍ରହୀ ।

ସ୍ଥିର ହେଲା ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟକ୍ରମ । ସବୁ ପ୍ରସ୍ତୁତି ବିଜୁଳି ବେଗରେ ଆରମ୍ଭ ହେଲା । ଏଥିପାଇଁ ଗୋଟିଏ ସାଂସ୍କୃତିକ ସବ୍‌କମିଟି ଗଢ଼ା ହେଲା । ସେଥିରେ ରାଜେନ୍ଦ୍ର କଲେଜରୁ ମୁଁ, ଟ୍ରେନିଂ କଲେଜରୁ ରବୀନ ଘୋଷ ଓ ମହିଳା କଲେଜରୁ ଶ୍ରୀମତୀ ସୁଗୁଣା ସଭ୍ୟ ମନୋନୀତ ହୋଇଥିଲୁ । ଗୀତ ଓ ଡ୍ୟାନ୍ସ କାର୍ଯ୍ୟକ୍ରମ ସହ ଏକ ନାଟକ ଅଭିନୟ ହେବାର ପ୍ରସ୍ତାବ ଆସିଲା । ରବୀନ ଦା' କହିଲେ, ନାଟକଟି ବାଙ୍ଗ୍‌ଲା ଦେଶ ଘଟଣାବଳୀକୁ ନେଇ ରତ୍ନାକରବାବୁ ତୁରନ୍ତ ଲେଖନ୍ତୁ । ଏଣେ ଲେଖାଯାଉଥିବ, ତେଣେ ଆମେ ରିହାରସେଲ୍ କରୁଥିବା । ଦେଖିବେ, ଏଇଟା ସବୁଠୁଁ ଭଲ ପ୍ରୋଗ୍ରାମ ହେବ । ଲୋକେ ଜାଣିପାରିବେ ଅସଲ ଘଟଣାଟି କ'ଣ ଥିଲା ।

ସମସ୍ତେ ବିପୁଳ ଉତ୍ସାହର ସହ ଏହାକୁ ସମର୍ଥନ କଲେ । 'ହଁ, ଠିକ୍ କଥା । ଏଇଟି ଭଲ ପ୍ରସ୍ତାବ ।'

ମୁଁ ହଠାତ୍ ଏତେ ବଡ଼ ବୋଝ ସମ୍ଭାଳି ପାରିବି କି ନା, କିଛି ସ୍ଥିର କରିପାରିଲିନି । ଶେଷକୁ କହିଲି, ନାଟକ ତ ଅଭିନୟ ହେବ ନିଶ୍ଚୟ; କିନ୍ତୁ ମୁଁ ଲେଖିପାରିବି କି ନାଇଁ କାଲି ସକାଳୁ ଆପଣମାନଙ୍କୁ କହିବି । ନାଟକର ଫର୍ମାଟ ଓ ଉପସ୍ଥାପନ ଶୈଳୀ ସ୍ଥିର କରିବା ଆଗ ଦରକାର ପଡ଼େ । ମତେ ଗୋଟାଏ ରାତି ସମୟ ଦିଅନ୍ତୁ । ମୁଁ ଚିନ୍ତା କରେ ।

ସବ୍‌କମିଟିର ସମସ୍ତ ସଭ୍ୟ ଏକସ୍ୱରରେ କହିଲେ, ଆମର ଦୃଢ଼ ବିଶ୍ୱାସ ଆପଣ ନିଶ୍ଚୟ ପାରିବେ । ରାତିଟା ସମୟ ନିଅନ୍ତୁ । ଏଇ କମିଟିରେ ଅନ୍ୟତମ ସଭ୍ୟ ଥିଲେ ଜିଲାର ଏସ୍.ପି. ଶ୍ରୀ ଚୌହାନ । ମୋ ପ୍ରତି ସମସ୍ତଙ୍କ ଆସ୍ଥା ଦେଖି ସେ ଖୁସି ଥିଲେ । ସେ ମୋ ପାଖକୁ ଲାଗିକରି ଆସି ବସି ପଡ଼ିଲେ । ଆମେ ଚା'

ପିଉଥିଲୁ । ସେ ତାରି ଭିତରେ ଧୀର କଣ୍ଠରେ କହିବାକୁ ଲାଗିଲେ– ମୁଁ ଆପଣଙ୍କ ସହିତ ବ୍ୟକ୍ତିଗତ ଆଳାପ କରିପାରି ନ ଥିଲି । ସୁଯୋଗ ବି ମିଳି ନଥିଲା । ପିଲାମାନଙ୍କଠାରୁ ଅନେକ ପ୍ରଶଂସା ଶୁଣିଚି ଆପଣଙ୍କର । ହେଲେ ତା'ପୂର୍ବରୁ ଆପଣଙ୍କୁ ନେଇ ଗୋଟାଏ ସରକାରୀ ନଥି ମୋ ପାଖରେ ପେଟ ଫୁଲେଇବାରେ ଲାଗିଥିଲା । କିଛିଦିନ ମୋ ଟେବୁଲ ଉପରେ ଥିଲା । ମୋ ବିଭାଗର ଲୋକେ ରିପୋର୍ଟ ଉପରେ ରିପୋର୍ଟ ଯୋଡ଼ି ଚାଲିଥିଲେ । କୋଉ ବିଷୟରେ ଜାଣନ୍ତି ? ଆପଣ ବାମପନ୍ଥୀ ଆଦର୍ଶନିଷ୍ଠ ନା ଜନସଂଘୀ । ଗତ ସପ୍ତାହରେ ମୁଁ ଏହାର ଫାଇନାଲ ରିପୋର୍ଟ ପଠାଇ ଦେଇଚି ।

ଏକଥା ଶୁଣି ମୁଁ ଭାରି ଛାନିଆଁ ହୋଇପଡ଼ିଲି । ପ୍ରଥମତଃ ମୋ ଚାକିରି ଏ ପର୍ଯ୍ୟନ୍ତ ଅସ୍ଥାୟୀ । ପି.ଏସ୍.ସି. ଥରେ ଧକ୍କା ଦେଇସାରିଲାଣି । ପୋଲିସ ରିପୋର୍ଟ ଯଦି ମୋ ବିରୁଦ୍ଧରେ ଯାଏ ତେବେ ଆଉ ଚାକିରିରେ ସ୍ଥାୟିତ୍ୱ ମିଳିବା ସମ୍ଭବ ନୁହେଁ । ପିଲାଙ୍କର କିମ୍ବା ଜନସାଧାରଣଙ୍କର ପ୍ରଶଂସା ମୂଲ୍ୟହୀନ ହୋଇପଡ଼ିବ ମୋ ପାଇଁ । ଏସ୍.ପି.ଙ୍କୁ ତ ପଚାରି ହେବନି, ସେ କ'ଣ ରିପୋର୍ଟ ଦେଲେ । ମନ କିନ୍ତୁ ଛଟପଟ ହେଲା । ନୀରବରେ ରହି ହେଉନଥାଏ; କିମ୍ବା ହଟାଦସ୍ତ ତାଙ୍କୁ ପଚାରି ହେଉନଥାଏ । ମାତ୍ର କେଇ ମୁହୂର୍ତ୍ତ ଆଗରୁ ତାଙ୍କ ସହିତ ବ୍ୟକ୍ତିଗତ ପରିଚୟ । କ'ଣ କରିବି ? ଅସ୍ଥିରତା ମୋ ପାଖ ଛାଡୁ ନଥାଏ । ହଠାତ୍ ସେ କହିଲେ, ଜିଲାପାଳ ଓ ମୁଁ ଶେଷ ସ୍ପର୍ଶ ଦେଲୁ ଏ ଘଟଣାର । ଆମେ କ'ଣ ରିପୋର୍ଟ ପଠାଇଲୁ ଜାଣିବାକୁ ଆପଣ ଆଗ୍ରହୀ ନୁହଁନ୍ତି ?

ମୁଁ କିଛି ନ କହି ନୀରବରେ ବଲବଲ କରି ଚାହିଁଥିଲି ତାଙ୍କ ମୁହଁକୁ । ସେ ନିଜେ ଜଣାଇବାକୁ ଚାହାନ୍ତି ଶୁଣି ମୁଁ ଅନୁମାନ କରିନେଲି, ନିଶ୍ଚୟ କିଛି ବିରୁଦ୍ଧ ମତ ଦେଇନାହାନ୍ତି ସେ । ପରେପରେ ସେ ସ୍ପଷ୍ଟକରି କହିଲେ– ରିପୋର୍ଟରେ ଲେଖିଲି, ସେ କମ୍ୟୁନିଷ୍ଟ ନୁହଁନ୍ତି କି ଜନସଂଘୀ ନୁହଁନ୍ତି, ସେ ଜଣେ ନିଷ୍ଠାପର ସଂସ୍କୃତିପ୍ରେମୀ ବୁଦ୍ଧିଜୀବୀ ।

ମୁଁ ଅତ୍ୟନ୍ତ ଖୁସିହୋଇ ତାଙ୍କ ସହିତ ହାତ ମିଳାଇଲି ଏବଂ ସହଜ ସରଳ ଭାବରେ 'ଥ୍ୟାଙ୍କ ୟୁ' କହି କୃତଜ୍ଞତା ଜଣାଇଲି । ଏକଥା ସତ ଯେ, ଏଇ ଘଟଣାଟି ମତେ 'ଦୁର୍ବାର ଗତି ପଦ୍ମା' ଭଳି ଛାୟା ନାଟକ ଲେଖିବାକୁ ଉତ୍ସାହ ଦେଲା । ସାରା ରାତି ଅନିଦ୍ରା ରହି ନାଟକର ସ୍କେଚ୍ ପ୍ରସ୍ତୁତ କଲି । ପରଦିନ ରବୀନ ଘୋଷ

ଓ ଅଧ୍ୟାପିକା ସୁଗୁଣାଙ୍କ ସହିତ ଆଗ ଆଲୋଚନା କଲି । ସେ ଦୁହେଁ ନୂଆ ଫର୍ମାଟର ନାଟକ ବିଷୟ ଶୁଣି ଖୁବ୍ ଉତ୍‌ଫୁଲ୍ଲିତ ହୋଇ ଉଠିଲେ । ଶୀଘ୍ର ଲେଖା ସାରିବାକୁ ମତେ କହିଲେ । ଏସ୍.ପି. ଚୌହାନଙ୍କ ସହିତ ପୂର୍ବ ଦିନରୁ ଘନିଷ୍ଠତା ଜମି ଯାଇଥିଲା । ତାଙ୍କ ଅଫିସ୍‌ରେ ମୁଁ ପହଞ୍ଚି ତାଙ୍କୁ ପୂରା ପ୍ଲାନ ବିଷୟରେ କହିଲି । ପଞ୍ଚାୟତ ଭବନ ପଛପଟେ ହେବ ମୁକ୍ତ ରଙ୍ଗମଞ୍ଚ । ରାଜେନ୍ଦ୍ର କଲେଜ ଓ ମହିଳା କଲେଜ ପିଲାମାନେ ହେବେ ଢାକା ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ ଓ ଟ୍ରେନିଂ କଲେଜ ପିଲା ହେବେ ବାଙ୍ଗ୍‌ଲାଦେଶୀ ମୁକ୍ତିଯୋଦ୍ଧା ଏବଂ ଆପଣଙ୍କ ପୋଲିସବାହିନୀ ହେବେ ପାକିସ୍ଥାନୀ ସୈନ୍ୟ । ଗୋଟାଏ ବଡ଼ ପ୍ରୋଜେକ୍ଟର ସହ ବଡ଼ ପରଦା ଆପଣ ଦେବେ । ବାସ୍, ତା'ପରେ ଦେଖିବା–

ମୁଁ ଏତିକି କହିଲା ପରେ ସେ ଖୁସିହୋଇ ଠିଆ ହୋଇ ପଡ଼ିଲେ ଏବଂ କହିଲେ, ବାଃ ଚମତ୍କାର ! ମୋର ସାରା ପୋଲିସ୍ ବାହିନୀ ଆପଣଙ୍କ ଦାୟିତ୍ୱରେ ରହିବେ । ହଁ, ଆମର କେତେକ ଯୁଦ୍ଧ ଦୃଶ୍ୟ ଅଛି । ତାକୁ ମଧ୍ୟ କାମରେ ଲଗାଇପାରନ୍ତି । ଫଲସ୍ ଫାୟାରିଂ ଓ ରଙ୍ଗିନ୍ ବିସ୍ଫୋରଣର ବନ୍ଦୋବସ୍ତ ତ କରିପାରିବା । ଆପଣଙ୍କ ଆଇଡ଼ିଆ ବଡ଼ ଚମତ୍କାର । ମୁଁ ଦେଖୁଚି ସେଥିରେ ଆଉ କ'ଣ ଯୋଗ କରିହେବ । ହଁ, ମୁଖ୍ୟମନ୍ତ୍ରୀଙ୍କ ପ୍ରୋଗ୍ରାମ ଫାଇନାଲ ହେଇଯିବା ଖବର ପହଞ୍ଚିଗଲାଣି । ଆଉ ଠିକ୍ ସାତଦିନ ପରେ । ତେଣୁ ଆମ ପ୍ରସ୍ତୁତି ରାପିଡ୍ ହେବା ଦରକାର ।

ହଉ ହେଲା–

ଏତକ କହି ମୁଁ ଆସି ଲେଖା ପ୍ରସ୍ତୁତିରେ ଲାଗିପଡ଼ିଲି । ପୂରା ତିନି ଦିନ ଲାଗିଗଲା ସାରିବାକୁ । ତା'ପରେ ରବୀନ୍ ଦା' ସାଙ୍ଗରେ ଆଲୋଚନା କଲି । କିଏ ବଙ୍ଗବନ୍ଧୁ ମୁଜିବୁର, କିଏ ଜେନେରାଲ ମାନେକ୍‌ସା, କିଏ ଇନ୍ଦିରା ଗାନ୍ଧୀ, କିଏ ରୋସ୍‌ନାରା ଆଦିଙ୍କ ଭଏସ୍ ଦେବେ ତାହା ସ୍ଥିର କଲୁ । ପାଣ୍ଡୁଲିପିର ଦଶଟା କପି ତିଆରି କରା ହେଲା । ଏହା ଛାୟା ନାଟକ । ତେଣୁ ପରଦାରେ ସେହି ସେହି ବ୍ୟକ୍ତିର ଛବିର ପ୍ରତିଫଳନ ସହ ସ୍ୱର ସ୍ପଷ୍ଟ ଶୁଣାଯିବା ଦରକାର । ସ୍କ୍ରିପ୍ଟ ପଢ଼ି ସ୍ୱର ଦେବାକୁ ପଡୁଥିଲା । ସେନାବାହିନୀର ମାର୍ଚ୍ଚିଂ ଏବଂ ଫାୟାରିଙ୍ଗ୍ ଦୃଶ୍ୟ ପୋଲିସ ଦଳ ଚମତ୍କାର ଭାବେ ପ୍ରସ୍ତୁତ କରିଥିଲେ । ଗୋଟାଏ ଦିନ ପୂର୍ବରୁ ରିହାରସେଲ୍‌ର ଉପସ୍ଥାପନା ହେଲା ।

କାର୍ଯ୍ୟକ୍ରମ ଦିନ ବଲାଙ୍ଗିର ସହର ଉତ୍ସବ ମୁଖରିତ ହୋଇ ଉଠିଲା । ପଞ୍ଚାୟତ ଭବନ ପରିସର ପାଲଟିଗଲା ଜନ ଅରଣ୍ୟ । ହଜାର ହଜାର ଲୋକ । ମୁଖ୍ୟମନ୍ତ୍ରୀ ପ୍ରଧାନ ଅତିଥି । ଜିଲାର ପ୍ରତ୍ୟେକ ପ୍ରମୁଖ ଅଧିକାରୀଙ୍କ ଭିଡ଼ । ପ୍ରଥମ ପନ୍ଦର ମିନିଟ୍ ସଭା; ତା'ପରେ ଦୁଇଟି କଣ୍ଠ ସଙ୍ଗୀତ ଓ ଗୋଟିଏ ଓଡ଼ିଶୀ ନୃତ୍ୟ । ଶେଷରେ ଦୁଇ ଘଣ୍ଟାର ଛାୟା ନାଟକ । ଘନଘନ କରତାଳି ଓ ଭାରତ ମାତାଙ୍କ ଜୟଧ୍ୱନିରେ ମଝିରେ ମଝିରେ ପ୍ରକଂପିତ ହୋଇ ଉଠୁଥିଲା ପରିବେଶ । ଆଶାତୀତ ସଫଳତା ସହ ଶେଷ ହେଲା ଏ ନାଟକ । ବନ୍ଦେ ମାତରମ୍ ସମବେତ ସଙ୍ଗୀତ ପରେ ବି ଲୋକେ ଘରକୁ ଫେରିବା ପାଇଁ ପ୍ରସ୍ତୁତ ହେଉ ନ ଥିଲେ । ମୁଖ୍ୟମନ୍ତ୍ରୀ ଉଚ୍ଛ୍ୱସିତ ପ୍ରଶଂସା କରି କଳାକାରମାନଙ୍କୁ ଭୋଜିରେ ଆପ୍ୟାୟିତ କରିବାକୁ ଘୋଷଣା କରିଗଲେ । ଏସ୍.ପି. ଚୌହାନ ପୋଲିସ୍ ବାହିନୀ ସହିତ କଳାକାରମାନଙ୍କୁ ହରିଶଙ୍କରରେ ଏକ ମଜାଦାର ପାର୍ଟି ଦେବା କଥା ବି ଘୋଷଣା କଲେ ।

କିଛି ଦିନ ପାଇଁ ଏ ନାଟକ ସହରରେ ଚର୍ଚ୍ଚାର ବିଷୟ ହୋଇ ରହିଥିଲା । ଜିଲ୍ଲାପାଳ ଦିନେ ମତେ ଡାକି କହିଲେ, ମୁଖ୍ୟମନ୍ତ୍ରୀ ସେଦିନ ନାଟକଟି ଦେଖି ଭାରି ଖୁସି । ବାଙ୍ଗଲାଦେଶ ସୃଷ୍ଟି ପଛରେ ରହିଥିବା ଟିକିନିଖି ଘଟଣା ଅତି ସୁନ୍ଦର ଭାବରେ ସେଥିରେ ସ୍ଥାନ ପାଇଥିଲା । ହଁ, ଆଉ ଗୋଟିଏ କଥା । ସେଦିନ ମୁଖ୍ୟମନ୍ତ୍ରୀ ଆଉ ଗୋଟାଏ ବିଷୟ ଆପଣଙ୍କ ସହିତ ବିଚାର ଆଲୋଚନା କରିବା ପାଇଁ ମତେ କହିଯାଇଚନ୍ତି । ସେଇଥିପାଇଁ ମୁଁ ଆଜି ଆପଣଙ୍କୁ ଡାକିଚି । ସେ ଚାହାନ୍ତି, ବଲାଙ୍ଗିରର ଐତିହ୍ୟ, ପରଂପରା ଓ ଲୋକକଳା ସଂସ୍କୃତି ଉପରେ ଏକ ପ୍ରାମାଣିକ ବୃତ୍ତଚିତ୍ର ପ୍ରସ୍ତୁତ କରିବାକୁ । ଯେତେ ଅର୍ଥ ଖର୍ଚ୍ଚ ହେବ ତାହା ସେ ଯୋଗାଇ ଦେବେ । କିନ୍ତୁ ତାହା ଏଇଭଳି ପ୍ରାମାଣିକ ତଥା ଆକର୍ଷଣୀୟ ହେବା ଦରକାର । ଆପଣ ଟିକେ ଚିନ୍ତା କରନ୍ତୁ । ମତେ କହିଲେ ମୁଁ ଆପଣଙ୍କ ଅଟକଳ ସହ ସି.ଏମ୍.ଙ୍କୁ ଜଣାଇଦେବି ।

ମୁଁ 'ହଉ' କହି ତାଙ୍କ ପାଖରୁ ଖସି ଆସିଲି ।

ସତ କହିବାକୁ ଗଲେ, ବୃତ୍ତଚିତ୍ର ପ୍ରସ୍ତୁତି ମୋ ହାତର କାମ ନୁହଁ । ମୁଁ ସିନା ସ୍କ୍ରିନ୍ ପ୍ଲେ ପ୍ରସ୍ତୁତ କରିଦେବି; ମାତ୍ର ଚିତ୍ର ପରିକଳ୍ପନା ଓ ପ୍ରଯୋଜନା ମୋ କ୍ଷମତା ବାହାରେ । ସେ ସମୟରେ ମୋର ଏହାର ଶୈଳୀ ବିଷୟରେ ବିଶେଷ କିଛି ଧାରଣା ନ ଥିଲା । କେତେ ମାସ ବିତିଗଲା । ଜିଲ୍ଲାପାଳ ଏ ପ୍ରସଙ୍ଗକୁ ଭୁଲିଗଲେ । ପରେ

ପରେ ନିର୍ବାଚନୀ ହାଓ୍ବାରେ ମୁଖ୍ୟମନ୍ତ୍ରୀ ବି ଏକଥାକୁ ବିସ୍ମରଣ ହୋଇଗଲେ । ଗୋଟାଏ ସୁନ୍ଦର ଯୋଜନା ଗର୍ଭସ୍ଥ ହେବାର ଅଳ୍ପ ଦିନ ପରେ ଗର୍ଭପାତ ହୋଇଗଲା ।

॥ ଅଠର ॥

# ହତାଶ ମେଘର ଛାଇ

ଏଇଠି ମୁଁ ଅନୁଭବ କରିଥିଲି, ମୋ ଜୀବନର ମଧ୍ୟାହ୍ନ ବିଳମ୍ବିତ ହେଉଚି । ଆହୁରି ପାକଳ ହେବାକୁ ଅପେକ୍ଷା ରଖିଚି ମୋ ଜୀବନ ଯନ୍ତ୍ରଣାର ତାଉ । ଏବେ ଯେଉଁଥିରେ ହାତ ଦଉଚି ସେଠି ଖାଲି ଅସଫଳତା । ସାମାଜିକ ବୃତ୍ତିଗତ ହତାଶା ବାରମ୍ବାର ମେଘ ଭଳି ଘୋଟିଆସି, ଆଶାର କିରଣ ଟିକେ ଝଲସି ଉଠି ଆଶ୍ୱାସନା ମାତ୍ର ଦେଇ ଲିଭି ଯାଉଚି । ସବୁ କିଛି ସହିବାର ଏକ ଦମ୍ଭିଲା ବ୍ୟକ୍ତିତ୍ୱ ଗଢ଼ି ତୋଳିବାର ବୋଧେ ଭିଟାମାଟି ପ୍ରସ୍ତୁତ କରୁଥିଲା ନିୟତି । ମଝିରେ ମଝିରେ ଦୁଃଖକୁ ସହି ନ ପାରି ନୀରବରେ ପ୍ରତିବାଦ କରୁଥିଲି ବିଧାତା ପୁରୁଷ ବିରୁଦ୍ଧରେ । ପରେ ପୁଣି ନିଜକୁ ନିଜେ ସାନ୍ତ୍ୱନା ଦେଉଥିଲି, ଏବେ ଧୈର୍ଯ୍ୟ ଦରକାର । ଯିଏ କଷ୍ଟ ଦେଉଚି, ସିଏ ସହିବାର ଛାତି ତିଆରି କରିବ । ଜୀବନ ସହିତ ଯନ୍ତ୍ରଣା ଓ ଆହ୍ଲାଦ ହାତ ଧରାଧରି କରି ଯା'ଆସ ହେବେ । ହଉ କ'ଣ ହଉଚି । କେତେ କାଳ ଭୋଗିବାର ଅଛି ସିଏ ଜାଣେ ।

ଦ୍ୱିତୀୟ ବାର ପି.ଏସ୍.ସି. ପାଇଁ ଫର୍ମ ଦାଖଲ କଲି ଡି.ପି.ଆଇ.ଙ୍କ ଜରିଆରେ । ପ୍ରାୟ ଆଠ ମାସ ପରେ ଗୋଟେ ରିଗ୍ରେଟ୍ ଚିଠି ପାଇଲି– 'ତୁମେ ଦରଖାସ୍ତ ସହିତ କୌଣସି ସାର୍ଟିଫିକେଟ୍ କପି ଦାଖଲ କରି ନାହଁ । ତେଣୁ ଦରଖାସ୍ତ ରିଜେକ୍ଟେଡ୍ । ମର୍ମାହତ ହୋଇ ଡି.ପି.ଆଇ.ଙ୍କ ଅଫିସ୍‌କୁ ଦୌଡ଼ିଲି । ସେତେବେଳେ ପ୍ରଫେସର ବିଧୁଭୂଷଣ ଦାସ ଡି.ପି.ଆଇ. ଥିଲେ । ମୋ ଭଳି ୭/୮ଜଣଙ୍କର ଏଭଳି କେଶ୍ ହୋଇଥିଲା । ସେ ସମସ୍ତଙ୍କର ବ୍ୟକ୍ତିଗତ ଫାଇଲ୍ ମଗାଇଲେ । ସେ ଦେଖିଲେ ମୋ ଫରୱାର୍ଡିଂ ଚିଠିରେ ତାଙ୍କ ଅଫିସ ଲେଖିଚି– 'ସମସ୍ତ ଏଗାରଟି ସାର୍ଟିଫିକେଟ କପି ସହ ମୂଳ ଦରଖାସ୍ତ ପଠାଗଲା ।' ସେ ସଦୟ ହୋଇ ଏ

ଚିଠିର ନକଲ ସହ ପୁଣି ଏକ ଚିଠି ଲେଖିଲେ ଯେ ମତେ ପି.ଏସ୍.ସି. ସାକ୍ଷାତ୍‌କାରକୁ ଡକାଯାଉ । କିନ୍ତୁ କିଛି ଫଳ ହେଲା ନାହିଁ । ପି.ଏସ୍.ସି.ର କିରାଣୀ ବାପୁଡ଼ାଙ୍କ ଜିଦି ରହିଲା । କୌଣସି ପଦାଧିକାରୀଙ୍କର ଭୁଲ୍ ସୁଧାରିବାର ନୈତିକ ଦାୟିତ୍ୱ ତାଙ୍କୁ ପ୍ରଭାବିତ କଲା ନାହିଁ । ଗୁଡ଼ାଏ ଆବେଦକଙ୍କ ଭିତରୁ କିଛି ଅଳିଆ ଗଦାକୁ ଚାଲିଗଲେ ତାଙ୍କ ପାଖରେ ଭିଡ଼ କମିବ । ସେଇ ନିଷ୍ଠୁର ଆହ୍ଲାଦରେ ସେମାନେ ଖୁସି ।

ଏମିତି ଯନ୍ତ୍ରଣା ଜର୍ଜରିତ ସମୟ କଟୁଥିବାବେଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଗୋଟିଏ ଓଡ଼ିଆ ଅଧ୍ୟାପକ ପଦ ପାଇଁ ବିଜ୍ଞାପନ ବାହାରିଲା । ମୋର ଆବେଦନ କରିବାର ମୋଟେ ଆଗ୍ରହ ନଥିଲା । କାରଣ ମୁଁ ଜାଣିଥିଲି, ବିଶ୍ୱ ବିଦ୍ୟାଳୟଗୁଡ଼ାକ ଗୋଷ୍ଠୀ କନ୍ଦଳ ଓ ବ୍ୟକ୍ତି ରାଜନୀତିର ଆଡ୍ଡାସ୍ଥଳ । ମାତ୍ର ମୋର କେତେକ ଅଧ୍ୟାପକ ବନ୍ଧୁ ମତେ ଟିହାଇଲେ । ଆମର ଏପଟେ ତମ ଛଡ଼ା ଏ ପଦ ପାଇଁ ଆଉ ଯୋଗ୍ୟ ପ୍ରାର୍ଥୀ କିଏ ଅଛି ? ତମେ ଆବେଦନ କର । ଏପରିକି ସେମାନେ ବିଶ୍ୱବିଦ୍ୟାଳୟରେ ବଲାଙ୍ଗିରରୁ ନାମ ଲେଖାଇ ପଢୁଥିବା ପିଲାଙ୍କ ହାତରେ ଆବେଦନ ଫର୍ମ କିଣି ଆଣିବା ପାଇଁ ପଇସା ଦେଇ ପେଠାଇଥିଲେ । ସେମାନଙ୍କ ଆଗ୍ରହକୁ ସମ୍ମାନ କରି ଦରଖାସ୍ତ ପକାଇଲି । ଇଣ୍ଟରଭିଉ ବି ଦେଲି । ବିଭାଗୀୟ ମୁଖ୍ୟ ପ୍ରଫେସର ଥିଲେ ଡଃ ଗୋପାଳଚନ୍ଦ୍ର ମିଶ୍ର । ତାଙ୍କର ସ୍କଲାର୍ ଥିଲେ ବୈରାଗୀ ଚରଣ ଜେନା । ସେ ମଧ୍ୟ ଜଣେ ଆବେଦନକାରୀ ଥିଲେ । ଆମେ ତିନିଜଣ ନିର୍ବାଚିତ ହୋଇ ଚର୍ଚ୍ଚାକୁ ଆସିଲୁ । ସେ, ମୁଁ ଓ ମୋର ସହାଧ୍ୟାୟୀ ବନ୍ଧୁ ନୀଳାଦ୍ରିଭୂଷଣ ହରିଚନ୍ଦନ । ନୀଳାଦ୍ରି ସେତେବେଳକୁ ଶାନ୍ତି ନିକେତନ ବିଶ୍ୱଭାରତୀରେ ଅଧ୍ୟାପକ ଭାବେ ଯୋଗ ଦେଇସାରିଥାଏ । ତାହା କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ; ସେଠି ଦରମା ଓ ସୁବିଧା ଅଧିକ । ଏହି କଥା କହି ତାହାର ପ୍ରାର୍ଥୀତ୍ୱକୁ ଗୁରୁତ୍ୱ ନ ଦେଇ ଆମ ଦୁଇଜଣଙ୍କ କଥା ବିଚାର କଲେ । ମୋ ପାଇଁ ଓକିଲାତି କଲେ ସ୍ୱୟଂ କୁଳପତି ଭୁବନେଶ୍ୱର ବେହେରା– ଇଏ ଜଣେ ଜଣାଶୁଣା ଆଧୁନିକ ଲେଖକ । ପଢ଼ାଇବା ଶୈଳୀ ଖୁବ୍ ଭଲ ବୋଲି ପିଲାଙ୍କଠାରୁ ଶୁଣିଚି । ୟୁନିଭରସିଟି ପାଇଁ ଇଏ ଏକ ଆସେଟ୍ ହେବେ । ମାତ୍ର ବିଭାଗୀୟ ମୁଖ୍ୟ ଡଃ ମିଶ୍ର କହିଲେ– ଜେନା ଜଣେ ଭଲ ସ୍କଲାର୍ । ମୁଁ ତାଙ୍କୁ ଭଲ ଭାବେ ଜାଣେ । ତାଙ୍କୁ ନେଇ ମୁଁ ମୋ ବିଭାଗକୁ ଭଲ ଭାବେ ଚଳାଇ ପାରିବି ।

ଶେଷରେ ତାଙ୍କରି କଥା ରହିଲା । ସିଣ୍ଡିକେଟ୍ ସଭ୍ୟ ତାଙ୍କୁ ସମର୍ଥନ କଲେ । ବୈରାଗୀବାବୁ ଓଡ଼ିଆ ବିଭାଗରେ ଯୋଗ ଦେଲେ । ମୁଁ ବିଶେଷ ଆଗ୍ରହୀ ନ ଥିବାରୁ ଏ ଅସଫଳତା ମତେ ଦୁଃଖ ଦେଲାନି । ତେବେ ଜୀବନରେ ଛାଡ଼ି ଆସିଥିବା କେତୋଟି ଲୋଭନୀୟ କର୍ମ ସଂପର୍କରେ ନୀରବରେ ରୋମନ୍ଥନ କରିବାକୁ ଲାଗିଲି । ହିସାବ ନିକାଶ କଲି । ବର୍ତ୍ତମାନର କର୍ମସଂସ୍ଥାନ ଦ୍ୱାରା ବାରମ୍ବାର ଧକ୍କା ଖାଇବା ବେଳେ ଅତୀତ ସ୍ମୃତି ଚେଇଁ ଉଠିବା ସ୍ୱାଭାବିକ । ଚାଇନାର ଭାରତ ଆକ୍ରମଣ ବେଳେ ସାରା ଦେଶରେ ଜାତୀୟ ଚେତନା ଜାଗରିତ ହୋଇଥିଲା । ଦେଶର ସୁରକ୍ଷା ଚିନ୍ତା ତୀବ୍ର ରୂପେ ମୁଣ୍ଡ ଟେକିଥିଲା । ଆକାଶବାହିନୀ, ସ୍ଥଳବାହିନୀ ଓ ନୌବାହିନୀରେ ଅନେକ ଅଧିକାରୀ ନିଯୁକ୍ତି ପାଇଁ ନାମମାତ୍ର ପରୀକ୍ଷା ଓ ସାକ୍ଷାତ୍କାର ହେଉଥିଲା । ହିନ୍ଦୀ-ଚୀନ ଭାଇ ଭାଇ ନୀତି ଫେଲ୍ ମାରିଥିଲା । ପଣ୍ଡିତ ନେହେରୁଙ୍କ ପଞ୍ଚଶୀଳ ନୀତିକୁ ପଛରୁ ଛୁରିକାବିଦ୍ଧ କରିଥିଲେ ଚାଉ-ଏନ୍-ଲାଇ । ଫଳରେ ସୀମା ସୁରକ୍ଷା ପ୍ରସଙ୍ଗ ରାଷ୍ଟ୍ରନାୟକଙ୍କ ମନକୁ ଛୁଇଁଲା । ଏ କ୍ଷେତ୍ରରେ ନୂତନ ନିଯୁକ୍ତିର ଦ୍ୱାର ଖୋଲିଲା । ଆକାଶବାହିନୀରେ ଯୋଗ ଦେବାପାଇଁ ମୁଁ ଆଗ୍ରହୀ ହୋଇ ପରୀକ୍ଷା ଦେଲି । ସେତେବେଳେ କଲେଜ ମାଟି ମାଡ଼ିଥିବାର ପ୍ରଥମ ବର୍ଷ । ଆବଶ୍ୟକ ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ଥିଲା, ମାଟ୍ରିକ ଦ୍ୱିତୀୟ-ଶ୍ରେଣୀ ଗଣିତ ସ୍ୱତନ୍ତ୍ର ବିଷୟ ସହିତ । ଉଚ୍ଚତା ୫ ଫୁଟ ୮ ଇଞ୍ଚରୁ କମ୍ ହୋଇ ନଥିବ । ଦୃଷ୍ଟିଶକ୍ତି ସ୍ୱଷ୍ଟ ଇତ୍ୟାଦି । ଦୁଇ ରାଉଣ୍ଡ ପରୀକ୍ଷା ପରେ ଆମେ ଆଠଜଣ ମନୋନୀତ ହେଲୁ । ମୋର ବୟସ କମ୍ ଥିବାରୁ ପରିବାର ମୁଖିଆଙ୍କ ଅଣ୍ଡରଟେକିଙ୍ଗ୍ ଦରକାର ହେଲା । ସେ ଫର୍ମ ଧରି ଧାଇଁଥିଲି ଘରକୁ । ବୋଉ ଶୁଣୁ ଶୁଣୁ କହିଥିଲା- କଦାପି ଛାଡ଼ିବିନି । ତୋ ସାନମାମୁ ବଟ ମିଲିଟାରୀରେ ପଶିଚି । ତୋ ଆଈର କାନ୍ଦି କାନ୍ଦି ଦିନ ସରୁନି । ମୁଁ ପୁଣି ସେମିତି କାନ୍ଦିବା ପାଇଁ ତୁ ବାଟ କରୁଚୁ । ମୁଁ ତତେ ଘରେ ତାଲା ପକେଇ ରଖିଦେବି । ତୁ କେମିତି ଯିବୁ ଦେଖିବି ।

ବୋଉ ସେଇୟା ବି କଲା । ମୋର ସାନ ଭାଇ ଭଉଣୀମାନଙ୍କୁ ପାଳିକରି ମତେ ଜଗାଇଲା । ବାପାଙ୍କ ହାତରୁ ସେ ଫର୍ମଟି ନେଇ ନିଜେ କୋଉଠି ଲୁଚାଇ ରଖିଦେଲା । ୫/୬ ଦିନ ପରେ ମୁଁ କହିଲି, 'ହଉ ହେଲା; ତୋ କଥା ମାନିଲି । ମୁଁ ଆଉ ଆକାଶବାହିନୀରେ ଯୋଗ ଦେବି ନାହିଁ । କିନ୍ତୁ ମୋ କଲେଜପଢ଼ା ବନ୍ଦ କରନା, ମୋର କ୍ଲାସ ପରସେଣ୍ଟେଜ୍ ସଟ୍ ହେଲେ ମୁଁ ପରୀକ୍ଷା ହଲ୍‌ରେ ବସିପାରିବି

ନାହିଁ । ମତେ କଲେଜ ଆଟେଣ୍ଡ କରିବାକୁ ଛାଡ୍ । ତଥାପି ସେ ରାଜି ହେଉନଥିଲା । ତା' ମୁଣ୍ଡ ଛୁଆଇଁ ରାଣ ପକାଇଲା ପରେ ମତେ କଟକ ଛାଡ଼ିଲା । ମନରେ ଗୋଟାଏ ଅବସୋସ ରହିଗଲା– ଦେଶ ସେବାର ପ୍ରତ୍ୟକ୍ଷ ଅନୁଭୂତି ଆଉ ପାଇପାରିଲି ନାହିଁ । ବଲାଙ୍ଗିରର ନିଃସଙ୍ଗ ଅନ୍ତର୍ବିଳାପ ବେଳେ ଭାବି ହେଲି, ବୋଉର ସୁନାପୁଅ ବୋଲାଇବା ଅପେକ୍ଷା ଆକାଶବାହିନୀରେ ଯୋଗ ଦେଇଥିଲେ ସୁଜିତ୍ ଦାସ ଭଳି ଆକାଶ–ଚଢ଼େଇ ସାଜି ବିଶ୍ୱ ପରିକ୍ରମା କରୁଥାନ୍ତି । ଛାଡ଼; ସିଏ ବି ଗୋଟାଏ ଆହତ ସ୍ୱପ୍ନ ।

ପୁଣି ମନକୁ ଆସିଥିଲା ବି.ଏ. ପାଶ୍ ପରେ ରେଭେନ୍ସାରେ ପି.ଜି ପଢ଼ାବେଳର କଥା । ଆକାଶବାଣୀର ଏ.ଏସ୍.ଡି. ପାଇଁ ପ୍ରାଥମିକ ପର୍ଯ୍ୟାୟ ମନୋନୟନ ପରେ ଦିଲ୍ଲୀରେ ସାକ୍ଷାତକାର ପାଇଁ ଡକରା ପାଇଲି । ସେଥିରେ ସର୍ବନିମ୍ନ ଯୋଗ୍ୟତା ଆବଶ୍ୟକ ଥିଲା– ଗ୍ରାଜୁଏଟ ହୋଇଥିବ । ଶେଷ ପରୀକ୍ଷାରେ ୫୦%ରୁ ଅଧିକ ନମ୍ବର ଥିବ । କୌଣସି ଏକ ପ୍ରାଦେଶିକ ଭାଷାରେ ସାହିତ୍ୟ ସର୍ଜନାର ଦକ୍ଷତା ଥିବ । ଏଇସବୁ କାରଣରୁ ମୁଁ ପ୍ରାଥମିକ ପର୍ଯ୍ୟାୟରେ ମନୋନୀତ ହୋଇ ସାକ୍ଷାତ୍କାର ପାଇଁ ଡକରା ପାଇଲି । ଯିଏ ଶୁଣିଲା, ଖୁସିହୋଇ ସେଇ ବାଟରେ ଆଗେଇଯିବା ଲାଗି ଉତ୍ସାହ ଦେଲା । ଆକାଶବାଣୀର କଳାକାର ବନ୍ଧୁମାନେ ସାବାସି ଜଣାଇଲେ । ସେତେବେଳେ ଜଣେ ଓଡ଼ିଆ ଅଧିକାରୀ ଏଇ ପଦବୀରେ ପହଞ୍ଚି ବେଶ୍ ସୁନାମ ଅର୍ଜନ କରିଥିଲେ । ସେ ଜଳନ୍ଧର, ଦିଲ୍ଲୀ ଓ ଗୌହାଟୀ ଆଦି ଷ୍ଟେସନରେ କାମ କରି ଆସି କଟକରେ ଅବସ୍ଥାପିତ ହୋଇଥିଲେ । ତାଙ୍କ ସହିତ ଏ ବିଷୟରେ ଆଲୋଚନା କରିବାକୁ କେହି କେହି ମତେ ବୁଦ୍ଧି ବତାଇଲେ । ତାଙ୍କ ସହିତ ମୋର ପରିଚିତି ଥିଲା । ସେ ଜଣେ ଭଲ ନାଟ୍ୟକାର, ସୁରେନ୍ ମହାନ୍ତି । ତାଙ୍କୁ ଯାଇ ମୁଁ ପଚାରିଲି, ଯଦି ଏ ଚାକିରି ପାଏ, ଏଥିରେ ଯୋଗ ଦେବାରେ ସୁବିଧା ଅସୁବିଧା କ'ଣ ?

ସୁରେନ୍ ବାବୁ ଭାରି ସ୍ୱଷ୍ଟବାଦୀ ଏବଂ ହାସ୍ୟରସିକ । ମୋ ପ୍ରଶ୍ନ ଶୁଣି ସେ ନିଜ ଗଞ୍ଜି ସହିତ ସାର୍ଟକୁ ଟେକିଧରି ତାଙ୍କର ଅପରେସନ୍ ହୋଇଥିବା ପେଟକୁ ଦେଖାଇ କହିଲେ, ତମର ଅବସ୍ଥା ବି ଏଇୟା ହେବ ଯାହା ମୋର ହେଇଚି । ପଇସା ମିଳିବ; ପଦ ମର୍ଯ୍ୟାଦା ମିଳିବ; କିନ୍ତୁ ଜୀବନରେ ସୁଖ ଶାନ୍ତି ମିଳିବିନି । ହିମାଳୟର ପାଦଦେଶରୁ କନ୍ୟାକୁମାରୀ ଯାଏ ଯିବାପାଇଁ ସବୁବେଳେ ପ୍ରସ୍ତୁତ ଥିବ । ବେଳେବେଳେ ପ୍ରାଦେଶିକ ରାଜନେତାଙ୍କ ଶରବ୍ୟ ବି ହୋଇପାର ।

ତାଙ୍କ ମନ୍ତବ୍ୟ ଶୁଣି ଟିକେ ହତାଶ ଲାଗିଥିଲା । ତଥାପି ଭାଙ୍ଗିପଡ଼ି ନଥିଲି । ରେଭେନ୍ସା କଲେଜରେ ମୁଁ ସବୁଠୁଁ ଅଧିକ ଆସ୍ଥା ଓ ବିଶ୍ୱାସ ରଖିଥିଲି ପ୍ରଫେସର ଗୋଲୋକ ବିହାରୀ ଧଳଙ୍କ ଉପରେ । ମାତ୍ର ତାଙ୍କୁ ସାହସ କରି ଏକଥା ପଚାରି ପାରୁ ନଥିଲି । ପ୍ରଜାତନ୍ତ୍ରରେ ଥାଇ ମୋର ଅଧିକ ସହୃଦୟତା ଓ ଘନିଷ୍ଠତା ବଢ଼ିଥିଲା ରମେଶଚନ୍ଦ୍ର ଧଳଙ୍କ ସହିତ । ସେ ପ୍ରଫେସର ଧଳଙ୍କ ପୁତୁରା । ରମେଶବାବୁ ମୋ ସମସ୍ୟା କଥା ତାଙ୍କୁ କହିଲେ । ପ୍ରଫେସର ଧଳ ଖୋଲା ହୃଦୟର ହସଟେ ହସି ଉଠିଲେ ଏବଂ କହିଲେ– ଆରେ, ତମେ ସେ ଭାଟ ଚାକିରି କରିବ ? ତମକୁ ହେରା ପୋଷେଇବନି ହେ ! ମୋ କଥା ମାନ; ଭଲ କରି ପଢ଼ାପଢ଼ି କର । ଭଲ କ୍ଲାସଟିଏ ପାଇଲେ ଅଧ୍ୟାପକ ଚାକିରିଟିଏ ନିଶ୍ଚେ ପାଇଯିବ । ପଇସା ବେଶି ନ ମିଳୁ; ଖୁବ୍ ସମ୍ମାନ ପାଇପାରିବ । ସ୍ୱାଭିମାନ ଧରି ସମାଜରେ ବଞ୍ଚିପାରିବ ।

ଧଳ ସାର୍‌ଙ୍କ କଥାକୁ ବେଦବାଣୀ ଭଳି ମନେ କରିଥିଲି । ତାଙ୍କରି ସଦିଚ୍ଛା କାମ କଲା । ଅଧ୍ୟାପନା କର୍ମ ବାଛିଲି । ମହତାବଜୀଙ୍କ କଥାକୁ ବି ରଖିଲି ନାହିଁ । ସେତେବେଳେ ପଠାଣି ସାର୍ ବି ଉପଦେଶ ଦେଇଥିଲେ ଖ୍ରୀଷ୍ଟ କଲେଜରେ ଯୋଗ ଦେବାପାଇଁ । ମୁଁ ହଁ–ନାଇଁ କିଛି କହିପାରି ନ ଥିଲି । ଧଳ ସାର୍‌ଙ୍କ କଥା ମତେ ବେଶି ଓଜନିଆ ଲାଗିଥିଲା । ସେ କହିଥିଲେ– 'ଘରୋଇ କଲେଜ କାହିଁକି ବାଛୁଚ; ସରକାରୀ କଲେଜ ପାଇଁ କ'ଣ ସୁନାରେ ତିଆରି ଅଧ୍ୟାପକ ଆସିବେ । ତମେ ସରକାରୀ କଲେଜରେ ଜଏନ୍ କର । ଦ୍ୱନ୍ଦ୍ୱରେ ପଡ଼ନା ।'

ସବୁ ତାଙ୍କରି କଥା ଅନୁସାରେ କଲି । କିନ୍ତୁ ଯନ୍ତ୍ରଣା ପାଇବା ବୋଧେ ବିଧି ନିର୍ଦ୍ଦେଶ ଥିଲା ମୋ ପାଇଁ । ଦୋଷ ଦେବି ଅବା କାହାକୁ ! ନିଜକୁ ଭୁଲାଇବା ପାଇଁ ନାନାଦି ସଭାସମିତି ଓ ଯୁବଲେଖକ ସମ୍ମେଳନ କାମରେ ବହୁ ସମୟରେ ବ୍ୟସ୍ତ ରହିଲି । ସେଇ ସମୟରେ ବଦଳି ପର୍ବରେ ଆମ ବିଭାଗରୁ କ୍ଷେତ୍ରବାସୀ ବାବୁ ଗଲେ ବ୍ରହ୍ମପୁର । ଚିନ୍ତାମଣି ବାବୁଙ୍କର ପୁରୀ ବଦଳି ହୋଇଗଲା । ଆସିଲେ ବିଭାଗୀୟ ମୁଖ୍ୟ ହୋଇ ହାସ୍ୟ–ଲେଖକ କୁଳମଣି ମହାପାତ୍ର ଏବଂ ମୋର ବହୁ ପରିଚିତ ଅନୁଜପ୍ରତିମ କୈଳାସଚନ୍ଦ୍ର ଟିକାୟତ ରାୟ । କୈଳାସ ଯୋଗ ଦେବାପରେ ସନ୍ଧ୍ୟା ଆସର ଟିକେ ଜମିଲା । କଲେଜ ଅଧ୍ୟକ୍ଷ ବି ବଦଳିଲେ । ନୂଆ ଅଧ୍ୟକ୍ଷ ହୋଇ ଆସିଲେ ଶ୍ରୀ ମୃତ୍ୟୁଞ୍ଜୟ ପଣ୍ଡା । ସେ ଏଠିକାର ପୁରୁଣା ଲୋକ । ଏଇଠି ସେ ସ୍କୁଲପଢ଼ା ପଢ଼ିଥିଲେ । ତେଣୁ ତାଙ୍କ ପାଇଁ କଲେଜ ପ୍ରଶାସନ ସୁବିଧା ହେବ

ବୋଲି ସେ ମନେ କରିଥିଲେ । ମାତ୍ର ତାହା କଠିନ ବ୍ୟାପାର ହୋଇପଡ଼ିଥିଲା ପରିବର୍ତ୍ତିତ ପରିସ୍ଥିତି ଯୋଗୁଁ ।

ଅଧ୍ୟାପନା କର୍ମକୁ ଟିକିଏ ରସାଳ କରିବା ପାଇଁ ଆମେ କେତେଜଣ ଜୁଲୋଜୀ ବିଭାଗରେ ଗୋଟାଏ ଚା'ପିଆ ଦଳ ଗଢ଼ିଥିଲୁ । ଚା' ଚିନି ବିସ୍କୁଟ ଓ ହିଟର କିଣି ଅବସର ସମୟରେ ଏକାଠି ହୋଇ ଖୁସି ଗପ କରି ଚା' ପିଉଥିଲୁ । ଆମର ତାହା ଥିଲା ସାତଜଣିଆ ଟିମ୍ । ମୁଁ ଓ କୈଳାସ ଓଡ଼ିଆରୁ, ଜୁଲୋଜୀରୁ ରାଜେନ୍ଦ୍ର ନାଏକ, ବ୍ରଜମୋହନ ପୃଷ୍ଟି ଓ ସରୋଜିନୀ ମହାପାତ୍ର ଏବଂ ବଟାନୀର ବିପ୍ର ପାଣିଗ୍ରାହୀ ଓ ଶଶିଭୂଷଣ ପଣ୍ଡା । ଏହାର ନାଁ ଦେଇଥିଲୁ 'ଗୁଲୋଜି କ୍ଲବ' । ସଭ୍ୟ ବେଶି କରାଉ ନଥିବାରୁ ଆମମାନଙ୍କ ନାଁରେ ପ୍ରିନ୍ସିପାଲଙ୍କ ପାଖରେ କିଛି କାନକୁହା କଥା ପହଞ୍ଚିଲା । ଆମେମାନେ ପ୍ରିନ୍ସିପାଲଙ୍କ ବିରୁଦ୍ଧରେ ଏଠି କଥା ହେଉଚୁ । ଏକଥା ଶୁଣି କୈଳାସ ଓ ଶଶିଭୂଷଣ ଗୋଟାଏ ବିଚିତ୍ର ଯୋଜନା ଆରମ୍ଭ କଲେ । ପ୍ରତିଦିନ ସେ କ୍ଲବକୁ ଜଣେ ଜଣେ କାନକୁହା ଲୋକକୁ କିମ୍ବା ବୟସ୍କ ସମ୍ମାନାସ୍ପଦ ଅଧ୍ୟାପକଙ୍କୁ ଡାକି ଅତିଥି କଲେ । କାନକୁହା କର୍ମ ବିରୁଦ୍ଧରେ ସେ ଲୋକ ବସିଥିବା ବେଳେ ସେମାନେ ଗାଳି କରୁଥିଲେ; ମାତ୍ର ଅନ୍ୟ ଦିନ ଅନ୍ୟମାନଙ୍କ ସାଙ୍ଗରେ ତାଙ୍କ ବିଷୟ ସଂପର୍କରେ ଜାଣିବାର କଥା ମାନ ପଚାରୁଥିଲେ ।

ଚା' ଜଳଖିଆ ଖାଇ ବେନାମୀ ଗାଳି ଶୁଣି ତାହା ହଜମ କରିବାକୁ ବାଧ ହେବା ସେମାନଙ୍କ ପକ୍ଷେ ସହଜ ହେଲା ନାହିଁ । କ୍ରମେ ତାହା ବିସ୍ଫୋରକ ପରିସ୍ଥିତି ସୃଷ୍ଟି କଲା । ଦିନେ ଅଧକ୍ଷ ଶ୍ରୀ ପଣ୍ଡା ସେମାନଙ୍କ ଭିତରୁ ଦି'ଜଣଙ୍କୁ ସାଙ୍ଗରେ ଧରି ସେଠି ପହଞ୍ଚିଗଲେ । ଚା' ବିସ୍କୁଟ ଖାଇଲେ । ଆମେ ହସଖୁସି ମଜା କରୁଥିବା ଦେଖିଲେ । ତଥାପି କିଛି ସୁରାକ ନ ପାଇ ପ୍ରଶାସକ ଢଙ୍ଗରେ ମତେ ଓ କୈଳାସକୁ ପଚାରିଲେ– ଆପଣମାନେ ଷ୍ଟାଫ୍ କମନରୁମ୍ ଛାଡ଼ି ଏଠି କାହିଁକି ଆଡ୍ଡା ଜମଉଛନ୍ତି ?

କୈଳାସ ଝଟପଟ ଉତ୍ତର ଦେଲା, ସାର୍ ! କଲେଜରେ କ୍ୟାଣ୍ଟିନ୍ ନାହିଁ । ଏଠି ସମସ୍ତେ ଚାନ୍ଦା ଦେଇ ଚା' କ୍ଲବଟିଏ କରିଚୁ । କାହା ବିରୁଦ୍ଧରେ କୁତ୍ସା ତ କରୁନାହୁଁ । ନିଜ ନିଜର କ୍ଲାସ ନେଇ ଲିଜର୍ ସମୟରେ ଏଠି ଏକାଠି ହେଉଚୁ । ଖୁସିଗପ କରୁଚୁ । ଚା' ପିଉଚୁ । ଏଥିରେ କାହାର କିଛି ଅସୁବିଧା ତ ହେଉ ନ ଥିବ ।

ଏକଥା ଶୁଣି ଅଧକ୍ଷ ପଣ୍ଡା ଧଡ଼୍‌କିନା ଉଠି ଚାଲିଗଲେ । ଆମେ ସମସ୍ତେ ଏହାପରେ କିଛି ଅଘଟଣ ଘଟିବାର ଆଶଙ୍କା କଲୁ । ଆଶଙ୍କା ସତ ହେଲା ।

ଦଶବାର ଦିନ ପରେ କୈଳାସର ଭବାନୀପାଟଣା ବଦଳି ଅର୍ଡର ଆସିଲା । କୈଳାସକୁ ଆଉ ସମ୍ଭାଳେ କିଏ ? ସାରା କ୍ଲେଜରେ ପ୍ରଚାର ହୋଇଗଲା– କୈଳାସ ସାର୍‌ଙ୍କର ପନିସ୍‌ମେଣ୍ଟ ଟ୍ରାନ୍‌ସଫର୍ ହେଇଚି । ପିଲାଏ ଅଶାନ୍ତ ହୋଇ ଉଠିଲେ । ସେ ପିଲାମାନଙ୍କୁ ଶାନ୍ତ ରହିବା ପାଇଁ ଅନୁରୋଧ କଲା । ସରକାର ଯୋଉଠିକି ବଦଳି କରିଚନ୍ତି ମୁଁ ସେଠିକି ଯିବି । ଯାହା ପାଇଁ ଯାହା କରିବା କଥା ମୁଁ କରିବି । ତୁମେମାନେ ଚୁପ୍ ରୁହ ।

ଷ୍ଟାଫ୍ କ୍ଲବ ତରଫରୁ ବିଦାୟକାଳୀନ ସଭାର ଆୟୋଜନ ହେଲା । କୈଳାସ ସେଥିରେ ଯୋଗ ଦେବାକୁ ମନା କଲା । ସମସ୍ତଙ୍କୁ ଯୋଡ଼ ହାତରେ କହିଲା, ଆପଣମାନେ ମୋର ସମ୍ମାନାସ୍ପଦ ସହକର୍ମୀ । ଜୀବନରେ କୌଣସି ନା କୌଣସି ଜାଗାରେ ଆପଣମାନଙ୍କ ସାଙ୍ଗରେ ପୁଣି ଦେଖା ହେବ । ଆପଣମାନଙ୍କ ପାଇଁ ମୋର ଅତୁଟ ସମ୍ମାନ ରହିଚି ଓ ରହିବ । କିନ୍ତୁ ଯାହା ସାଙ୍ଗରେ ଏ ସମ୍ମାନ ଆଉ ରହିବ ନାହିଁ, ସିଏ ଗୋଟାଏ ସିଙ୍ଗଡ଼ା, ଗୋଟାଏ ବରା ଓ କପେ ଚା'ରେ ତାହା ତୁଟେଇ ଦେବାକୁ ଚାହୁଁଚି । ମୁଁ ତା' ସାଙ୍ଗରେ ଦେଖାକରି ଯିବାକୁ ବାହାରିଲି ।

ଏତକ କହି ସେ ଝଡ଼ଭଳି ପ୍ରିନ୍‌ସିପାଲଙ୍କ ରୁମ୍ ଭିତରକୁ ପଶିଗଲା । ଆମେ କେତେ ଜଣ ତା' ପଛେପଛେ ଦୌଡ଼ିଲୁ । କୈଳାସ ଏବେ କ୍ରୋଧିତ । କ'ଣ ନାଇଁ କ'ଣ କରି ଦେଇପାରେ । ତାକୁ ସମ୍ଭାଳିବାକୁ ପଡ଼ିବ । ଆମେ ଗଲାବେଳକୁ କୈଳାସ ହାତରେ ଧରିଚି ପଟେ ଚପଲ; ସେ କ୍ରୋଧରେ ଗର୍ଜୁଚି; ଆଉ ଅଧକ୍ଷ ପଣ୍ଡା ତାଙ୍କ ଚଉକିରୁ ଉଠିପଡ଼ି ଠିଆହୋଇ ଥରୁଛନ୍ତି । ମୁଁ କୈଳାସକୁ କୁଣ୍ଢେଇ ଟାଣି ଧରିଲି । ସେ ମତେ କିଛି ନ କହି ପ୍ରିନ୍‌ସିପାଲଙ୍କୁ କହିଲା– 'ୟାଙ୍କ ଏଇଟାକୁ ପିଲାମାନେ 'ହଳୁପଣ୍ଡା' ବୋଲି ଡାକନ୍ତି । ଏ ବତୀପେଲାର ନିଜ ବୁଦ୍ଧି କିଛି ନାହିଁ; ଏଇଟା ପରବୁଦ୍ଧିଆ । ହେଇଟି ହଳୁପଣ୍ଡା; ଏ ଜୋତା ତୋ ଟେବୁଲ ଉପରେ ରହିଲା । ମୁଁ ଖାଲି ପାଦରେ ଯାଉଚି । ତୁ କଟକରେ ଏ ଜୋତାକୁ ନେଇ ମତେ ପିନ୍ଧେଇବୁ । ସେଇଠି ତୋର ମୋର ଦେଖାହେବ ।'

କୈଳାସ ଭବାନୀପାଟଣା ଚାଲିଗଲା । ଆମ ଗୁଲୋଜୀ କ୍ଲବ ସେଇଦିନୁ ବନ୍ଦ ହୋଇଗଲା । ପ୍ରାୟ ୮/୧୦ ଦିନ ପରେ ଦିନେ ଅଧକ୍ଷ ପଣ୍ଡା ମତେ ଡକାଇ ପଠାଇଲେ । ତା' କ୍ଲବ କାହିଁକି ବନ୍ଦ କରିଦେଲେ ବୋଲି ପଚାରିଲେ । ମୁଁ ତାଙ୍କୁ ସେ ବିଷୟରେ କିଛି ଉତ୍ତର ଦେଲି ନାହିଁ । ମୋର ନୀରବତାରୁ ସେ ଅନୁମାନ

କରିନେଇ କହିଲେ, ମୁଁ ମାନୁଚି, ମୋର ସେ ଦିନର ପଦକ୍ଷେପ ଭୁଲ ଥିଲା । ଟିକାୟତବାବୁ ଯୁବକ ଲୋକ । ତାଙ୍କର ସେଭଳି ପ୍ରତିକ୍ରିୟା ହେବା ସ୍ୱାଭାବିକ । ମୁଁ ଶୁଣାକଥାରେ ସେଭଳି ଚରମ ପଦକ୍ଷେପ ନେବା ସଂପୂର୍ଣ୍ଣ ଭୁଲ କାମ । କିନ୍ତୁ କ'ଣ କରିବି ? ସୁଧାରିବା ପୂର୍ବରୁ ଖଡ଼ିଗୋଟାଳି ଗଡ଼ିବା ଆରମ୍ଭ କରିସାରିଥିଲା ।

ତା'ପରେ ମୁଁ ତାଙ୍କୁ କହିଲି, 'କୈଳାସ ବାବୁ କେବଳ ଜଣେ ଭଲ ଶିକ୍ଷକ ନୁହଁନ୍ତି, ସେ ପ୍ରଶାସନ ପାଇଁ ଏକ ସମର୍ଥ ଦକ୍ଷ ହାତ । ଏ କଲେଜ ସେ ସୁଯୋଗ ହରାଇଲା । ସେ ବୋଧେ ମୋ କଥାର ସତ୍ୟତା ଅନୁଭବ କରିଥିଲେ । କାରଣ ଦୁଇ ତିନି ବର୍ଷ ପରେ ଉଭୟେ ପୁରୀ କଲେଜରେ ଏକାଠି ହୋଇଥିଲେ । ସେ କଲେଜର ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଁ ଅତିଥି ଭାବରେ ଯୋଗ ଦେଲାବେଳେ ଦେଖିଲି- ଅଧକ୍ଷ ପଣ୍ଡା ଓ କୈଳାସ ଖୁବ୍ ଅନ୍ତରଙ୍ଗ । କଲେଜର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଦାୟିତ୍ୱ କୈଳାସ ଉପରେ । କେବଳ ସେତିକି ନୁହେଁ, କୈଳାସର କାର୍ଯ୍ୟ ଦକ୍ଷତାକୁ ଉପଲବ୍ଧି କରି ଓଡ଼ିଶା ସରକାର ତାକୁ 'ଓଡ଼ିଆ ଭାଷା ପ୍ରତିଷ୍ଠାନ'ର ପ୍ରଥମ ନିର୍ଦ୍ଦେଶକ ଭାବେ ନିଯୁକ୍ତି ଦେଇଥିଲେ ।

କୈଳାସ ବଲାଙ୍ଗିର ଛାଡ଼ିଲାପରେ ପୁଣି ନିଃସଙ୍ଗତା ମତେ ଗୋଡ଼ାଇଲା । ସେତିକିବେଳକୁ ହିନ୍ଦୀ ବିଭାଗରେ ଯୋଗ ଦେଲେ ଶଙ୍କରଲାଲ ପୁରୋହିତ । ଅବସର ସମୟ ତାଙ୍କରି ଗହଣରେ କଟିଲା । ସେ ସାହିତ୍ୟିକ ସୁହୃଦ ସାଜିଥିଲେ । ବିଭିନ୍ନ ଜାଗାକୁ ସାଂସ୍କୃତିକ ସଭାମାନଙ୍କୁ ଗଲାବେଳେ ସେ ସାଙ୍ଗରେ ଯାଉଥିଲେ । ଏଇ ସମୟରେ ଗୋଟେ ମଜାଳିଆ ଘଟଣା ଘଟିଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟ ବୁର୍ଲାକୁ ସ୍ଥାନାନ୍ତରିତ ହୋଇସାରିଥିଲା । ତାହାର ମହିଳା ହଷ୍ଟେଲର ପ୍ରଥମ ବାର୍ଷିକ ଉତ୍ସବ । କୁଳପତି ଭୁବନେଶ୍ୱର ବେହେରାଙ୍କର ଏକ ବ୍ୟକ୍ତିଗତ ପତ୍ର ଓ ଛାତ୍ରୀନିବାସର ତତ୍ତ୍ୱାବଧାରିକାଙ୍କ ବିଧିବଦ୍ଧ ଅନୁରୋଧ ପତ୍ର ଧରି ଜଣେ ଛାତ୍ରୀ ଆସି ମୋ ଘରେ ପହଞ୍ଚିଲା । ମଝିରେ ଉତ୍ସବ ଦିନର ମାତ୍ର ପାଞ୍ଚଦିନ ବ୍ୟାବଧାନ । ମୁଁ ସେଠିକି ଯିବି ନାହିଁ ବୋଲି ସ୍ଥିର କରି ନେଇଥିଲି । ମାତ୍ର ଭୁବନେଶ୍ୱର ବେହେରାଙ୍କ ବ୍ୟକ୍ତିଗତ ପତ୍ର ମୋ ନିଷ୍ପତ୍ତିକୁ ବଦଳାଇ ଦେଲା- 'ମୋର ଅନୁରୋଧ, ତୁମେ ନିଶ୍ଚେ ଆସିବ । ଗାଡ଼ି କରି ଆସ । ବିଶ୍ୱବିଦ୍ୟାଳୟ ଖର୍ଚ୍ଚ ବହନ କରିବ । ପତ୍ରବାହକଙ୍କୁ ଆସିବା ମାଧ୍ୟମ ଜଣାଇବ ।'

ମୁଁ ଛାତ୍ରୀଜଣକୁ କହିଲି, ମୁଁ ଟ୍ରେନ୍‌ରେ ଯିବି, ଏବଂ ଟ୍ରେନ୍‌ରେ ଫେରିବି । କିନ୍ତୁ କୁଳପତିଙ୍କୁ କହିଦେବ, ସେ ଆମ ପ୍ରିନ୍‌ସିପାଲ ମୃତ୍ୟୁଞ୍ଜୟ ପଣ୍ଡାଙ୍କୁ ଫୋନ୍‌ରେ ଏକଥା କହିଦେବେ । କାରଣ ଉତ୍ସବ ଦିନଟି ଏ କଲେଜର ୱାର୍କିଂ ଡେ । ଏବେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଚାଲିଚି । ପ୍ରିନ୍‌ସିପାଲ କାହାକୁ ଛୁଟି ଦେଉନାହାନ୍ତି । ମୋ ପାଇଁ ପ୍ରତିବନ୍ଧକ କହିଲେ ଏତିକି । ବାସ୍, ମୋ ଯିବାକଥା ନିଶ୍ଚିତ; ତା' ମୁଁ ବୁଝିବି ।

ଛାତ୍ରୀଜଣକ ବଲାଙ୍ଗିରର । ତା' ପରଦିନ ସେ ଫେରିଯାଇ କୁଳପତିଙ୍କୁ ସବୁକଥା ଠିକ୍ ରୂପେ କହିଥିଲା । ଡଃ ବେହେରା ଫୋନ୍‌ରେ ମତେ ସ୍ୱତନ୍ତ୍ର ଛୁଟି ପ୍ରଦାନ ପାଇଁ ପ୍ରିନ୍‌ସିପାଲଙ୍କୁ କହିଦେଲେ । ଦିନକ ପୂର୍ବରୁ ଓଡ଼ିଆ ଏମ୍.ଏ. ପଢୁଥିବା ସେଠିକାର ମୋର ଜଣେ ଛାତ୍ର ଅଖିଳ ବିଶ୍ୱାଳ ଆସି ହାଜର ! ମତେ କହିଲା, ସାର୍ ! ମୁଁ ଆପଣଙ୍କୁ ଯିବାବେଳେ କଂପାନୀ ଦେବି । ଆମେ ଏଠିକାର ପିଲା ସେଠି ବାଜି ମାରିଚୁ– ତୁମ ୟୁନିଭରସିଟି ଟିଚରଙ୍କଠାରୁ ଆମ ସାର୍ ଢେର୍ ଭଲ । ସେଇଥିପାଇଁ ମୁଁ ସାଙ୍ଗରେ ଯିବାଲାଗି ଆଗତୁରା ଚାଲି ଆସିଚି । ଲେଡିଜ୍ ହଷ୍ଟେଲର ଉତ୍ସବ । ଭାରି ଗହଳି ହବ । ୟୁନିଭରସିଟିର ପିଲା ସବୁ, ମେଡ଼ିକାଲ କଲେଜ ଓ ଇଂଜିନିୟରିଂ କଲେଜର ପିଲାଙ୍କ ମଧ୍ୟ ଭିଡ଼ ଜମିବ । ମହିଳା ହଷ୍ଟେଲର ପ୍ରଥମ ଉତ୍ସବ ତ । ଭି.ସି. ଡିସିପ୍ଲିନ୍ ବ୍ୟବସ୍ଥା ନିଶ୍ଚେ କରିଥିବେ ।

ଅଖିଳ ଆସି ଭଲ କଲା । ତା' ପରଦିନ ଆମେ ଟ୍ରେନ୍‌ରେ ଯାତ୍ରା କଲୁ । ପ୍ରାୟ ଦିନ ସାଢ଼େ ଦି'ଟା ବେଳକୁ ଆମେ ହୀରାକୁଦ ଷ୍ଟେସନରେ ପହଞ୍ଚିଲୁ । ସେଇଠୁ ଓହ୍ଲାଇ ବୁର୍ଲା କ୍ୟାମ୍ପସକୁ ଯିବାକୁ ପଡ଼େ । ଆମେ ଟ୍ରେନ୍‌ରୁ ଓହ୍ଲାଇ ଦେଖିଲୁ ପ୍ଲାଟଫର୍ମରେ ପଞ୍ଚା ପଞ୍ଚା ଝିଅ । ଅଖିଳ କହିଲା, ସାର୍, ଏମାନେ ଆମ ୟୁନିଭରସିଟି ଝିଅ । ସମ୍ବଲପୁର ଯାଉଚନ୍ତି ମାଟିନୀ ସିନେମା ଦେଖିବାକୁ । ଏମାନଙ୍କର କଲ୍‌ଚରାଲ୍ ରୁଚି କମ୍ । ବିଭିନ୍ନ ବିଭାଗର ପିଲା ଅଛନ୍ତି ତ ? ଆମେ ଏଠୁ ରିକ୍‌ସାରେ ଚାଲିଯିବା ।

ରିକ୍‌ସାରେ ଯାଇ ଆମେ ପହଞ୍ଚିଲୁ କୁଳପତି ଭୁବନେଶ୍ୱର ବେହେରାଙ୍କ କ୍ୱାଟରରେ । ମତେ ଅଖିଳ ସାଙ୍ଗରେ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଚା' ବିସ୍କୁଟ ଖାଇବାକୁ ଦେଇ ଟିକେ ବିଶ୍ରାମ କରିବାକୁ କହିଲେ । ଗେଷ୍ଟ ହାଉସକୁ ପଠାଇବାକୁ ସେ ବୋଧହୁଏ ଗାଡ଼ି ଖୋଜି ହେଉଥିଲେ । ଏଇ ସମୟରେ ଗୁଡ଼ାଏ ଝିଅ ଚାରିପାଞ୍ଚଟା ଗାଡ଼ିରୁ ଓହ୍ଲାଇ ପଡ଼ି ଆସି କହିଲେ– 'ସାର୍, ଗେଷ୍ଟ ଆସିଲେ

ନାହିଁ । ଟ୍ରେନ୍ ଛାଡ଼ିଲା ପରେ ଆମେ ଫେରିଲୁ । ଆମ ଫଙ୍କସନ୍ କେମିତି ହେବ ସାର୍ ।' ଡଃ ବେହେରା କହିଲେ, ହଉ, ତମେ ସବୁ ହଷ୍ଟେଲକୁ ଯାଅ । ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିବ, ଉତ୍ସବ ଆୟୋଜନ କରନ୍ତୁ । ମିଟିଂ ଠିକ୍ ସମୟରେ କରିବା । ଯାଅ ।

ସେମାନେ ଗଲାପରେ ମତେ ସେ ଗେଷ୍ଟ ହାଉସକୁ ଗାଡ଼ିରେ ପଠାଇଦେଲେ । ମୁଁ ତାଙ୍କୁ ଅନୁରୋଧ କରି କହିଲି, ଆପଣ ତ ମୃତ୍ୟୁଞ୍ଜୟ ବାବୁଙ୍କୁ ଜାଣିଚନ୍ତି । ଆପଣ କହିବା ପରେ ଆଜି ଦିନକ ରିହାତି ପାଇଚି । ରାତି ପାହିଲେ ଡିଉଟି । ତେଣୁ ମିଟିଂ ପରେ ମତେ ଟ୍ରେନ୍‌ରେ ଫେରିଯିବାକୁ ପଡ଼ିବ । ସେଇ ଅନୁସାରେ ବନ୍ଦୋବସ୍ତ କରାଇବେ ।

'ମୁଁ ଦେଖୁଚି' ବୋଲି କହି ଆମକୁ ବିଶ୍ରାମ ନେବାକୁ ପଠାଇ ଦେଲେ ।

ଠିକ୍ ସାଢ଼େ ପାଞ୍ଚଟା ବେଳକୁ ପୁଣି ଗାଡ଼ି ଯାଇ ହାଜର୍ । ଟି-ପାର୍ଟି ପାଇଁ ହଷ୍ଟେଲକୁ ଯିବାକୁ ଡକରା । ମୁଁ ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲି । ଟି-ପାର୍ଟିରେ ସବୁ ବିଭାଗର ପ୍ରଫେସର ଓ ଅଧ୍ୟାପକମାନଙ୍କର ଭେଟ । ମୁଁ ଇଣ୍ଟରଭିଉ ଦେଲାବେଳେ ଯେଉଁମାନେ ନିର୍ବାଚନ ବୋର୍ଡ଼ରେ ଥିଲେ, ଜଣେ ଅଧେଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ଏଠି ଉପସ୍ଥିତ ଥିଲେ । ତା'ଛଡ଼ା ସେ ଇଣ୍ଟର୍‌ଭିଉରେ ବଛାଯାଇଥିବା ଅଧ୍ୟାପକ ବନ୍ଧୁ ଶ୍ରୀ ଜେନା ମଧ୍ୟ ଥିଲେ । କେଜାଣି କାହିଁକି ଜାଣେନା, ସମସ୍ତଙ୍କୁ ନମସ୍କାର ଜଣାଇବା ବ୍ୟତୀତ କାହା ସହିତ ଆତ୍ମୀୟତା ସହ ବାର୍ତ୍ତାଳାପ କରିବାକୁ ଇଚ୍ଛା ହେଲା ନାହିଁ । ଏହାର ଆଉ ଗୋଟାଏ କାରଣ ହେଲା, କୁଳପତି ବେହେରା ମତେ ବରାବର ସାଙ୍ଗରେ ଧରି ଚାଲିଥିଲେ । ସେ ମୋ ସହିତ ରହିଥିବାରୁ କେହି ଭରସି କରି କିଛି ଆଳାପ କରିପାରୁ ନ ଥିଲେ ।

ସନ୍ଧ୍ୟା ଛ'ଟା ବେଳକୁ ମିଟିଂ କାର୍ଯ୍ୟ ଆରମ୍ଭ ହେଲା । ପ୍ରାରମ୍ଭିକ ସଙ୍ଗୀତ ଓ ସୂଚନାଦି ପରେ ତତ୍ତ୍ୱାବଧାରିକା ଅତିଥି ପରିଚୟ ସଂକ୍ଷେପରେ ଦେଲେ । କୁଳପତି ବେହେରା ସଭାପତିତ୍ୱ କରୁଥିଲେ । ସେ ବୋଧେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ନିଜେ ଉଠିପଡ଼ି ମୁଁ ସେଠିକି ଆସିବା, ଷ୍ଟେସନରୁ ରିସିଭ୍ କରି ଆଣିବାକୁ ଯାଇଥିବା ଝିଅମାନେ ମତେ ଚିହ୍ନି ନ ପାରିବା ଓ ମୁଁ ରିକ୍ସାରେ ଯାଇ ତାଙ୍କ କ୍ୱାଟର୍‌ସରେ ପହଞ୍ଚିବା ଆଦି କଥାକୁ ଖୁବ୍ ଜମାଣିଆ ଢଙ୍ଗରେ କହିଗଲେ । ତା'ପରେ ଜଣେ ମୁରବୀ ଲୋକ ଭଳି ସେ ବରାଦ କଲେ- ମୁଁ ଜାଣେନା, ସେ କେଉଁ ବିଷୟରେ

ଏଠି କହିବାକୁ ମନସ୍ଥ କରିଛନ୍ତି । ଅବଶ୍ୟ ବିଷୟ ସ୍ଥିରକରି କହିବା ପାଇଁ ଆମେ ତାଙ୍କୁ ଆଗରୁ ଜଣାଇବାର ସମୟ ନ ଥିଲା । ତେବେ ସେ ଜଣେ ଆଧୁନିକ ନାଟ୍ୟକାର । ଆଧୁନିକ କବିତା ଭଳି ଆଧୁନିକ ନାଟକ ମଧ୍ୟ ଦୁର୍ବୋଧ ହୋଇଯାଉଚି । ସେ ଯଦି ସେଇ ବିଷୟରେ କହନ୍ତେ ଆମକୁ ନୂଆ କଥା ଭଲ ଲାଗନ୍ତା । ମୁଁ ଏବେ ତାଙ୍କୁ ଅନୁରୋଧ କରୁଚି ସେ ବକ୍ତବ୍ୟ ପ୍ରଦାନ କରନ୍ତୁ ।

ମୁଁ ମୋ ଅଭିଭାଷଣ ପ୍ରଦାନ ପାଇଁ ଠିଆ ହେଲାବେଳକୁ ଦେଖିଲି ମୋ ଆଗରେ ଯୌବନର ଏକ ବିଶାଳ ରାଲି । ଆଗ ଚାରିଘେରା ଧାଡ଼ି ଛାଡ଼ିଦେଲେ ଅନ୍ୟ ସବୁଠି ଯୁବସୁଲଭ ଉଦ୍‌ବେଳନ । ଆସିଲାବେଳେ ଅଖିଳ ଠିକ୍ କହିଥିଲା । ମେଡ଼ିକାଲ, ଇଂଜିନିୟରିଂ ପିଲାଠାରୁ ନିଜ ନିଜର ଘନିଷ୍ଠ ଯୁବବନ୍ଧୁଙ୍କୁ ଛାତ୍ରୀମାନେ ଆମନ୍ତ୍ରଣ କରି ଡାକି ଆଣିଛନ୍ତି । ଏମାନଙ୍କ ଉପସ୍ଥିତି ସୀମା ଛାତ୍ରୀନିବାସ ତତ୍ତ୍ୱାବଧାରିକାଙ୍କ ନିୟନ୍ତ୍ରଣ ବାହାରେ । ଏମାନଙ୍କୁ ସାହିତ୍ୟ ସଂସ୍କୃତି ବିଷୟରେ ଦୁଇ-ଚାରୋଟି କଥା କହି ମୋ ବକ୍ତବ୍ୟ ଶେଷ କରିଥାଆନ୍ତି । କୁଳପତି ବେହେରା କିନ୍ତୁ ମତେ ଜଞ୍ଜାଳରେ ପକାଇଲା ଭଳି ମନେହେଲା । ପ୍ରଥମରୁ ମୁଁ କହି ରଖିଲି- ମୁଁ ଜାଣିଚି, ଏଠି କମର୍ସରୁ କେମିଷ୍ଟ୍ରି ବିଷୟର ପିଲା ଅଛନ୍ତି । ଅତିଥି ପିଲା ଭାବେ ଡାକ୍ତରୀ, ଇଂଜିନିୟରିଂ ପଢ଼ା ପିଲା ଥିବେ । ମୁଁ ମୋ ପ୍ରସଙ୍ଗ ଛାଡ଼ି ପ୍ରଫେସର ବେହେରା ମତେ ନିର୍ଦ୍ଦେଶ ଦେଇଥିବା ବିଷୟରେ କିଛି କହିବାକୁ ଯାଉଚି । ସେ ସୂଚନାକ୍ରମେ କହିଛନ୍ତି- ଏ ଆଧୁନିକ ନାଟକ ଆଧୁନିକ କବିତା ଭଳି ଦୁର୍ବୋଧ । ରକ୍ଷା ହେଇଚି ଅବୋଧ କହି ନାହାନ୍ତି । ତେବେ ଗୋଟିଏ କଥା, ମୁଁ ବୁଝିଲା ଭଳି ଭାଷାରେ କହିବି । ଯେତେବେଳେ ମୋ କଥା ଭାରାକ୍ରାନ୍ତ ମନେହେବ, କିମ୍ବା ଦୁର୍ବୋଧ ହେଇପଡ଼ିବ, ଆପଣମାନେ ତାଳି ମାରିଲେ ମୁଁ ବସିପଡ଼ିବି ।

ପ୍ରାୟ ପଚାଶ ମିନିଟ୍‌ରୁ ଊର୍ଦ୍ଧ୍ୱକାଳ ଆଧୁନିକ ପରୀକ୍ଷାବାଦୀ ନାଟ୍ୟଧାରାର ଦିଗଦିଗନ୍ତ ସଂପର୍କରେ ବିଶ୍ୱସାହିତ୍ୟ ଓ ଭାରତୀୟ ନାଟ୍ୟ ସାହିତ୍ୟର ତୁଳନାତ୍ମକ ଅନୁଧ୍ୟାନ କରି କହି ଚାଲିଥିଲି । ଆଧୁନିକ ନାଟ୍ୟ ସଂଳାପ କିପରି ଭାଷାଧର୍ମୀ ନ ହୋଇ ଭାବଧର୍ମୀ ହେଉଚି ତା'ର ଉଦାହରଣ ମୋ ନିଜ ନାଟକରୁ ଦେଇଥିଲି । ତିନୋଟି ଚରିତ୍ର ଏକା ସଂଳାପ 'ଥାଉ'- 'ଥାଉ'-'ଥାଉ' କହିବାର ଭାବ କିପରି ପୃଥକ, ତାହା ବୁଝାଇ କହିବାବେଳେ ପିଲାମାନଙ୍କୁ ମଜା ଲାଗିଲା । ସେମାନେ ସମବେତ ଭାବେ ଜୋରଦାର କରତାଳି ପିଟିଲେ । ମୁଁ ହଠାତ୍ କହି ଉଠିଲି-

ମୋର ସହୃଦୟ ଶ୍ରୋତା ମୋ କଷ୍ଟକୁ ବୁଝି ମୋ ବାଣୀକୁ ବିରାମ ଦେବାକୁ ସଂକେତ ଦେଲେ । ସେମାନଙ୍କୁ ସାଧୁବାଦ ଜଣାଇ ରହୁଚି ।

ତା'ପରେ ହୋ-ହଲ୍ଲା ହେଲା । ବନ୍ଦ କରନ୍ତୁନି, କୁହନ୍ତୁ- କୁହନ୍ତୁ । ଭୁବନେଶ୍ୱର ବେହେରା ମଧ୍ୟ ଆଉ କିଛି ସମୟ କହିବାକୁ ଅନୁରୋଧ କଲେ । ଇଂରାଜୀ ପ୍ରଫେସର ପ୍ରଫୁଲ୍ଲ କୁମାର ପତି ଆସି କହିଲେ- ଆପଣ କାଲି ଆମ ସେମିନାରରେ ଏ ବିଷୟରେ ବକ୍ତବ୍ୟ ପ୍ରଦାନ କରନ୍ତୁ । ଅନେକଗୁଡ଼ିଏ ଅସ୍ୱଷ୍ଟ କଥା ସ୍ୱଷ୍ଟ ହେଇଗଲା । ଏ ବିଷୟ ଆମ ପିଲାଙ୍କର ଦରକାର । ମୁଁ କହିଲି, ମୁଁ ମୋ ପ୍ରିନ୍‌ସିପାଲଙ୍କ ପାଖରେ ବଚନବଦ୍ଧ । ମତେ ଯେମିତି ହେଲେ ଫେରିଯିବାକୁ ହିଁ ପଡ଼ିବ ।

ଭୁବନେଶ୍ୱର ବେହେରା ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲେ । ତା'ପରେ କହିଲେ, ମୁଁ ତାଙ୍କୁ ଅଟକାଇ ରଖିପାରିବି ନାହିଁ । ଦିନେ ଚାହିଥିଲି ତାଙ୍କୁ ଏଠି ରଖି ଦେବାପାଇଁ ସବୁ ଦିନିଆ କରି । କିନ୍ତୁ ଆପଣମାନେ କହିଲେ, ଆମର ସାହାଯ୍ୟକାରୀ ଗବେଷକ ଦରକାର । ଆଜି ପୁଣି ଏକଥା କାହିଁକି କହୁଛନ୍ତି ?

ସେ କର୍ତ୍ତବ୍ୟ ସଚେତନ ବ୍ୟକ୍ତି । – ଯାଆନ୍ତୁ ।

।। ଉଣେଇଶି ।।

# ଆଶ୍ୱାସନାର ଋତୁ

କର୍ମ ଜୀବନରେ ଅସ୍ଥିରତା ନେଇ ଯେତେବେଳେ ମୁଁ ସନ୍ତୁଳି ହେଉଥିଲି 'ଯୁବଲେଖକ ସମ୍ମେଳନ' ସେତିକିବେଳେ ମୋ ଯନ୍ତ୍ରଣାର ମଲମ ଭଳି କାମ କରିଥିଲା । ଏ ଅନୁଷ୍ଠାନ ପ୍ରକୃତରେ ଥିଲା ଏକ ବିଦ୍ରୋହର ମଞ୍ଚ । ଡ. ମହତାବଙ୍କ ବିଷୁବ ମିଳନ ମଞ୍ଚ ଓ ଉତ୍କଳ ସାହିତ୍ୟ ସମାଜର ସଭାମଞ୍ଚ ଥିଲା ବୟସ୍କ ତଥା ପ୍ରତିଷ୍ଠିତ ସାହିତ୍ୟିକମାନଙ୍କର ଫୁଲ୍‌କା । ଯୁବ ସାହିତ୍ୟିକମାନଙ୍କର ସେ ଜାଗାରେ ନିଜ କଥା କହିବାର ପ୍ରାୟ ସୁଯୋଗ ନ ଥିଲା । ଏମାନେ ମଞ୍ଚଟିଏ ଖୋଜି ହେଉଥିଲେ । ସେ ସମୟର ତରୁଣ ତୁର୍କୀ ଲେଖକ କୈଳାସ ଲେଙ୍କା, ଗୁରୁ ମହାନ୍ତି, ସତ୍ୟ ମହାପାତ୍ର, ନରସିଂହ ନନ୍ଦ ଆଦିଙ୍କ ନେତୃତ୍ୱରେ ଅଖିଳମୋହନ ପଟ୍ଟନାୟକଙ୍କୁ ନେଇ ପୁରୀରେ ଉଦ୍‌ଘାଟନ କଲେ ଏକ ନୂଆ ମଞ୍ଚ 'ଯୁବ ଲେଖକ ସମ୍ମେଳନ' । ୧୯୬୪ ମସିହା କଥା । ବାନର ସେନାରେ ଥିଲେ ନାରାୟଣ ଚୌଧୁରୀ, ସଦାଶିବ ଦାଶ, ଗୋପାଳକୃଷ୍ଣ ରଥ, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ନିଶାକର ପାଢ଼ୀ, ମୁଁ ଏବଂ ଆମଭଳି କେତେକ ତରୁଣ-ଅରୁଣ ଦଳ । ପରେପରେ ଏଥିରେ ସାମିଲ ହେଲେ ବ୍ରଜନାଥ ରଥ, ବର୍ଷିୟାନ ନାଟ୍ୟକାର ରାମଚନ୍ଦ୍ର ମିଶ୍ର, ପାଠାଗାର ଆନ୍ଦୋଳନର ଅଗ୍ରଦୂତ ଦାଶରଥି ପଟ୍ଟନାୟକ ଭଳି ଆହୁରି ଅନେକ ।

ସମ୍ବଲପୁର ଯୁବଲେଖକ ସମ୍ମେଳନ ବେଳେ ମୁଁ, ଗୋପାଳକୃଷ୍ଣ ରଥ, ନିଶାକର ପାଢ଼ୀ ଓ ସଦାଶିବ ଦାଶ ମିଶି ଯୁବକବିମାନଙ୍କର ଏକ କବିତା ସଂକଳନ କରିଥିଲୁ । କଟକ ଚାନ୍ଦିନୀଚୌକର ଜ୍ୟୋତି ପ୍ରେସରେ ତାହା ଛାପା ହେଉଥିଲା । ସଂପାଦନା-ଚୌମିତ୍ର, ଅର୍ଥାତ ଆମେ ଚାରିବନ୍ଧୁ । ଛାପା କାର୍ଯ୍ୟ ଖୁବ୍ ତରବରରେ ହେଉଥିଲା । ଇଂ.ବଡ଼ି ଅକ୍ଷରରେ କବିତା କଂପୋଜ କରି ଭଞ୍ଜବାବୁ ମତେ ପ୍ରୁଫ୍ ଦେଖାଇ ଦେଉଥିଲେ; କିନ୍ତୁ କବିତାର ନାମ କୋଡ଼ିଏ ପଏଣ୍ଟ ଅକ୍ଷରରେ ହେଉଥିଲା ।

ସେ ଫଣ୍ଟର ଅକ୍ଷର ତାଙ୍କ ପାଖରେ ନ ଥିଲା । ସେ ଅନ୍ୟ ପ୍ରେସରୁ ସେହି ଅକ୍ଷର କଂପୋଜ କରି ଆଣି ପ୍ରିଣ୍ଟ୍ ପରେ ତାଙ୍କୁ ତାହା ଫେରାଉଥିଲେ । ମୁଁ ଫାଇନାଲ ପ୍ରୁଫ୍ ସବୁ ଦେଖି ଛାପା ଅର୍ଡର ଦେଉଥିଲି । ମାତ୍ର ଶେଷ ଫର୍ମା ପ୍ରୁଫ୍ ଦେଖିବା ଠିକ୍ ସମୟରେ ସମ୍ଭବ ହେଲା ନାହିଁ । ସମ୍ମେଳନର ପୂର୍ବ ରାତି । ଭଞ୍ଜବାବୁଙ୍କୁ କହିଲି, ନାଁ ହେଡିଂ ଗୁଡ଼ାକ ଭଲକରି ପ୍ରୁଫ୍ ଦେଖି ଛାପିଦେବେ । ସକାଳୁ ବାଇଣ୍ଡର ଆସି ଛାପା ଫର୍ମା ନେଇ ବହି ବନ୍ଧାଇ କରି ଆମକୁ ଦିନ ୨ଟା ପୂର୍ବରୁ ଦେବ । ଆମେ ବହି ଧରି ସମ୍ବଲପୁର ଯିବୁ ।

ସେଇ ଅନୁସାରେ କାମ ହେଲା । ସେ ବହିଟି ସମ୍ବଲପୁରରେ ଯୁବ କବିମାନଙ୍କ ମନରେ ଅନେକ ଉତ୍ସାହ ଓ ଉନ୍ମାଦନା ଭରି ଦେଲା । ଆମେ ଖର୍ଚ୍ଚ କରିଥିବା ପଇସା ବହି ବିକ୍ରିରୁ ଉଠିଗଲା । ପ୍ରତ୍ୟେକ କବିଙ୍କୁ ତାଙ୍କ ଲେଖାପାଇଁ ଫ୍ରି କପି ଦେଇ ଦେଲୁ । ଦୂରଦୂରାନ୍ତରରୁ ଲେଖା ପଠାଇଥିବା ଏବଂ ଏଠିକି ଆସି ନ ଥିବା କବିଙ୍କୁ ଡାକ ଯୋଗେ ତାଙ୍କ କପି ପଠାଇଦେଲୁ । ପ୍ରାୟ ପନ୍ଦର ଦିନ ପରେ ଦିଲ୍ଲୀରୁ ଏକ ପ୍ରତିବାଦ ସହ ଧମକପୂର୍ଣ୍ଣ ପତ୍ରଟିଏ ପାଇଲୁ କବିବନ୍ଧୁ ଭାସ୍କର ବର୍ମାଙ୍କଠାରୁ । ସେ କବିତାଟିଏ ପଠାଇଥିଲେ । ତାହା ଶେଷ ଫର୍ମାରେ ପ୍ରକାଶ ପାଇଥିଲା । ସେ ସଦାଶିବକୁ ପତ୍ର ଲେଖି ଅଭିଯୋଗ କରିଥିଲେ– ମୁଁ ତ କବିତା ପଠାଇଥିଲି 'ଜ୍ୱଳନ', ତାହା କିପରି 'ଭଜନ' ନାଁରେ ଛପା ହେଲା ? ମୁଁ ସେ କବିତା ସଂକଳନକୁ ପୋଡ଼ିବି ଏବଂ ଖବରକାଗଜରେ ଆପଣମାନଙ୍କ ନାଁରେ ପ୍ରତିବାଦ ଲେଖି ଜଣାଇବି ।

ସଦାଶିବ ଗୋଟାଏ ବୁଦ୍ଧିମାନ କାମ କଲା । ସେ ଆମମାନଙ୍କୁ ଚିଠିଟି ପଢ଼ାଇବା ପୂର୍ବରୁ ନିଜେ ତାହାର ଏକ ଚତୁର ଉତ୍ତର ଲେଖି ପଠାଇଦେଲା– ବନ୍ଧୁବର, ପତ୍ର ମିଳିଚି । ଆମେ କବିତା ସଂକଳନ ପାଞ୍ଚଶହ ଛାପିଥିଲୁ । ଆଜି ସୁଦ୍ଧା ଚାରିଶହ ସତୁରି ଖଣ୍ଡ ବିକ୍ରି ହୋଇଚି ଓ କବି– କପି ଭାବରେ ଦିଆସରିଚି । ପୋଡ଼ାପୋଡ଼ି କରିବା ପାଇଁ ବଳକା କପି ଆଉ ନାହିଁ । ତା'ଛଡ଼ା ଆପଣଙ୍କ ବ୍ୟତୀତ ଜଣେ କେହି ଏଯାଏ ସେ ତ୍ରୁଟି ବାଛିପାରି ନାହାନ୍ତି । ଅତଏବ ଆପଣଙ୍କ କବିତା 'ଜ୍ୱଳନ' ଓ 'ଭଜନ' ବୋଧେ ଏକା ମର୍ମ ବହନ କରୁଛି । ଆପଣ ଖବରକାଗଜରେ ପ୍ରତିବାଦ କଲେ ଆପଣଙ୍କ ଲେଖାର ସିନା ଅବମୂଲ୍ୟାୟନ ହେବ, କେହି ଆପଣଙ୍କ କବିତାର ମର୍ମ ବୁଝୁନାହାନ୍ତି ବୋଲି ଜଣାପଡ଼ିଯିବ । ଏଣିକି ଯାହା

କରିବା କଥା, ଆପଣ ବୁଝି ବିଚାରି କରନ୍ତୁ । ଆପଣଙ୍କ ଇଚ୍ଛା । ତେବେ ସହଯୋଗ ପାଇଁ ଧନ୍ୟବାଦ ।

ମୋର ମନେଅଛି, ଏକଥା ସେତିକିରେ ଶେଷ ହୋଇଥିଲା ।

ମନେ ପଡୁଚି, ଜୟପୁର ଯୁବଲେଖକ ସମ୍ମେଳନ କଥା ।

୧୯୭୧ କି ୧୯୭୨ ମସିହା ଠିକ୍ ମନେପଡୁନି ।

ଆୟୋଜନର ଦାୟିତ୍ୱ ନେଇଥିଲେ ବିଶିଷ୍ଟ ଜନନେତା ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ସୁସାହିତ୍ୟିକ ରାମନାଥ ପଣ୍ଡା । ଏଠି ବହୁ ସଂଖ୍ୟାରେ ଲେଖକ-ଲେଖିକା ଯୋଗ ଦେଇଥିଲେ । ଆମ ସାଙ୍ଗରେ ଯୋଗ ଦେଇଥିଲେ ଦୁଇଜଣ ଆଜୀବନ ଯୁବଲେଖକ- ବର୍ଷିୟାନ ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଏବଂ ପାଠାଗାର ଆନ୍ଦୋଳନର ବିଶିଷ୍ଟ ସୂତ୍ରଧର ଦାଶରଥି ପଟ୍ଟନାୟକ । ଯୁବଲେଖକ ମେଳଣରେ ବରାବର ଯୋଗଦେବା ତାଙ୍କର ଧର୍ମ । ଏଭଳି କୌଣସି ବର୍ଷଟିଏ ବ୍ୟତିକ୍ରମ ହୋଇନାହିଁ, ଯେଉଁ ବର୍ଷ ସେ ଦୁହେଁ ସମ୍ମେଳନରେ ଯୋଗ ଦେଇନାହାନ୍ତି । ନିମନ୍ତ୍ରଣ ମିଳୁ କି ନ ମିଳୁ ସେମାନେ ନିଶ୍ଚୟ ପହଞ୍ଚିଯାନ୍ତି ।

ଜୟପୁରରେ ଶେଷ ଡିସେମ୍ବରର ଶୀତ । ରାତିରେ ପିଇବା ପାଣି ବି ବରଫ ଭଳି ଥଣ୍ଡା ଲାଗୁଥିଲା । ଆମେ କେହି ବେଡ଼ିଂ ନେଇଯାଇ ନ ଥାଉ । କେବଳ ଖଣ୍ଡେ ଖଣ୍ଡେ ଚଦର । ଗୋଟେ ଅଧାମୁକୁଳା ସ୍କୁଲଘରେ ଆମର ଶୋଇବା ବ୍ୟବସ୍ଥା ହୋଇଥିଲା । ରାତି ନଅଟା ବେଳକୁ ଏତେ ଥଣ୍ଡା ଲାଗିଲା ଯେ ମାଟିରେ ପାଦ ଦେଇ ହେଲାନି । ଆମେ ସମସ୍ତେ ଗର୍ଜିଲୁ, ପାଟିତୁଣ୍ଡ ହୋ-ହଲ୍ଲା କଲୁ । ଆୟୋଜନକାରୀଙ୍କ ଦୂରଦୃଷ୍ଟିହୀନତାକୁ ନିନ୍ଦା କଲୁ ।

ମାତ୍ର ରାମଚନ୍ଦ୍ର ମିଶ୍ରଙ୍କ ମୁରବୀପଣିଆ ଆମମାନଙ୍କୁ ଚୁପ୍ କରିଦେଲା । ସେ କହିଲେ, ଦେଖ, ଆୟୋଜକମାନେ ଏତେ ବ୍ୟବସ୍ଥା କଲା ଭିତରେ କିଛିଟା ଦୋଷତ୍ରୁଟି ରହିଯାଇଚି । ଏଇଟା ଗୋଟେ ବଡ଼ ଘଟଣା ନୁହଁ । ଆମ ପାଇଁ ଏବେ ବଡ଼ କଥା ହଉଚି, ରାତିଟାରେ ଶୋଇବାର ଉପାୟ ବାହାର କରିବା । ମୁଁ ଆଉ ଦାଶରଥି ପଟ୍ଟନାୟକ ଆସିଲାବେଳେ ଗୋଟାଏ ଜିନିଷ ଠାବ କରି ଆସିଚୁ । ତୁମେମାନେ ଯଦି ଆମ କଥାରେ ରାଜି, ତେବେ ଆସ ଆମ ସାଙ୍ଗରେ ।

ସେ ଆଉ ଦାଶରଥି ପଟ୍ଟନାୟକ ଚାଲିଲେ ଆଗେ ଆଗେ ।

ଆମେ ସବୁ ଚାଲିଲୁ ତାଙ୍କ ପଛେପଛେ ବାନର ସେନା ଭଳି ।

ନିକଟରେ ଜଣକର ଛଣଗଦା ହୋଇଥିଲା । ପ୍ରତ୍ୟେକେ ଦଶ ଦଶ ବିଡ଼ା ଛଣ ଧରି ଆସିବାକୁ ସେ ନିର୍ଦ୍ଦେଶ ଦେଲେ । ନିଜେ ଓ ଦାଶରଥି ବାବୁ ମଧ୍ୟ ଛଣ ଆଣିଲେ । ଛଣ ହେଲା ଉଷୁମ ଶେଯ ଓ ତକିଆ । ରାତିଟା ଆମର ଆନନ୍ଦରେ କଟିଗଲା । ଅନେକେ ଶୋଇବାରେ ହଇରାଣ ହୋଇଥିବା କଥା ପରଦିନ ଆଲୋଚନା କଲାବେଳେ ଆମେ ରାମବାବୁଙ୍କ ବୁଦ୍ଧିକୁ ତାରିଫ କଲୁ । ସେ ଯେଉଁ ଉପାୟ କରିଥିଲେ ଆମେ ତାହା କହିଲୁ । ସେମାନେ କହି ଉଠିଲେ– 'ହେଃ, ସ୍ୱାର୍ଥପର ଦଳ ! ଆମକୁ ଟିକେ କହିଲନି ?

ପରଦିନ ଅପରାହ୍ଣରେ ଆମେ ବାହାରିଲୁ ନଗର ପରିକ୍ରମାରେ । ବୈଷ୍ଣବ ଚରଣ ସାମଲ, ପ୍ରସନ୍ନ ପାଟଶାଣୀ, ବ୍ରଜନାଥ ରଥ ଓ ମୁଁ । ଆମ ଦଳର ପଥପ୍ରଦର୍ଶକ ଥିଲେ ରିଜର୍ଭ ବ୍ୟାଙ୍କରେ ଚାକିରି ଆରମ୍ଭ କରିଥିବା ତରୁଣ କଥାକାର ସତ୍ୟ ମିଶ୍ର । ଖୁବ୍ ଭଲ ଲାଗିଥିଲା ଜଗନ୍ନାଥ ସାଗରର ବିପୁଳ ପରିସର ଓ ଶୋଭାରାଶି । ତା' ସହିତ ଏହାର ବାମପଟକୁ ଲାଗି ଅସଂଖ୍ୟ ଛୋଟ ଛୋଟ କୁଡ଼ିଆ ଘର ଥିଲା । ଦେଖିଲେ ମନେ ହେଉଥିଲା, ଏଗୁଡ଼ିକ ଏକ୍ସିମୋଙ୍କ ଇଗ୍ଲୁ ଘର । ଜଣେ ମଣିଷ ଠିଆ ବାଗେ ନୁହେଁ, ବରଂ ଗୁରୁଣ୍ଡି ଗୁରୁଣ୍ଡି ଭିତରକୁ ପଶିବାକୁ ପଡୁଥିବ । ସତ୍ୟ ମିଶ୍ର ସେ ଘରଗୁଡ଼ିକର ରହସ୍ୟ ଆମକୁ ଖୋଲି କହିଲେ । ଏସବୁ ଆମ ଜାତୀୟ ଜୀବନର କଳଙ୍କର ମନ୍ଦିର । ଦାରିଦ୍ର୍ୟର କଷାଘାତରୁ ବଞ୍ଚିବା ପାଇଁ ଦେହଜୀବିନୀଙ୍କ ଇଏ ଆଶ୍ରୟ ସ୍ଥଳ । ସେମାନଙ୍କ ଦୁରବସ୍ଥା ଦେଖିଲେ ଆଖିରେ ଲୁହ ରହିବନି ।

ସେମାନଙ୍କ ଅବସ୍ଥା ଦେଖିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କଲେ ପ୍ରସନ୍ନ ଓ ବୈଷ୍ଣବ ବାବୁ । ନିରବ ସମର୍ଥନ ଜଣାଇଲେ ବ୍ରଜନାଥ ରଥ । ମୁଁ ଆଉ ଏକୁଟିଆ କୋଉଠି ଠିଆହେବି । ଗୋଠ ସାଙ୍ଗରେ ସାମିଲ ହେଲି । ସତ୍ୟ ଆମକୁ ଗୋଟାଏ ସତର୍କ ବାଣୀ ଶୁଣାଇଲା । କହିଲା, ଆପଣମାନେ ମୋର ଗୋଟାଏ କଥା ରଖିବେ । ମୋ ପଛେପଛେ ସମସ୍ତେ ଚାଲିବେ । କୋଉଠି ଅଟକିଯାଇ ଠିଆହୋଇ ରହିବେନି । ହେଲା ? ଏଥର ଆସନ୍ତୁ ଚୁପ୍‌ଚାପ ମୋ ସହିତ, କେବଳ ଦେଖି ଦେଖି ଯିବେ ।

ଗରିବୀର ସୀମାହୀନ ସାମ୍ରାଜ୍ୟ ଭିତର ଦେଇ ଆମେ କେଇଜଣ ମହମ ତିଆରି କଣ୍ଢେଇ ଭଳି ଚାଲିଥିଲୁ । ମଝିରେ ମଝିରେ କାନରେ ବାଜି ଯାଉଥିଲା ଅଶ୍ରାବ୍ୟ ଭାଷାରେ ଜୀବନ ଯନ୍ତ୍ରଣାର ମୁକ୍ତ କବିତା । ସତ୍ୟ ମିଶ୍ରଙ୍କ ଶତ ବାରଣ

ସତ୍ତ୍ୱେ ପ୍ରଥମେ ପ୍ରସନ୍ନ ପାଟି ଖୋଲି ସମ୍ବେଦନା ପ୍ରକାଶ କଲା । ପରେପରେ ବୈଷ୍ଣବ ବାବୁଙ୍କର ଦାର୍ଶନିକ ମନ୍ତବ୍ୟ । ଜୀବନ ଜୀଇଁବାର ଇଏ କି ଦୟନୀୟ ସ୍ଥିତି । ଓଃ, ତା'ପରେ ଏକ ଅସମ୍ଭାଳ ତିଳତଣ୍ଡୁଳିତ ପରିସ୍ଥିତି । ସତେକି ବିରୁଡ଼ି ବସାରେ ଝଡ଼ । ସେଇ କୁଡ଼ିଆ ଘର ଭିତରୁ ବାହାରି ଆସିଲେ ଅସଂଖ୍ୟ ବିରୁଡ଼ି ଧର୍ମୀ ଦେହଜୀବିନୀ ନାରୀ । ପ୍ରାୟ ୫/୭ ଜଣ ଭିଡ଼ି ଧରିଥିଲେ ପ୍ରସନ୍ନକୁ ଏବଂ ଆଉ ୫/୭ ଜଣ ଭିଡ଼ି ଧରିଥିଲେ ବୈଷ୍ଣବବାବୁଙ୍କୁ । ସେତେବେଳକୁ ବୈଷ୍ଣବବାବୁଙ୍କ ଏଣ୍ଡି ଚଦରଟି ତଳେ ଖସିପଡ଼ି ଦଳାଚକଟାରେ ଭୂଲୁଣ୍ଠିତ । ପ୍ରସନ୍ନ କମ୍ୟୁନିଷ୍ଟିଆ ଭାଷଣ ଦେଇ, 'ମା ଭଉଣୀମାନେ, ମୋ କଥା ଟିକେ ଶୁଣ'ର ନିବେଦନ ନିଷ୍ଫଳ ପ୍ରତିଧ୍ୱନି ତୋଳୁଥିଲା । ସେମାନଙ୍କ ଝଗଡ଼ାର କାରଣ ଥିଲା– ଏ ଗ୍ରାହକଟି ପ୍ରଥମେ କାହା ହାତରେ ଧରା ଦେଇଛି । ଆଜିର ପ୍ରାପ୍ୟ ଆଠ'ଣା ଯାକ ତାହାର । ସେଇଥିପାଇଁ କଳି ।

ସତ୍ୟ ସେମାନଙ୍କର ତେଲୁଗୁ ମିଶା ଦେଶିଆ ଭାଷା ଜାଣିଥିଲା । ସେ ସେମାନଙ୍କୁ ସେଇ ଭାଷାରେ କ'ଣ କହି ବୁଝାଇଲା । ତା'ପରେ ବ୍ରଜ ବାବୁଙ୍କୁ ଓ ମତେ ଆଗ ଆଣି ମୁଖ୍ୟ ରାସ୍ତାରେ ଠିଆ କରାଇଲା । ନିଜ ପକେଟରୁ ପଇସା କାଢ଼ି ଆଠଣି ବାଛିଲା । ମୋଠୁଁ ଓ ବ୍ରଜବାବୁଙ୍କଠାରୁ କିଛି ଆଠଣି ବି ନେଲା । ପ୍ରସନ୍ନ ଓ ବୈଷ୍ଣବ ବାବୁଙ୍କୁ ମୁକାଳିବା ପାଇଁ ସେତକ ପଇସା ସେମାନଙ୍କୁ ବାଣ୍ଟିଲା । ଏଠିକା ଦେହଜୀବିନୀଙ୍କ ଦୁର୍ଦ୍ଦଶା ଜାଣିବାର ପ୍ରୟାସ ଆମକୁ ଟିକେ ମହଙ୍ଗା ପଡ଼ିଲା । ସନ୍ଧ୍ୟାରେ ମୋର ସାକ୍ଷାତ ହେଲା କୁମାର ମହାନ୍ତିଙ୍କ ସହିତ । ସେ ପୁରୀର ଅନାମଗୋଷ୍ଠୀ କବିଙ୍କର ଅନ୍ୟତମ ପ୍ରବକ୍ତା । ସେତେବେଳେ ସେ ଜୟପୁରଠାରେ ପୋଲିସ ଡି.ଏସ.ପି. ଥିଲା । ମୁଁ ତାଙ୍କୁ କଥା ପ୍ରସଙ୍ଗରେ ଏ କଳଙ୍କିତ ଧାରାକୁ ବନ୍ଦ କରିବାର ଉପାୟ କରିବାକୁ ଅନୁରୋଧ କଲି । ସେ 'ହଉ ଦେଖିବା' ବୋଲି କହି ନିରବ ରହିଲା ।

ପରଦିନ ସନ୍ଧ୍ୟାରେ ପୁଣି କୁମାର ମହାନ୍ତିଙ୍କ ସାଙ୍ଗରେ ଦେଖାହେଲା ମାତ୍ରେ ସେ କହି ଉଠିଲା, ଭାଇ, ତମେ କହିବା ପରେ କାଲିରାତିରୁ ମୁଁ ପଦକ୍ଷେପ ନେବା ଆରମ୍ଭ କରି ଦେଇଥିଲି । ଆଜି ଭୋଅରୁ ମୁଁ ତିନିଟା ପୋଲିସ୍ ଟ୍ରକ୍‌ରେ ସେମାନଙ୍କୁ ଲୋଡ୍ କରି ଆନ୍ଧ୍ର ସୀମା ପାରକରି ଛାଡ଼ି ଆସିଛି । କୁମାରଙ୍କ କଥା ଶୁଣି ମତେ ହସ ଲାଗିଲା । ମୁଁ ପରିହାସ ଛଳରେ କହି ଉଠିଲି– ବାସ୍, ଏତିକିରେ ତମ ପଦକ୍ଷେପ

ସରିଗଲା ? ଦଳେ ଆନ୍ଧ୍ରକୁ ଗଲେ ଆଉ ଯେଉଁମାନେ ଏଠି ରହିଲେ ? ସେମାନଙ୍କ ବେଉସା ତ ବନ୍ଦ କରିନ ।

କୁମାର ପୋଲିସିଆ ଢଙ୍ଗରେ ଉତ୍ତର ଦେଲା, ଓହୋଃ, ସେକଥା କାହିଁକି ଉଠଉଚ । ଆମ ଲୋକେ ବିନା ପ୍ରତିଯୋଗିତାରେ ଦି'ପଇସା ରୋଜଗାର କରନ୍ତୁ । ଗରିବ ଲୋକେ ଚଳିବେ କେମିତି ?

କୁମାର ଏବେ ସ୍ୱର୍ଗରେ ।

ମାତ୍ର ତା'ର କଥା ଏବେବି ପ୍ରତିଧ୍ୱନି ତୋଳୁଚି ମୋ ମନରେ ।

'ପୃଥିବୀ'ର ଆଦିମତମ ଜୀବିକା ଇଏ । କେହି ଚେଷ୍ଟାକରି ଏହାକୁ ବନ୍ଦ କରି ପାରିନାହାନ୍ତି କିମ୍ବା ବନ୍ଦ କରିପାରିବେ ନାହିଁ । ଏଇଥିପାଇଁ ତ ନାନା ଯୁଦ୍ଧ ବିଗ୍ରହ, ରକ୍ତପାତ ଓ ବଡ଼ ବଡ଼ ମହାକାବ୍ୟର ସୃଷ୍ଟି । ଇଏ ଜଗତର ଚିର ଚଳମାନ ନିୟମ । ମଣିଷ ଏ ବନ୍ଧନକୁ ଛିନ୍ନ କରିପାରୁ ନାହିଁ । କୋଉଠି ସମାଜ ଜୀବନକୁ ଦ୍ୱାହି ଦେଇ ଏ ବେପାର ଚାଲିଚି, ଆଉ କୋଉଠି ସମାଜର ଆଖି ଆଢୁଆଳରେ ଅସାମାଜିକ କାର୍ଯ୍ୟ ଆଖ୍ୟାପାଇ ସେଇ ଏକା ବେପାର ଚାଲିଚି । କାହାକୁ ସ୍ୱୀକୃତି ମିଳୁଚି, କାହାକୁ ମିଳୁ ନାହିଁ । କିନ୍ତୁ ଏସବୁ କିଛି ଏକା କାମ ।'

ଛାଡ଼ନ୍ତୁ ସେକଥା–

ଯୁବଲେଖକ ସମ୍ମେଳନର ସ୍ମୃତି ବଡ଼ ବିଚିତ୍ର । ବର୍ଷ ବର୍ଷକର ଘଟଣା ଅନେକ ବର୍ଷର ସମ୍ମେଳନ ପାଇଁ ସଂପତ୍ତି ହୋଇ ରହିଯାଏ । କେନ୍ଦୁଝର ସମ୍ମେଳନ ବୋଧେ ୧୯୭୪ ମସିହାରେ ହୋଇଥିଲା । ଏଥରକ ସଂଗଠନ ବୋଝ ମୋ ମୁଣ୍ଡରେ ଲଦା ହେଲା । ମୁଁ ବରାବର ଖସିଯାଉଥିଲି ଏ ଅନୁଷ୍ଠାନର କିଛି ପଦପଦବୀ ନ ମୁଣ୍ଡେଇ । ଏଥରକ ସମସ୍ତେ ବାଧ୍ୟ କଲେ । ନିମାଇଁ ପଟ୍ଟନାୟକ ସଭାପତି ଏବଂ ମୁଁ ସଂପାଦକ । ନଛୋଡ଼ବନ୍ଧା ଅବସ୍ଥା । ନିମାଇଁ ବାବୁ ଓ ମୁଁ ଉଭୟେ ନରମପନ୍ଥୀ । ଧସେଇ ପଶି କିଛି କାମ କରିଯିବାର ଦକ୍ଷତା ଆମ ଦିହିଁଙ୍କର ନ ଥିଲା । ୧୯୭୫ ଜୁନ ମାସ ବେଳକୁ ସାରା ଦେଶର ରାଜନୀତିକ ପାଣିପାଗ ଅଦ୍ଭୁତ ଭାବେ ପରିବର୍ତ୍ତନ ହୋଇଗଲା । ଦେଶରେ ଜାରି ହେଲା ଜରୁରୀକାଳୀନ ପରିସ୍ଥିତି । ବାକ୍ ସ୍ୱାଧୀନତାର କଣ୍ଠରୋଧ ହେଲା । ଏହା ପରେପରେ ମୋର ଢେଙ୍କାନାଳ କଲେଜକୁ ବଦଳି ହୋଇଥିଲା । ଢେଙ୍କାନାଳ ଜିଲ୍ଲାପାଳ ଏଭଳି ସମାବେଶ ଦେଶର ଜରୁରୀକାଳୀନ ପରିସ୍ଥିତିରେ କରିବା ପାଇଁ ଆଗ୍ରହୀ ହେଲେ ନାହିଁ ।

ବ୍ରଜନାଥ ରଥ ଓ ମୁଁ– ଦୁହେଁ ଯାଇ ବ୍ରହ୍ମପୁରେ ଚେଷ୍ଟା କଲୁ ।

ତାହା ବି ବିଫଳ ହେଲା ।

ଶେଷ ଜାଗା ବାଲେଶ୍ୱର ବୋଲି ସେ ବାଛିନେଲେ ।

ବ୍ରଜବାବୁ ବାଲେଶ୍ୱରକୁ ନିଜର ଶେଷ ଅକ୍ତିଆରରେ ରଖିଥିଲେ । ହାତର ପାଞ୍ଚ । ତାଙ୍କର ବିଚକ୍ଷଣ ସାଙ୍ଗଠନିକ ଦକ୍ଷତା ଓ କବିଜନ ସୁଲଭ ଆତ୍ମୀୟତା ସହିତ ମୁଁ ବହୁ ଆଗରୁ ଅତି ପରିଚିତ । ସେ ମୋ ଆଗଧାଡ଼ିର ଅତ୍ୟନ୍ତ ଜନପ୍ରିୟ କବି । ଏକଥା ଲେଖିଲା ବେଳକୁ ସେ ଜୀବନର ଅଶିତମ ମାଇଲ ଖୁଣ୍ଟ ପାଖରେ ।

ବିଶ୍ୱାସ ହଉନି ଏକଥା । ସବୁ କଥା କାଲି ଭଳି ଲାଗୁଚି । ଅଥଚ ସମୟ ଆମ ସମସ୍ତଙ୍କୁ ଠକି କେତେବେଳେ ଏତେ ଆଗକୁ ଚାଲିଗଲାଣି, ମୋଟେ ଭାବି ହଉନି ସେ କଥା । ବିଶେଷ କିଛି ପରିବର୍ତ୍ତନ ଆସିନି ସେ ବ୍ୟକ୍ତିତ୍ୱରେ । ଧୋତି, ପଞ୍ଜାବୀ ଓ ଚପଲ ପିନ୍ଧା ସାଦାସିଧା ମଣିଷ ଜଣେ ବ୍ରଜନାଥ ରଥ । ବାହାରକୁ ସରଳ ଓ ଶାନ୍ତ ମନେ ହେଲେ ବି ଭିତରେ ପ୍ରଚଣ୍ଡ ସ୍ୱାଭିମାନର ବ୍ୟକ୍ତିସତ୍ତାଟିଏ । ସୃଜନର ଚାହାଣି ଓ ଚମକରେ ସେ ବିଦ୍ରୋହୀ ମାନବାତ୍ମାର ମୂର୍ତ୍ତିମାନ୍ ମୁକ୍ତ ଇସ୍ତାହାର । ଭାରି ମେଳାପି ଓ ସ୍ନେହଶୀଳ । ଥଟ୍ଟାମଜାର ଏକ ଚଳନ୍ତି ରୂପ । ମୁଁ ତାଙ୍କୁ ବଡ଼ଭାଇ ଭଳି ମାନ୍ୟ କରୁଥିଲେ ବି ସେ ମୋ ନାଁ ପରେ 'ବାବୁ' ଯୋଡ଼ି ଦିଅନ୍ତି ।

ଘନିଷ୍ଠତାର ସଂପର୍କ ପଇଁଚାଳିଶ ବର୍ଷରୁ ଅଧିକ ।

ପାଠ ପଢୁଥିବା ସମୟରେ 'ପ୍ରଜାତନ୍ତ୍ର' ରେ ଚାକିରି କରୁଥିଲି । ସେଇ ସୂତ୍ରରେ କଟକ ରାଜାବଗିଚା ଲେବର କଲୋନୀରେ ଘର ଖଣ୍ଡିଏ ପାଇଥିଲି । ଘର ନଂ ସି/୩ । ପାଖକୁ ସି/୪ରେ ସପରିବାର ରହୁଥିଲେ କବି ରବି ସିଂହ । ମୋ ଘରଟି ଓଡ଼ିଶାର କବି ସାହିତ୍ୟିକମାନଙ୍କ ଚଟିଘର ଥିଲା । କବି ବ୍ରଜନାଥ ରଥ, ପ୍ରସନ୍ନ ପାଟଶାଣୀ, ସଦାଶିବ ଦାଶ, ନିଶାକର ପାଢ଼ୀ, ଗୋପାଳକୃଷ୍ଣ ରଥ, ଶିବରାମ ପାତ୍ର, ନବୀନ ସୁବୁଦ୍ଧି, ତପନ ପଟ୍ଟନାୟକ– ଏମିତି ବହୁ ସାହିତ୍ୟିକ ସହୃଦୟଙ୍କର ଭିଡ଼ ଜମେ ସେଠି । ଯୁବଲେଖକ ସମ୍ମେଳନ କାମରେ ବ୍ରଜବାବୁଙ୍କର ବାରମ୍ବାର ଡେରା ପଡୁଥିଲା ଏଇଠି । ସତରେ, ସେ ଘରଟି ଥିଲା ଏକ ସାରସ୍ୱତ ମନ୍ଦିର । ଘରଟା ବ୍ୟବହାର ପାଇଁ ସିନା ମୋ ନାଁରେ ଥିଲା; ମାତ୍ର ପ୍ରକୃତରେ ସେ ଘରର ମୁରବି ଥିଲେ ବ୍ରଜବାବୁ ।

ଦିନେ ଦିନେ ମୁଁ ସେ ଘରକୁ ରାତିରେ ଫେରିଲାବେଳକୁ ଦେଖେ, ବ୍ରଜବାବୁ କାହା କାହା ସହିତ ଗଭୀର ଆଲୋଚନାରେ ବ୍ୟସ୍ତ ଥାନ୍ତି । ସେମାନେ ମୋର ପରିଚିତ ହୋଇଥିଲେ ମୁଁ ପ୍ରୀତି ସମ୍ଭାଷଣ ଜଣାଇ ଭିତରକୁ ପଶେ । ବିଶେଷ ପରିଚିତ ହୋଇ ନ ଥିଲେ, ମୁଁ ସେମାନଙ୍କ ଆଲୋଚନାରେ ବାଧା ସୃଷ୍ଟି କରେ ନାହିଁ । ଆଲୋଚନା ପରିସମାପ୍ତି ପର୍ଯ୍ୟନ୍ତ ଚାଲେ । ବ୍ରଜବାବୁଙ୍କର ନିର୍ଦ୍ଦିଷ୍ଟ ଗୋଟା ଗୋଟା ଆଲୋଚନା ଦୀର୍ଘ ରାତିଯାଏ ଚାଲୁଥିଲା । ସେତେବେଳେ ତାଙ୍କ ସହ ପ୍ରସନ୍ନ ପାଟଶାଣୀ କିମ୍ବା ସଦାଶିବ ଦାଶଙ୍କୁ ମୁଁ ଦେଖେ । ଏମାନଙ୍କ କେନ୍ଦ୍ରରେ ଥାଆନ୍ତି ବକୁଳ ଦି' (କବି ରବି ସିଂହଙ୍କ ସ୍ତ୍ରୀ; ଭାରି ସ୍ନେହୀ ମଣିଷ; ମାନବିକ ଅନୁଭୂତିରେ ଭରପୂର ବ୍ୟକ୍ତିସତ୍ତା ।) 'ପ୍ରଜାତନ୍ତ୍ର'ର କାମ ଓ କଲେଜ କ୍ଲାସ ସାରି ଗଣ୍ଡିଏ କିଛି ହୋଟେଲରେ ଖାଦ୍ୟ ଖାଇ ଘରେ ପହଞ୍ଚିଲା ବେଳକୁ ମୁଁ ଖୁବ୍ କ୍ଳାନ୍ତ ହୋଇ ପଡ଼ିଥାଏ । ତେଣୁ ମତେ ମାଫ୍ ଦିଆଯାଏ । କାରଣ ମୁଁ କଥା ହଉହଉ ଢୁଳେଇ ପଡ଼େ ।

କେତେ ଥର ଦେଖିଚି, ବକୁଳ ଦି' ସେ ଆଲୋଚନାରେ ଆସି ଭାଗ ନେଉଛନ୍ତି । ଘର ବାରଣ୍ଡାରେ ବିଳମ୍ବିତ ରାତିଯାଏ ବସୁଛନ୍ତି । ଦିନେ ଉଠି ଦେଖିଲି, ରାତି ତିନିଟା । ମୁଁ ଚମକି ପଡ଼ିଲି । ସେମାନଙ୍କ ସହ ଘର ବାରଣ୍ଡାରେ ବସି ବ୍ରଜବାବୁ ଆଲୋଚନା ରତ । ସେ କି ଆଲୋଚନା ମୁଁ ଜାଣିପାରେନି । ମୁଁ ଭାବେ ବକୁଳ ଦି'ଙ୍କ ତାହା ଗୋଆ ମୁକ୍ତିଯାତ୍ରା ପ୍ରସଙ୍ଗ ବୋଧହୁଏ ଚର୍ଚ୍ଚା ଚାଲିଛି । ମାତ୍ର କ୍ରମଶଃ ମୁଁ ଲକ୍ଷ୍ୟ କଲି, ବ୍ରଜବାବୁ ଭାରି ଗମ୍ଭୀର ହୋଇ ପଡୁଛନ୍ତି । ସ୍ୱଭାବତଃ ସେ ଗମ୍ଭୀର ବ୍ୟକ୍ତି ନୁହଁନ୍ତି । ଦୁଃଖ କଷ୍ଟରେ ବି ହସହସ ଥାଆନ୍ତି । ମୁଁ ଦିନେ ତାଙ୍କୁ ଏଇ ଦୀର୍ଘ ଆଲୋଚନାର ପ୍ରସଙ୍ଗ ସଂପର୍କରେ ପଚାରିଲି । ସଂକ୍ଷେପରେ ମତେ ସେ ଉତ୍ତର ଦେଲେ– 'ପାରିବାରିକ । ମୋ ଦ୍ୱାରା ସମାଧାନର ଯେତେ ସୂତ୍ର ଥିଲା ସବୁ ଫେଲ ମାରିଲାଣି । ଭଦ୍ରମହିଳାଙ୍କୁ କିଭଳି ସାହାଯ୍ୟ କରିବି, ଜାଣିପାରୁନି ।' ବ୍ରଜବାବୁ ପ୍ରସଙ୍ଗଟିକୁ ଗୋପନ ରଖିଲେ ମଧ୍ୟ ପରେ ସବୁକଥା ଆପଣା ଛାଏଁ ଖୋଲିଗଲା । ସେଇ ସମୟରେ ମୁଁ ଜାଣିଲି, ବ୍ରଜବାବୁ କିଭଳି ମହତ କାମରେ ବାରମ୍ବାର ରାତି ଅନିଦ୍ରା ହୋଇ ଲାଗିଥିଲେ ।

ବ୍ରଜବାବୁ ସ୍ୱଭାବତଃ ସାହିତ୍ୟିକ ସହୃଦୟ ବ୍ୟକ୍ତି । ଯୁବଲେଖକ ସମ୍ମେଳନ ପାଇଁ ଆମେ ବହୁ ଅଞ୍ଚଳ ଏକାଠି ବୁଲିଚୁ । ସଂଗଠନ ପାଇଁ ଜୟପୁର, ବ୍ରହ୍ମପୁର,

ବଲାଙ୍ଗିର ଓ ସମ୍ବଲପୁର ଆଦି ସହରକୁ ଯାଇଚୁ । ଥରେ ବ୍ରହ୍ମପୁରରେ ବୁଲିବୁଲି ଥକି ପଡ଼ିବା ପରେ, ବ୍ରଜବାବୁ ପ୍ରସ୍ତାବ ଦେଲେ, ଚାଲ ସିନେମା ଯିବା । ସେକେଣ୍ଡ ସୋ ସିନେମା 'ଅନମୋଲ ମୋତି' ଦେଖିଥିଲୁ । ଅକ୍ଟୋପସ ସହିତ ସଂଘର୍ଷ କରୁଥିବା ନୋଳିଆ ପରିବାରର ଅଜବ କାହାଣୀ । ଦୁହେଁ ଦେଖିଥିଲୁ; ତା' ବିଷୟରେ ଆଲୋଚନା କରିଥିଲୁ । ବହୁଦିନ ଯାଏ, ବ୍ରଜବାବୁ ପରିହାସ କରି ବନ୍ଧୁମାନଙ୍କ ଆଗରେ କହୁଥିଲେ– 'ବ୍ରହ୍ମପୁରରେ ରତ୍ନାକର ବାବୁ ମତେ ନୋଳିଆଣୀର ଅନମୋଲ ମୋତି ଦେଖାଇ ଦେଲେ ।' ଏତକ କହି ପରିହାସରେ ହସୁଥିଲେ ।

ସବୁଠୁଁ ମଜା କଥାଟିଏ, ବ୍ରଜବାବୁଙ୍କର ଏବେବି ମନେଥିବ । ବୋଧହୁଏ ବଲାଙ୍ଗୀର ଯୁବଲେଖକ ସମ୍ମେଳନ ବର୍ଷର କଥା । କଟକରୁ ଆମେ ଦଳେ ବ୍‌ସରେ ଯାଉଥିଲୁ ସମ୍ମେଳନରେ ଯୋଗଦେବା ପାଇଁ । ସଦାଶିବ, ବ୍ରଜବାବୁ ଓ ଶିବରାମ ପାତ୍ର ଇତ୍ୟାଦି । (ଈଶ୍ୱର ଶିବରାମର ଆତ୍ମାକୁ ସଦ୍‌ଗତି ଦିଅନ୍ତୁ । ଆଜି ଏ କଥା ଲେଖି ବସିଲାବେଳେ ସ୍ୱୀକାର କରିବାକୁ ପଡୁଛି ଯେ, ସେ ଏବେ ଆମ ଗହଣରେ ଆଉ ମର ଶରୀରରେ ନାହିଁ । କିନ୍ତୁ ତା'ର ମଧୁର ସ୍ମୃତି ଏବେ ବି ଖୁବ୍ ଜୀବନ୍ତ ।) ଶିବରାମ ସେତେବେଳେ ଓ.ଆର.ଟି. ସଂସ୍ଥାରେ କାମ କରୁଥାଏ । ଏଣେ ଅନେକ କବିତା ଲେଖୁଥାଏ । ବହୁ ପତ୍ରପତ୍ରିକାକୁ ପଠାଇ ପ୍ରକାଶିତ ହେଉ ନ ଥିବାରୁ ତା' ମନରେ ଥାଏ ଭାରି ଅବସୋସ । ସେ ସମସ୍ତଙ୍କୁ କବିତା ପଢ଼ି ଶୁଣାଉଥାଏ । ସେଦିନ ବସରେ ତାଡ଼ାଏ କବିତା ଧରି ସେ ବ୍ରଜବାବୁଙ୍କୁ ପଢ଼ି ଶୁଣାଇଲା ।

ବ୍ରଜବାବୁ ତା' କବିତାର ମୁଗ୍ଧ ଶ୍ରୋତା କି ଜବରଦସ୍ତ ଶ୍ରୋତା ସହଜେ ଜଣାପଡୁ ନ ଥାଏ । କାରଣ ସେ ମଝିରେ ମଝିରେ ତା' କବିତା ଉପରେ ଟିପ୍ପଣୀ ବି ଦେଉଥାଏ । ଆମେ ସମସ୍ତେ ମଜାକରି ଗପସପ କରି, ହସଖୁସିରେ ଯାଉଥିଲୁ । କିନ୍ତୁ ଶିବରାମର ଏ କବିତା–ପଢ଼ା ଆମ କଥା ମଝିରେ ବାଧା ସୃଷ୍ଟି କଲା । କ'ଣ କରାଯିବ ! ସହି ହେଉନାହିଁ କି ରହି ହେଉନାହିଁ । ସେ କବିତା ପଢ଼ାର ବି ଶେଷ ନାହିଁ । କୋଉ ପତ୍ରିକାକୁ ସେ ପ୍ରକାଶନ ପାଇଁ ପଠାଇଥିଲା, ତାହା ସେ ପ୍ରକାଶ ନ କରିଥିବାରୁ ତାଙ୍କ ବିଷୟରେ କଟୁ ମନ୍ତବ୍ୟ ଦେବାକୁ ଶିବରାମ ପଛାଉ ନ ଥିଲା । ସବୁ କଥା ଶୁଣି ଶୁଣି ସଦାଶିବ ଦାଶ ପ୍ରଥମେ ନଖରାମି କରି କହିଲା 'ଭାଇ ଶିବରାମ ! ତମେ ଗୋଟେ କାମ କର । ତମେ ତ ଓ.ଆର.ଟି. ସଂସ୍ଥାରେ ଅଛ । ତମ ସଂସ୍ଥାର ତ ଶହ ଶହ ବସ ଓଡ଼ିଶା ସାରା ଯା'ଆସ କରୁଚି । ତମେ ଏ

କବିତାକୁ ଗୋଟା ଗୋଟା ବସ ପଛରେ ମାରିଦିଅ । ଫଳରେ ସାରା ଓଡ଼ିଶା ଲୋକ ଜାଣିବେ; ସମସ୍ତେ ପଢ଼ିବେ ।'

ବ୍ରଜବାବୁ କଥାଟିର ଗୁରୁତ୍ୱ ବଢ଼ାଇବା ପାଇଁ ଏଥିରେ ସହମତି ଜଣାଇ କହିଲେ– 'ଠିକ୍ କଥା । ଭଲ ପ୍ରସ୍ତାବଟିଏ । କିନ୍ତୁ କବିତାର ଏକାଧିକ କାର୍ବନ କପି କରି ଭିନ୍ନ ଭିନ୍ନ ରୁଟର ବସରେ ମାରିଲେ ଭଲ ।' (ସେତେବେଳେ ଜେରକ୍ସ ନ ଥିଲା, ତେଣୁ ସେ କାର୍ବନ କପି କଥା କହିଥିଲେ ।) ସଦାଶିବର କଥାକୁ ସେ ପରିହାସ ବୋଲି ଭାବୁଥିଲା । ମାତ୍ର ବ୍ରଜବାବୁଙ୍କ କଥାକୁ ସେ ସିରିଅସ୍ ପ୍ରସ୍ତାବ ବୋଲି ଭାବିନେଲା । ସେଭଳି ଏକ ପ୍ଲାନ୍ ବିଷୟରେ ସେ ଗମ୍ଭୀରତାର ସହିତ ଚିନ୍ତା କରୁଥିବା ଦେଖି ଆମେ ସମସ୍ତେ ଏକାସଙ୍ଗେ ହସି ଉଠିଲୁ । ସେ ଅପ୍ରସ୍ତୁତ ହେଇଗଲା ଏବଂ ସବୁତକ ଅଭିଯୋଗ ଓ ଅଭିମାନ ବ୍ରଜବାବୁଙ୍କ ଉପରେ ଥାପିଦେଲା । ପରିଶେଷରେ ବ୍ରଜବାବୁଙ୍କ ପାଖରୁ ଉଠିଯାଇ କଣ୍ଡକ୍ଟର ସିଟ୍‌ରେ ବସିଲା ।

ପରେ ଅବଶ୍ୟ ବ୍ରଜବାବୁଙ୍କୁ ସେ ଘନିଷ୍ଠତା ଡୋରରେ ବାନ୍ଧିବାକୁ ଚେଷ୍ଟା କରିଥିଲା । ତାଙ୍କ କବି ଆତ୍ମାକୁ ସେ ସମ୍ମାନ କରେ ବୋଲି କହିଥିଲା ।

ବ୍ରଜବାବୁଙ୍କ ସାନ୍ନିଧ କାହାଣୀମୟ ।

ଯେଉଁ ସମୟର ଘଟଣାକୁ ମନେ ପକେଇଲେ ବି ତାହା ମନୋଜ୍ଞ ରସାଳ ସ୍ମୃତି ହୋଇ ସାମ୍ନାରେ ଆସି ଉଭା ହୁଏ । ବାସ୍ତବରେ ସେ ଏକ ପରିପୂର୍ଣ୍ଣ ସାରସ୍ୱତ ବ୍ୟକ୍ତିତ୍ୱ । ନିଜ ଦୁଃଖ କାହାଣୀକୁ କହି ସେ କାହାରିକୁ ଭାରାକ୍ରାନ୍ତ କରନ୍ତି ନାହିଁ; ବରଂ ଅନ୍ୟର ଦୁଃଖକୁ ଲାଘବ କରିବା ପାଇଁ ସେ ଆଗଭର ହୋଇ ଆସନ୍ତି । ମୁଁ ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲାବେଳେ ବ୍ରଜବାବୁଙ୍କୁ କାର୍ଯ୍ୟ ନିର୍ବାହିକା ସମିତି ସଦସ୍ୟ ରୂପେ ମନୋନୀତ କରାଇଥିଲି । ସବୁଠୁଁ ଆନନ୍ଦର କଥା, ସେ କଟକ ଆସି ମିଟିଂରେ ବରାବର ଯୋଗ ଦେଉଥିଲେ ଏବଂ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗରେ ମୂଲ୍ୟବାନ ପ୍ରସ୍ତାବମାନ ଦେଉଥିଲେ । ତାଙ୍କ ପ୍ରଜ୍ଞା ଓ ବିଚାରବୁଦ୍ଧି ସବୁବେଳେ ପ୍ରଶଂସନୀୟ ।

ଏବେ ସେ ଅଶିବର୍ଷରେ ପହଞ୍ଚି ସାରିଲେଣି । ବୟସ ହୁଏତ ତାଙ୍କ ଚର୍ମରେ, କେଶରେ ଓ ହସନ୍ତ ମୁହଁରେ ଦାଗ ଆଙ୍କି ଥାଇପାରେ; କିନ୍ତୁ ତାଙ୍କ ମନପ୍ରାଣରେ ନୁହେଁ । ସେଠି ସେ ଚିର ଯୁବକ । ସେଠି ଭରି ରହିଛି ଅଫୁରନ୍ତ କାବ୍ୟ–ଝଲକ ।

ସାମ୍ୟ–ଚେତନା ତାଙ୍କ କାବ୍ୟଧାରାର ଏକ ବଳିଷ୍ଠ ସ୍ୱର ହୋଇପାରେ; ମାତ୍ର ତାଙ୍କ ବ୍ୟକ୍ତିସତ୍ତା ରୋମାଣ୍ଟିକ ଭାବାଳୁତାରେ ଉଚ୍ଛକିତ ।

ବ୍ରଜବାବୁଙ୍କ ଉଦ୍ୟମରେ ବାଲେଶ୍ୱରରେ ୧୯୭୬ରେ ଯୁବଲେଖକ ସମ୍ମେଳନ ଆୟୋଜିତ ହୋଇଥିଲା । ସେତେବେଳକୁ ଦେଶରୁ ଜରୁରୀକାଳୀନ ପରିସ୍ଥିତିର କଳାବାଦଲ ଘୁଞ୍ଚି ଯାଇଥିଲା । ଏଇଠି ଆମେ ଦୁଇଟା ଅକର୍ମା ସଭାପତି ଓ ସଂପାଦକ ପଦରୁ ଦାୟିତ୍ୱମୁକ୍ତ ହେଲୁ । ବେକରେ ଯୁଆଳି ପଡ଼ିଥିବା ବଳଦ ମୁକୁଳିଲା ଭଳି ମତେ ଭାରି ହାଲୁକା ଲାଗିଲା ସେଦିନ । ବିଶେଷ କିଛି କରିପାରିଲୁନି ବୋଲି ହେଉଥିବା ବଦନାମରୁ ତ ରକ୍ଷା ମିଳିଲା ।

॥ କୋଡ଼ିଏ ॥

# ଘଟଣ ଅଘଟଣ

୧୯୭୫ ମସିହା ଜୁନ ୨୫ ତାରିଖ ।

ଏହି ଦିନ ଭାରତବର୍ଷରେ ଜରୁରୀକାଳୀନ ପରିସ୍ଥିତି ଜାରି ହୋଇଥିଲା ।

କୁହାଯାଏ, ଭାରତୀୟ ଗଣତନ୍ତ୍ର ପାଇଁ ଏହା ଥିଲା ଏକ କଳା ଦିବସ ।

ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ନିର୍ବାଚନ ମାମଲାରେ ଅସିଦ୍ଧ ଘୋଷିତ ହେଲେ । ନିଜ ପଦବୀକୁ ହାତରେ ରଖିବା ପାଇଁ ସେ ଦେଶରେ ଆପଦକାଳୀନ ସ୍ଥିତି ଜାରି କରିଥିଲେ । ସାଧାରଣ ନାଗରିକଙ୍କର ବାକ୍ ସ୍ୱାଧୀନତା ଓ ଆତ୍ମପ୍ରକାଶନର ମୁକ୍ତଧାରାକୁ ସେ ଅବରୋଧ କରି ଦେଇଥଲେ । ସମଗ୍ର ଦେଶବାସୀ ଏଥିରେ ସ୍ତବ୍ଧ ଚକିତ ହୋଇଯାଇଥିଲେ । ଗଣତନ୍ତ୍ରରେ ଏହା ଥିଲା ଏକଛତ୍ରବାଦର ନମୁନା !

ଠିକ୍ ସେଇଦିନ ହେଇଥିଲା ମୋର ବାହାଘର ।

ମୋ ବିବାହର ବିଧିବ୍ୟବସ୍ଥା ଥିଲା ବଡ଼ ବିଚିତ୍ର । ମୁଁ ପ୍ରତ୍ୟକ୍ଷ ଭାବରେ ମୋର ଭାବୀ ପତ୍ନୀ ନିର୍ବାଚନରେ ଅଂଶଗ୍ରହଣ କରି ନ ଥିଲି । ଏ ପ୍ରସ୍ତାବଟି ଏକାଧିକ ବାଟରେ ଆସିଥିଲା । ପ୍ରଥମ– କାଳିକାପୁର ମୋ ପତ୍ନୀଙ୍କର ମାମୁଘର ମାଧ୍ୟମରେ । ସୁପ୍ରତିଷ୍ଠିତ ଆଇନଜୀବୀ ଚିନ୍ତାମଣି ଆଚାର୍ଯ୍ୟଙ୍କ ସାନଭାଇ ଦୀନମଣି ଆଚାର୍ଯ୍ୟଙ୍କ ବଡ଼ ନାତୁଣୀ ଲିଲି ବିଷୟରେ ଏଇ ପ୍ରସ୍ତାବ ଥିଲା । ତାଙ୍କ ମାମୁଘର ମୋ ଗାଁ ପାଖ । ମାଇଲିଏ ଦୂର ବି ହେବନି । ଏଠୁ ପ୍ରସ୍ତାବଟି ଯାଇ ଆମ ଘରେ ପହଞ୍ଚିଥିଲା । ତେଣେ ଦ୍ୱିତୀୟ ସୂତ୍ରଧର ଥିଲେ ରାଜେନ୍ଦ୍ର କଲେଜର ପ୍ରିନ୍ସିପାଲ କେ.ପି. ନିଗମ । ସେ ଏନ୍.ସି. କଲେଜରେ ଅଧ୍ୟକ୍ଷ ଥିଲାବେଳେ ଶ୍ୱଶୁର ସେଠି ସରକାରୀ ଡାକ୍ତର ଥିଲେ– ଡଃ ବୃନ୍ଦାବନ ଚନ୍ଦ୍ର ଦାଶ । ଅଧ୍ୟକ୍ଷ ଓ ଡାକ୍ତରଙ୍କ ପରିବାରର ଘନିଷ୍ଠତା ସେଠି ବଢ଼ି ଉଠିଥିଲା । ଲିଲି ମଧ୍ୟ ଏହି କଲେଜରେ

ପଢୁଥିଲେ । ନିଗମଙ୍କ ପତ୍ନୀ ଲିଲିଙ୍କୁ ନିଜ ଝିଅ ଭଳି ଶ୍ରଦ୍ଧା କରୁଥିଲେ । ଇଏ ହେଲା ଅନ୍ୟ ଏକ ଭିତ୍ତିଭୂମି ।

ନିଗମ ସାର୍‌ଙ୍କ ବଲାଙ୍ଗିର ବଦଳି ଏବଂ ମୋର ସେ କଲେଜରେ ପ୍ରଥମ ନିଯୁକ୍ତି ଅପୂର୍ବ ଯୋଗାଯୋଗ ହୋଇଗଲା । ନାନା କାରଣରୁ ମୋର ଲୋକପ୍ରିୟତା ନିଗମ ସାର୍‌ଙ୍କ ଦୃଷ୍ଟି ଆକର୍ଷଣ କଲା । ମାତ୍ର କେତେ ମାସର ବ୍ୟବଧାନ ପରେ ଅଧକ୍ଷଙ୍କ ମୁହଁରୁ ଗୁଞ୍ଜରଣ ଶୁଣାଗଲା ମୋ ବିବାହ ପ୍ରସ୍ତାବ ସଂପର୍କରେ– ଯାଜପୁର ରୋଡ଼ ନିବାସୀ ଡାକ୍ତର ବି.ସି. ଦାଶଙ୍କ ବଡ଼ଝିଅ ସହିତ । ନିଜେ ନ କହି ଚିନ୍ତାମଣି ବେହେରା, ଏନ୍.ସି. ନାୟକ ଆଦି ଅଧ୍ୟାପକମାନଙ୍କ ମାଧ୍ୟମରେ ସେ ଏକଥା କହିଲେ । ସେତେବେଳେ ମୋର ଏକମାତ୍ର କୈଫିୟତ ଥିଲା– ମୋର ପି.ଏସ୍.ସି.ରେ ଚାକିରି ରେଗୁଲାର ନ ହେଲା ପର୍ଯ୍ୟନ୍ତ ମୁଁ ଏବେ ବାହା ହେବି ନାହିଁ । ଏକଥା ଶୁଣି ସମସ୍ତେ ବାଧହୋଇ ଚୁପ୍ ରହିଲେ ।

ଆଗରୁ କହିଚି– ହତାଶ ମେଘର ଛାଇ ମୋ ଜୀବନ ଆକାଶରେ ବେଶ୍ କିଛି କାଳ ଢାଙ୍କି ରହିଥିଲା । ନିଗମ ସାର୍ ମଝିରେ ମଝିରେ ବାହାଘର ପ୍ରସ୍ତାବର ଜୁଆର ଉଠାଉଥିଲେ । ଯୋଗକୁ ତାଙ୍କର ବଦଳି ହୋଇଗଲା ଭୁବନେଶ୍ୱର । ତେଣୁ ସେ କଥା କିଛି କାଳ ପାଇଁ ଟିକେ ଥମିଗଲା । ହଠାତ୍ ପୁଣି ଦିନେ ମୁଣ୍ଡ ଟେକିଲା ସେକ୍ରେଟାରିଏଟ୍ ଫାଇଲ ଗଦା ଭିତରୁ । ଚାକିରି ରେଗୁଲାର ହେଇ ନ ଥିବାରୁ ମତେ ବାରମ୍ବାର ସେକ୍ରେଟାରିଏଟ୍‌ର ଶିକ୍ଷାବିଭାଗ ଓ ଏ.ଜି. ଅଫିସ୍‌କୁ ଧାଇଁବାକୁ ପଡୁଥିଲା । ଥରେ ଶିକ୍ଷା ବିଭାଗରେ ମୋ ଚାକିରିର ଧାରାବାହିକତାର ବିଜ୍ଞପ୍ତି ପ୍ରକାଶନରେ ଅହେତୁକ ବିଳମ୍ବ ଘଟିଥିଲା । କାରଣ ଅନୁସନ୍ଧାନ କରି ବିଭାଗରେ ପହଞ୍ଚିଲା ବେଳକୁ ସେଠିକା ସେକ୍ସନ ଅଧିକାରୀଙ୍କ ହାବୁଡ଼ରେ ପଡ଼ିଗଲି । ତାଙ୍କ ଘର ଯାଜପୁର ରୋଡ଼ । ସେ ଡାକ୍ତର ବି.ସି. ଦାଶଙ୍କ ଜଣେ ପେସେଣ୍ଟ । ଲୋକଟି ଅତ୍ୟନ୍ତ ଭଦ୍ର । ସେଦିନ ସେ ମତେ ବସିବାକୁ କହିଲେ ଏବଂ ବିଜ୍ଞପ୍ତିଟି ଏ.ଜି.କୁ ଯାଇଥିଲେ ବି ତାହାର ଗୋଟିଏ କପି ମତେ ବାହାର କରିଦେଲେ ।

ତା'ପରେ ଭଦ୍ରତା ସହିତ କହିଲେ– ଆପଣଙ୍କୁ ଆଗରୁ ଦେଖି ନ ଥିଲି; ଖାଲି ନାଁ ଶୁଣିଥିଲି । ଆପଣ ତ ଖୁବ୍ ଭଲ ମଣିଷ ଜଣା ପଡୁଛନ୍ତି । ଗୋଟାଏ ବ୍ୟକ୍ତିଗତ କଥା ପଚାରିବି ? କିଛି ଖରାପ ଭାବିବେନି । ଆପଣଙ୍କ ବିବାହ ପ୍ରସ୍ତାବ ଆମ ସେଠାକାର ଡାକ୍ତର ବାବୁଙ୍କ ଝିଅ ସହିତ ପଡ଼ିଥିଲା । ଏକଥା ମୁଁ ସେଇଠୁ

ଶୁଣିଥିଲି । ଆପଣଙ୍କ ସାଙ୍ଗରେ ଆଜି ଏଠି ଆକସ୍ମିକ ଦେଖା ହେଇଗଲା । ଯୋଗ ଭଲ । ପି.ଏସ୍.ସି. ହେଇନି ବୋଲି ଆପଣ ବିବାହ ପାଇଁ ରାଜି ହେଉ ନାହାନ୍ତି ବୋଲି ଶୁଣିଥିଲି । ଦେଖନ୍ତୁ, ମୁଁ ଏଇ ସେକ୍ସନରେ କାମ କରି କରି ବୁଢ଼ା ହେଲିଣି । ପି.ଏସ୍.ସି.ରେ ଏବେ କ'ଣ ହଉଚି ଆମେ ଜାଣୁ । ଆପଣଙ୍କୁ ଏଥରକ ସେମାନେ ମୋଟେ କଲ୍ କରି ନାହାନ୍ତି । ଆସନ୍ତା ପି.ଏସ୍.ସି.ରେ ଆପଣଙ୍କ ଚାକିରି ରେଗୁଲାର ନିଶ୍ଚୟ ହେବ; ଏହା ମୋର ଦୃଢ଼ବିଶ୍ୱାସ । ତା'ପରେ ଏପଟକୁ ବଦଳି କରି ଆଣିବା ମୋ ଦାୟିତ୍ୱ । ଆପଣ ଏ ବିବାହ ବିଷୟରେ ଶୀଘ୍ର ନିଷ୍ପତ୍ତି ନିଅନ୍ତୁ । ଏଥିରେ ମୋର ଲାଭ କେବଳ ଭୋଜି ଖାଇବା କଥା ।

ମୁଁ ଲୋକଟି କଥାରେ ଖୁବ୍ ପ୍ରଭାବିତ ହେଲି ଏବଂ ଆଶ୍ୱସ୍ତ ହୋଇଗଲି । ହସିହସି ତାଙ୍କୁ 'ହଉ' କହି ସେଠାରୁ ଏ.ଜି. ଅଫିସ୍‌କୁ ଗଲି । ଲୋକଟି ବୋଧେ ସତ କହିଥିଲା । ଆଜି ମୋର ଯୋଗ ଭଲ ଥିଲା । ଏ.ଜି. ରେ ଜଣେ ସାଙ୍ଗ ଦେଖାହୋଇଗଲା । ସେ ଉପର-ତଳ ହେଇ ମୋ ପେ-ସ୍ଲିପ୍ କରାଇ ଦେଇ ମତେ ଧରାଇଦେଲା । ମୁଁ ଭାରି ଖୁସି ହେଇଗଲି । ଦୁହେଁ କ୍ୟାଣ୍ଟିନ୍‌ରେ ଯାଇ ଜଳଖିଆ ଖାଇଲୁ । ମୁଁ ପୁରୁଣା ବସ୍‌ଷ୍ଟାଣ୍ଡରୁ ବଲାଙ୍ଗିର ଫେରନ୍ତା ଟିକେଟ୍ କାଟି ବାହାରକୁ ଆସିଲାବେଳେ ମୋର ଦେଖା ହୋଇଗଲେ ବିଶିଷ୍ଟ ଲେଖକ ବୀରକିଶୋର ଦାସ । ଅନେକ ଦିନ ପରେ ତାଙ୍କ ସହ ଦେଖା । ବୟସରେ ସେ ମୋଠୁଁ ବେଶ୍ ବଡ଼ ହେଲେ ମଧ୍ୟ ଆମେ ଖୁବ୍ ଆତ୍ମୀୟ ଥିଲୁ । ଏକା ପ୍ରକାଶକ ପାଖରେ ଦୁହିଁଙ୍କର ଏକାଧିକ ବହି ଆତ୍ମପ୍ରକାଶ କରିଥିଲା । ବୀରବାବୁ ଭାରି ମଉଜିଆ କଥା କୁହନ୍ତି । ସେ ତାଙ୍କ ବନ୍ଧୁ ରଜତ କୁମାର କରଙ୍କୁ ଦେଖା କରିବାକୁ ଆସିଥିଲେ । ତାଙ୍କ ଅଫିସ୍‌ରୁ ଶୁଣିଲେ ରଜତବାବୁ ରବୀନ୍ଦ୍ର ମଣ୍ଡପ ଯାଇଛନ୍ତି କେଉଁ ଏକ ବିଭାଗୀୟ ନାଟକ ଉତ୍ସବରେ ଯୋଗ ଦେବାପାଇଁ । ମୋର ବଲାଙ୍ଗିର ବସ୍‌ଯାତ୍ରା କିଛି ସମୟ ଡେରି ଅଛି ଜାଣି ସେ କଥାବାର୍ତ୍ତା ହୋଇ ଯିବାପାଇଁ ମତେ ଟାଣିଲେ ରବୀନ୍ଦ୍ର ମଣ୍ଡପ । ବାଧ୍ୟହୋଇ ତାଙ୍କ ସାଙ୍ଗରେ ଚାଲି ଚାଲି ଗଲି ।

ରବୀନ୍ଦ୍ର ମଣ୍ଡପ ସେତେବେଳକୁ ଲୋକାରଣ୍ୟ । ବୀରବାବୁ ହଲ୍ ଭିତରେ ପଶି ରଜତବାବୁଙ୍କୁ ଖୋଜିଲେ ବି ସେ ଅବା ପାଉଛନ୍ତି କୁଆଡୁ । ହଲ୍ ଭରପୂର । ବସିବା ପାଇଁ ସିଟ୍ ନ ଥାଏ । କେବଳ ସାମ୍ନା ଦି'ଧାଡ଼ି ଖାଲି ରଖାଯାଇଥାଏ । ବୀରବାବୁ ମତେ ସାମ୍ନା ଧାଡ଼ି ଯାଏ ଟାଣିନେଇ ଗୋଟାଏ କଡ଼କୁ ଯାଇ ବସିବାକୁ

କହିଲେ । ପୁଣି କହିଲେ– କୁଆଡ଼େ ଯିବେନି । ମୁଁ ଗେଷ୍ଟ ରୁମ୍‌ରୁ ତାଙ୍କୁ ସାଙ୍ଗେ ସାଙ୍ଗେ ଖୋଜି ଆସୁଚି ।

ସେ ଚାଲିଗଲେ । ସେଠି ନ ବସି ମୁଁ ଠିଆହୋଇ ରହିଥିଲି । ଅବଶ୍ୟ ଭାରି ହାଲିଆ ଲାଗୁଥିଲା । ସାଇଡ଼ର ସେଇ ଖାଲି ସିଟ୍‌ରେ ଶେଷକୁ ବସି ପଡ଼ିଲି । ତତ୍‌କ୍ଷଣାତ୍ ଏକ ବ୍ୟାଚପିନ୍ଧା ଯୁବକ ଆସି ମୋ ହାତକୁ ଧରି ଘୋଷାରିଲା ଓ ଚିତ୍କାର କରି କହିଥିଲା– 'ଉଠ ଏଠୁ ! ଏଇଟା ପରା ଗେଷ୍ଟ ସିଟ୍ ! ନବାବଙ୍କ ନାତି ଭଳି ବସିଯାଉଚ କ'ଣ ? ଉଠ, ଶୀଘ୍ର ।'

ଏଭଳି ବ୍ୟବହାର ମତେ ଭାରି ବାଧିଲା । ହାଲିଆ କଟେଇବି କ'ଣ ? ସାଙ୍ଗେ ସାଙ୍ଗେ ହଲ୍ ବାହାରକୁ ଚାଲି ଆସିଲି । ବୀରବାବୁ ଫେରି ଆସି ମତେ ବସିବାକୁ କହିଯାଇଥିବା ଜାଗାରେ ନ ପାଇ ହଲ୍ ବାହାରକୁ ତ ଆସିବେ । ମୁଁ ବାହାରେ ତାଙ୍କୁ ଅପେକ୍ଷା କରିବି । ତାହାହିଁ କଲି । ଅପେକ୍ଷାର ମୁହୂର୍ତ୍ତଗୁଡ଼ାକ ଭାରି ଲମ୍ବା । ଟିକକରେ ମନ ଚିଡ଼ି ଉଠେ । ମୁଁ ନ ଚିଡ଼ି ଏଣେ ତେଣେ ଆଖି ପହଁରେଇଲି । ହଠାତ୍ ମୋ ଆଖି ଅଟକିଗଲା ଗେଟ୍‌ର ସାଇନ୍‌ବୋର୍ଡ଼ ଉପରେ । ଆଜିର ନାଟକ ରତ୍ନାକର ଚଇନିଙ୍କର 'ରାଜହଂସ' । ମୁଁ ଚମକି ଉଠିଲି । ଆରେ, ବଡ଼ ବିଚିତ୍ର ଯୋଗାଯୋଗ ! ଏ ଘଟଣାଟି ଏକ ଦୁର୍ଘଟଣା ଭଳି ମନେହେଲା । ଆଉ କିଛି କଥା ଜଣାପଡ଼ିବା ପୂର୍ବରୁ ମୁଁ ଏକମୁହାଁ ହୋଇ ଫେରିଲି ବସ୍‌ଷ୍ଟାଣ୍ଡକୁ । ଠିକ୍ ବସଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ ଗୋଟେ ସରକାରୀ ଜିପରେ ବୀରବାବୁ, ସେଇ ବ୍ୟାଚପିନ୍ଧା ଯୁବକ ଓ ଆଉ ଜଣେ ଆୟୋଜକ ଆସି ପହଞ୍ଚିଗଲେ । ଆୟୋଜକ ବଡ଼ ନିଉନ ହୋଇ କ୍ଷମା ପ୍ରାର୍ଥନା କଲେ । ଦୟାକରି ନାଟକ ଅଭିନୟ ଦେଖିଯିବା ପାଇଁ ସେମାନେ ଅନୁରୋଧ କଲେ ।

ବୀରବାବୁ ଆଗରୁ ସେମାନଙ୍କୁ ହଲ୍ ପାଖରେ ସବୁ କଥା କହି ସାରିଥିଲେ । ତଥାପି ଭଦ୍ରାମି ଦୃଷ୍ଟିରୁ ସେମାନେ ଆସି ଏଭଳି ଅନୁରୋଧ କରୁଥିଲେ । ସେତେବେଳକୁ ବଲାଙ୍ଗିର ବସ୍ ଛାଡ଼ିବା ପାଇଁ ପ୍ରାୟ ଆଉ ଦଶ ମିନିଟ୍ ଥାଏ । ସେଇ କଥା କହି ମୁଁ ତାଙ୍କୁ ବିଦାୟ ଦେଲି । ଘଟଣ ଅଘଟଣ ଭିତରେ ଏ ଦିନଟି କଟିଗଲା । ମୁଁ ବଲାଙ୍ଗିର ଫେରିଗଲି । ଫେରିଲା ବେଳେ କିନ୍ତୁ ସେଇ ସେକ୍ସନ ଅଧିକାରୀଙ୍କ କଥା ବାରମ୍ବାର ମନକୁ ଛୁଇଁଲା । ସତରେ କ'ଣ ତାଙ୍କ କଥା ସତ ହେବ !

ତାଙ୍କ କଥା ସତ ହେଲା । ସବୁ ଆଡୁ ପ୍ରସ୍ତାବ ଆସି ସେଇ ଗୋଟିଏ ଜାଗାରେ ମେଳ ଖାଇଲା । ଝିଅ ଦେଖିବା ବିଷୟ ମତେ ପଚରା ଯାଇଥିଲା । ମୁଁ ମନା କଲି । ସବୁ ନିଷ୍ପତ୍ତି ଛାଡ଼ିଲି ଲକ୍ଷ୍ମୀଧର ଭାଇନା ଓ ସାହିତ୍ୟିକ ବନ୍ଧୁ ବୈଷ୍ଣବ ଚରଣ ସାମଲଙ୍କ ଉପରେ । ସେମାନଙ୍କ ନିଷ୍ପତ୍ତି ହିଁ ମୋ ନିଷ୍ପତ୍ତି । ସେମାନେ କାଳିକାପୁର ବିଧୁ ମାମୁଙ୍କ ସାଙ୍ଗରେ ଯାଜପୁର ରୋଡ଼ ଗଲେ ଏବଂ ହଁ କହି ଫେରିଆସିଲେ । ଏ ବର୍ଷର ବିବାହର ଶେଷ ତିଥି ଆଉ କମ୍ ଦିନ ଥାଏ । କନ୍ୟାପକ୍ଷ କିନ୍ତୁ ପ୍ରସ୍ତୁତ । ଆମ ଘର ତରଫରୁ ଦୁଇଟି ବିବାହ (ମୋର ଓ ମୋ ସାନଭାଇ ଭାସ୍କରର) ସେଇ ଏକା ତିଥିରେ କରିବା ସ୍ଥିର ହେଲା । କନ୍ୟାଘର ପକ୍ଷରୁ ଶେଷ ସଫେଇ ପଚରାଗଲା ଆମକୁ । ଲକ୍ଷ୍ମୀଧର ଭାଇନା ଓ ମୋ ବଡ଼ଭାଇଙ୍କୁ ସେ କଥା ନ ପଚାରି ପ୍ରଶ୍ନଟି ମୋ ଆଡ଼କୁ ମୁହାଁଇଲା । 'ଦବା-ନବା କଥା' । ଗାଁର ଜଣେ ସଂପର୍କୀୟ ପୁତୁରା ଏ ଖବର ଆଣି ମତେ ଶୁଣାଇଥିଲା । ମୁଁ ତାକୁ କହିଲି- 'ତୁ ତୋ ଡାକ୍ତର ଅଜାଙ୍କୁ କହି ପଠା; ସେ କନ୍ୟାଦାନ କରିବେ; ତା'ଠୁଁ ମହତ କାମ ଆଉ କିଛି ନାହିଁ । ତୋ କକେଇ କି ଠାକୁରେ ଯାହା ଦେଇଛନ୍ତି, ସେଇ ଯଥେଷ୍ଟ । ସେ ଆଉ କାହାଠାରୁ କିଛି ଚାହାନ୍ତିନି ।'

ଏ ଖବର କନ୍ୟାପିତା ଡଃ ଦାଶ ଶୁଣିଲା ମାତ୍ରେ ସେ ଖୁବ୍ ଖୁସି ହୋଇଗଲେ । ଜୁନ ୨୪ ତାରିଖ ରାତିରେ ବରଧରା ଗୋଟିଏ କାର୍‌ରେ ଆସି ଆମ ଗାଁରେ ପହଞ୍ଚିଲା ବିଧୁମାମୁଙ୍କ ସାଙ୍ଗରେ । ସେଦିନ ସନ୍ଧ୍ୟାରେ ପ୍ରବଳ ବର୍ଷା । ସକାଳ ଆଠଟାରେ ବର ଓ ବରଯାତ୍ରୀ ବାହାରିଲେ ଯାଜପୁର ରୋଡ଼ ଅଭିମୁଖେ । କଟକରୁ ଆଉ ଏକ ଗାଡ଼ିରେ ଗଲେ କବି ରବି ସିଂହ, ପ୍ରସନ୍ନ ପାଟଶାଣୀ, ପଢ଼ାସାଙ୍ଗ ଜୟକୃଷ୍ଣ ପଟ୍ଟନାୟକ, ରବୀନ ଘୋଷ ଆଦି କେତେକ ସହୃଦୟ । ମାତ୍ର ମୋ ଜୀବନର ଯାତ୍ରାପଥ ବୋଧେ ସରଳ ଓ ସ୍ୱାଭାବିକ ନ ଥିଲା । ବର କାର୍‌ଟି ସେଦିନ ଆକ୍ସିଡେଣ୍ଟ ହୋଇ ଖସିପଡ଼ିଥିଲା ପ୍ରାୟ ସତୁରି ଫୁଟ ରାସ୍ତାତଳର ଧାନବିଲ ଭିତରକୁ । ହେଲେ ଭଗବାନ୍‌ଙ୍କର ଅସୀମ ସୁଦୟା ଯେ, କାହାରି କିଛି ଖଣ୍ଡିଆ ଖାବରା ହୋଇ ନ ଥିଲା । କେବଳ ଭଙ୍ଗା କାଚ ବାଜି ବରଧରାଙ୍କ ମୁଣ୍ଡରେ ସାମାନ୍ୟ ଆଘାତ ହୋଇଥିଲା । ଡ୍ରାଇଭରଟି ରାତି ଅନିଦ୍ରା ଓ ଥଣ୍ଡାପାଗ ଯୋଗୁ ଢୁଳାଇ ପଡ଼ି ଏଭଳି ଦୁର୍ଘଟଣା ଘଟାଇଥିଲା ।

ମୋର ସାଙ୍ଗ ଜୟକୃଷ୍ଣଙ୍କ ବଡ଼ ଭିଣୋଇ ପୂର୍ଣ୍ଣଚନ୍ଦ୍ର ଦାସ ଏ ସମ୍ବାଦ ପାଇ ଗୋଟେ ଗାଡ଼ିଧରି ଆସି ଘଟଣା ସ୍ଥଳରେ ପହଞ୍ଚିଗଲେ । ସେ ଡୁବୁରିର ଜଣେ

ଜଣାଶୁଣା ଲୋକ । ଯାଜପୁର ରୋଡ଼ରେ ତାଙ୍କର ଭାରି ଖାତିରି । ସେ ବି ବିବାହ ପ୍ରଶେସନରେ ଯିବାପାଇଁ ଆସିଥିଲେ । ଯାହାହେଉ ସୂର୍ଯ୍ୟାସ୍ତ ପୂର୍ବରୁ ହାତଗଣ୍ଠି ପଡ଼ିଲା । ବରଯାତ୍ରୀମାନେ ଖିଆପିଆ ସାରି ଘରମୁହାଁ ହେଲେ । ସେଇଠି କେତେଜଣଙ୍କୁ ଇମର୍‌ଜେନ୍‌ସି ଭୟ ଗ୍ରାସିଲା । ପ୍ରସନ୍ନ ପାଟଶାଣୀ ଓ ରବି ସିଂହ ତେଣୁ ଭିନ୍ନମୁହାଁ ହେବା କଥା ସେଇଠି ଜାଣିଲି । ପରେ ଶେଷକଥାଟିଏ ଜାଣିଲି, ଡଃ ମହତାବ ଏଠିକି ଆସିବା ପାଇଁ କଟକ ମୁହାଁ ହୋଇଥିଲାବେଳେ ମହାନଦୀ ପୋଲ ପାଖରୁ ତାଙ୍କୁ ଆରେଷ୍ଟ କରି ନିଆଯାଇଥିଲା । ମୋ ଜୀବନର ସବୁଠୁଁ ସ୍ମରଣୀୟ ଦିନଟି ଅନେକ ଘଟଣ-ଅଘଟଣକୁ ଡାକି ଆଣିଲା ପରି ମନେହେଲା ।

ବାହାଘର ପରେ ମତେ ଏକାକୀ ବଲାଙ୍ଗିର ଫେରିଯିବାକୁ ହେଲା । କାରଣ ସେଠି ମୋର ଚୁଲି-ଚାଳ ନ ଥିଲା । ମୁଁ ହୋଟେଲ-ଖିଆ ଜୀବନ ବିତାଉଥିଲି । ଲିଲିଙ୍କୁ ସେଠିକି ନେଲେ ଘରକରଣାର ରୋଷେଇବାସ ଜିନିଷ ବନ୍ଦୋବସ୍ତ କରିବାକୁ ହେବ । ସ୍ଥିର କଲି, ସେସବୁ ଯୋଗାଡ଼ କରି ସାରିଲେ ଆସି ଲିଲିଙ୍କୁ ବଲାଙ୍ଗିର ନେଇଯିବି । ସେ ପର୍ଯ୍ୟନ୍ତ ସେ ଆମ ଗାଁରେ ନ ରହି କଟକରେ ମୋର ସବାସାନ ଭଉଣୀ ଜାହ୍ନବୀ ପାଖରେ ରହିଲେ । ଗାଁରେ ତାଙ୍କର ରହିବା ଅଭ୍ୟାସ ନ ଥିଲା । ବାପାଙ୍କ ସହିତ ସେ କେତେ ଛୋଟ ବଡ଼ ସହରରେ ଜୀବନ କଟାଇଥିଲେ । ତେଣୁ ଅଳ୍ପ ଦିନ ପାଇଁ ସେ କଟକରେ ରହିବା ପାଇଁ ରାଜି ହେଲେ ।

ମୁଁ ବଲାଙ୍ଗିର ଯାଇ ସଂସାରୀ ଜୀବନ ବିତାଇବାର ଯୋଗାଡ଼ରେ ଲାଗି ପଡ଼ିଲି । ମାତ୍ର ବନ୍ଧୁମାନେ ଦାବି କଲେ- 'ଭାଉଜ ପହଞ୍ଚିବା ପରେ ଏଠି ଗୋଟାଏ ଗ୍ରାଣ୍ଡ ଫିଷ୍ଟ ହବ ।' କାରଣ ହଠାତ୍ ତୁମେ ବାହା ହେଇପଡ଼ି ଆମମାନଙ୍କୁ ସେଥିରେ ଯୋଗ ଦେବାକୁ ଚାନ୍‌ସ ଦେଇ ନାହଁ । ତେଣୁ ଆମେ ଏଠି ବାହାଘର ଉତ୍ସବ ସେଲିବ୍ରେଟ୍ କରିବୁ ଧୁମ୍‌ଧାମରେ । ସେଥିପାଇଁ ସେମାନେ କାର୍ଯ୍ୟକ୍ରମର ତାରିଖ, ଭୋଜିର ମେନ୍ୟୁ ଓ ଭଲ ରାନ୍ଧୁଣିଆର ଯୋଗାଡ଼ରେ ଲାଗିପଡ଼ିଲେ । ଏବଂ ମତେ ସପରିବାର ବଲାଙ୍ଗିରରେ ଉପସ୍ଥିତ ହେବାକୁ ଗୋଟିଏ ମାସ ସମୟ ଦେଲେ । ମୁଁ ସେଥିରେ ଅରାଜି ହେବାକୁ ଆଉ ମୋର ୟୁ' ନ ଥିଲା ।

ସବୁକିଛି ଯୋଗାଡ଼ କରି ମାସ ଶେଷବେଳକୁ ମୋର କଟକ ଆସିବା କେବଳ ବାକି ଥାଏ । ଏଇ କାମରେ ବନ୍ଧୁମାନଙ୍କର ଖୁବ୍ ଉତ୍ସାହ ବଢ଼ି ଯାଇଥାଏ । କିନ୍ତୁ ମୋ ପାଇଁ ଭାଗ୍ୟର ବିଡ଼ମ୍ବନା ସବୁ ସମୟରେ ପିଛା ଧରିଥାଏ । ଅକସ୍ମାତ୍ ମୋ

ବଦଳି ଅର୍ଡର ଆସି ପହଞ୍ଚିଗଲା କଲେଜରେ । ମତେ ଢେଙ୍କାନାଳ କଲେଜରେ ଜଏନ୍ କରିବା ପାଇଁ ନିର୍ଦ୍ଦେଶ ଥିଲା । ସମସ୍ତଙ୍କର ସରାଗ ପାଣି ଫାଟିଗଲା । କିଛି ମୁହୂର୍ତ୍ତ ଭିତରେ ଏ ଖବରଟା ବଲାଙ୍ଗିର ସହର ସାରା ପ୍ରସାରିତ ହୋଇଗଲା । ଛାତ୍ରଛାତ୍ରୀ ଓ ଅଭିଭାବକମାନେ ମତେ ପ୍ରଶ୍ନ ଉପରେ ପ୍ରଶ୍ନ ପଚାରିଲେ । କେତେକ କହିଲେ, ଆପଣ ଚାହିଲେ ଏ ବଦଳି ବନ୍ଦ କରି ହେଇଯିବ । ଆମେ ବନ୍ଦ କରିଦେବୁ ।

ପ୍ରାୟ ପାଖାପାଖି ଛ'ବର୍ଷ ମୋର ବଲାଙ୍ଗିର ରହଣି । ତା'ରି ଭିତରେ ମୁଁ ବଲାଙ୍ଗିରର ଓ ବଲାଙ୍ଗିର ମୋର ହୋଇ ସାରିଥିଲା । ମନ ହେଉ ନ ଥିଲା ଏ ଜାଗା ଛାଡ଼ି ଅନ୍ୟ କୁଆଡ଼େ ଯିବାକୁ । ହେଲେ ମୁଁ ଚାହିଲେ କ'ଣ ହେବ ? ଏ ବଦଳି ବୋଧହୁଏ ସେଇ ସେକ୍ସନ ଅଧିକାରୀଙ୍କ କାମ । ସେ ଯାହା କହିଥିଲେ ବୋଧେ ତାହା କରିଛନ୍ତି । ଏକେ ତ ଇମର୍‌ଜେନ୍‌ସି ବେଳ, ଦ୍ୱିତୀୟରେ ବଦଳି ଋତୁ ଚାଲି ଗଲାଣି । ଅସମୟରେ ବଦଳି ତ କାହାରି ଇଚ୍ଛାରେ ହିଁ ହୁଏ । ତେଣୁ ମନ ଭିତରର କଥା ମନରେ ଚାପିରଖି ମୁଁ ବଲାଙ୍ଗିର ଛାଡ଼ିଲି ଏବଂ ଢେଙ୍କାନାଳ କଲେଜରେ ଆସି ଯୋଗ ଦେଲି ।

ପୂଜାଛୁଟି ପରେ ପରେ ସପରିବାର ଆମେ ଆସି ଢେଙ୍କାନାଳର କୁଂଜକାନ୍ତ ଏରିଆରେ ଏକ ଭଡ଼ାଘରେ ଅବସ୍ଥାନ କଲୁ । ମୁଁ, ଲିଲି ଏବଂ ତାଙ୍କ ସବା ସାନଭଉଣୀ ସେଲି ସେଠି ଆସି ରହିଲୁ । ସେଲି ବି.ଏସ୍.ସି.ର ଛାତ୍ରୀ ହେଲା । ଏଇ କଲେଜରେ ନାମ ଲେଖାଇଲା । ଏଠି ଅବସ୍ଥାନ କରିବାର ମାସକ ଭିତରେ ପି.ଏସ୍.ସି. ଇଣ୍ଟରଭିଉ ଫଳ ପ୍ରକାଶ ପାଇଲା ଏବଂ ଋଷି ବାକ୍ୟ ଭଳି ସେଇ ସେକ୍ସନ ଅଧିକାରୀଙ୍କ କଥା ସତ ହେଲା । ମୋ ନାଁ ସଫଳତା ତାଲିକାରେ ପ୍ରଥମରେ ଥିଲା । ଦୀର୍ଘ ପ୍ରତୀକ୍ଷାର ଆନନ୍ଦ ମୋ ପାଖରେ ପହଞ୍ଚିଗଲା ।

ମୋ ପାଖରେ କର୍ମବ୍ୟସ୍ତତା ଏଠି ବି ଛାଇ ହେଇଗଲା ।.

ବୋଧହୁଏ ବଲାଙ୍ଗିରକୁ ଭୁଲାଇବା ପାଇଁ ଈଶ୍ୱରଙ୍କ ଏ ଯୋଜନା ଥିଲା ।

ଏଠି ମୋର ଘନିଷ୍ଠ ବନ୍ଧୁ ଜୟକୃଷ୍ଣ ସପରିବାର କର୍ମରତ ଥିଲା । କଳାପ୍ରେମୀ କୁନିଭାଇ (ପରେ ହେଲେ ଜଷ୍ଟିସ୍ ଡି.ଏମ୍. ପଟ୍ଟନାୟକ)ଙ୍କ ଘର ଏଇ ସହରରେ । ସେ ଗୋଟେ ନାଟ୍ୟଦଳର ମୁଖିଆ ଥିଲେ । ମୁଁ ଏଠିକି ଆସିଲା ମାତ୍ରେ ମତେ ସେ ଦଳରେ ସାମିଲ କରିଦେଲେ । ଆମେ ଏକାଠି ହୋଇ ତାଳଚେର ଯାଇଥିଲୁ ନାଟକ ପରିବେଷଣ କରିବାକୁ । ମୋ ନାଟକ 'ନଚିକେତା ଉବାଚ' ସେଠାରେ ପ୍ରଥମେ

ଅଭିନୀତ ହୋଇଥିଲା । ଏଇଟି ଏକ ପରୀକ୍ଷାଧର୍ମୀ ନାଟକ । ଅଭିନୟ ଉପସ୍ଥାପନା ଖୁବ୍ ସୁନ୍ଦର ହୋଇଥିଲା ।

ଅଫିସର୍ସ ମହିଳା କ୍ଲବରେ ନାଟକ ହେଲା । ତା'ର ନିର୍ଦ୍ଦେଶନା ଦେବାକୁ ଟଣା ହେଲି ମୁଁ । କଲେଜର ବାର୍ଷିକ ନାଟକୋତ୍ସବ ହେବା ବାକି ଥିଲା । ସେଥିରେ ଜବରଦସ୍ତ ମତେ ଯୋଡ଼ି ଦିଆଗଲା । ମୋର ବହୁ ଚର୍ଚ୍ଚିତ ନାଟକ 'ରାଜହଂସ' ଏଠି ମଞ୍ଚାୟନ ପାଇଁ ସ୍ଥିର ହୋଇଥିଲା । କେବଳ ଏତିକି ନୁହେଁ, ବଲାଙ୍ଗିରର ମୋର ଡାକ୍ତର ସାଙ୍ଗ ବିଭୂତି ପଟ୍ଟନାୟକଙ୍କ ବଡ଼ ଭିଣୋଇ ବିଜୟରାମ ଦାସ ଆଗରୁ ଏଠିକି ବଦଳି ହୋଇ ଆସିଥିଲେ ମୃତ୍ତିକା ସଂରକ୍ଷଣ ଅଫିସର ଭାବରେ । ତାଙ୍କ ସହିତ ପାରିବାରିକ ସଂପର୍କ ନିବିଡ଼ ଥିଲା । ସେ କପିଳାସ ନିକଟରେ ଗୋଟିଏ ଚମତ୍କାର ଉଦ୍ଭିଦ ଉଦ୍ୟାନ କରାଇଥିଲେ । ଆମେ ସପରିବାର ତାଙ୍କ ସହିତ ସେଇ 'କଲ୍ୟାଣୀ' ଉଦ୍ୟାନ ଦେଖିବା ସହିତ କପିଳାସ ଦର୍ଶନରେ ଯାଉଥିଲୁ ବାରମ୍ବାର ।

କୁନିଭାଇଙ୍କ ଘର ପାଖରେ ଘର କରି ରହୁଥିଲେ ଏଠିକା ମେଡ଼ିସିନ ସ୍ପେଶାଲିଷ୍ଟ ଡାକ୍ତର ପ୍ରଫୁଲ୍ଲ ଆଚାର୍ଯ୍ୟ । ସେ ଭାରି ସ୍ନେହୀ ଓ ମେଳାପୀ ବ୍ୟକ୍ତି । ଅଳ୍ପଦିନ ଭିତରେ ତାଙ୍କ ପରିବାର ଓ ମୋ ପରିବାର ଖୁବ୍ ଘନିଷ୍ଠ ହୋଇଗଲେ । ନାଟ୍ୟକାର ବିଜୟ ମିଶ୍ରଙ୍କ ସାନଭାଇ ଡାକ୍ତର ଅଜୟ ମିଶ୍ର ଓ ତାଙ୍କ ପତ୍ନୀ ଏଠିକା ସରକାରୀ ମୁଖ୍ୟ ହସ୍ପିଟାଲରେ କର୍ମରତ ଥିଲେ । ବିଶିଷ୍ଟ କଥାକାର ଗୋପୀନାଥ ମହାନ୍ତିଙ୍କ କନ୍ୟା ଡାକ୍ତର ମଞ୍ଜୁଲତା ମହାନ୍ତି ଓ ତାଙ୍କ ସ୍ୱାମୀ ଡାକ୍ତର ହୃଦୟ ବଲ୍ଲଭ ମଧ୍ୟ ଏଇ ହସପିଟାଲରେ ଥିଲେ । ମୋଟ ଉପରେ ଏଠିକାର ଡାକ୍ତରମାନଙ୍କ ସହିତ ଆତ୍ମିକ ସୁପରିଚିତି ଗଢ଼ି ଉଠିଲା ।

ମାସ କେଇଟି ଭିତରେ ଢେଙ୍କାନାଳର ଜଣାଶୁଣା ଲୋକଙ୍କ ସହିତ ମୋର ଘନିଷ୍ଠତା ବଢ଼ିଗଲା । ସହଜେ ଦେଶରେ ଜରୁରୀକାଳୀନ ପରିସ୍ଥିତି । ଜିଲ୍ଲାପାଳ ଓ ଏସ୍.ପି. ହେଲେ ସରକାରଙ୍କ ଆଖି ଓ କାନ । ସେତେବେଳେ ଢେଙ୍କାନାଳର ଜିଲ୍ଲାପାଳ ଥିଲେ ଶ୍ରୀ ସୁଧାଂଶୁ ଶେଖର ମିଶ୍ର । ତାଙ୍କ ପତ୍ନୀ ଶ୍ରୀମତୀ ବିଜୟା ମିଶ୍ର ଆମ କଲେଜର ପଦାର୍ଥ ବିଜ୍ଞାନର ଅଧ୍ୟାପିକା । ସେ ଭାରି ଭଦ୍ର ଓ ସ୍ନେହଶୀଳା । ସେ ଥିଲେ କଲେଜ ନାଟ୍ୟ ସଂସଦର ଉପସଭାପତି । କୁଂଜକାନ୍ତ ଉପର ଅଞ୍ଚଳରେ ଜିଲାପାଳଙ୍କ ବଙ୍ଗଳା । ସେ ନାଟକ ରିହାରସାଲ୍ ବେଳେ ଗାଡ଼ିରେ ଚାଲି ଆସୁଥିଲେ ମୋ ବସାଘର ପାଖକୁ ଏବଂ ସେଠୁ ଆମେ କଲେଜ ଯାଉଥିଲୁ ।

ଠିକ୍ ଏଇ ସମୟର କଥା ।

ମତେ କେନ୍ଦ୍ରକରି ଦୁଇଟି ଗୁରୁତ୍ୱପୂର୍ଣ୍ଣ ଘଟଣା ଏଠି ଘଟିଗଲା ।

ମିସା–ବନ୍ଦୀ ହେବାର ଦୁର୍ଘଟଣାରୁ ରକ୍ଷା ପାଇବା ଲାଗି ବନ୍ଧୁ ପ୍ରସନ୍ନ ପାଟଶାଣୀ ଆସି ମୋ ଘରେ ଆତ୍ମଗୋପନ କରି ରହିଲା ଏବଂ ଭଞ୍ଜନଗର ଜେଲରେ ମିସା–ବନ୍ଦୀ ଥିବା ଡକ୍ଟର ହରେକୃଷ୍ଣ ମହତାବଙ୍କ ଏକ ବ୍ୟକ୍ତିଗତ ବିରଳ ପତ୍ର ଆସି କଲେଜ ଠିକଣାରେ ମୋ ପାଖରେ ପହଞ୍ଚିଲା ।

ସଦ୍ୟ ସ୍ଥାୟୀ ହୋଇଥିବା ସରକାରୀ ଚାକିରି ମୋର ।

ଦୁଇ ଦୁଇଟା ବିପଦପୂର୍ଣ୍ଣ ମୋଡ଼ରେ ମୁଁ ।

ଏଣେ ଦେଶରେ ଜରୁରୀ ପରିସ୍ଥିତି ।

ଜଣାପଡ଼ିଲେ ଚାକିରି ଚାଲିଯାଇପାରେ ।

ତଥାପି ମୋର ଥିଲା ଦମ୍ଭିଲା ଆତ୍ମପ୍ରତ୍ୟୟ...

॥ ଏକୋଇଶି ॥

# ଏକ ବିରଳ ପତ୍ର ଓ ତା'ର ଇତିହାସ

**ପ୍ରଥମ ମୋଡ଼ରେ ପତ୍ର–ମଣିଷ ଡଃ ମହତାବ :**

ଅନେକ ସ୍ମରଣୀୟ ବ୍ୟକ୍ତିଙ୍କର ଦୁର୍ଲଭ ଅନୁଭୂତିର ସ୍ୱାକ୍ଷରକୁ ପତ୍ର ଆକାରରେ ସାଇତି ରଖିଚି ମୁଁ । ସେସବୁ ମୋର ସ୍ମୃତିର ସଂପଦ । ଭାବିଚି, ତାକୁ 'ସାରସ୍ୱତ ସ୍ୱାକ୍ଷର' ଶିରୋନାମାରେ ପୁସ୍ତକଟିଏ କରିବି । କିନ୍ତୁ ଦେଖୁଚି, ବୋଧେ ମୋ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଯିବ । କାରଣ ମୋର ହାତ ଥରିଲାଣି । କଲମ ମୋ ଆୟତ୍ତରେ ରହୁ ନାହିଁ । ଜାତି ଆଗରେ ଅନେକ କଥା କହିବାର ଥିଲା । ଏବେ ଠିକ୍ ଢଙ୍ଗରେ କହିପାରୁନି । ସବୁ ଉପରବାଲାର ଇଚ୍ଛା ।

ମୋ ଜୀବନରେ ମୁଁ ଅନେକ ବିରଳ ବ୍ୟକ୍ତିତ୍ୱଙ୍କୁ ଭେଟିଚି । ନିବିଡ଼ତା ଆସିଚି ସେମାନଙ୍କ ସହିତ । ସେମାନେ ମତେ କେମିତି ମାପିଚନ୍ତି ସେକଥା ମୁଁ ଜାଣେନା; ତେବେ ମୋ ମାପକାଠିରେ ସେମାନଙ୍କ ତୁଙ୍ଗ ବ୍ୟକ୍ତିତ୍ୱର ଝଲକ ମତେ ଉଚ୍ଚକିତ କରିଛି; ଆଶ୍ଚର୍ଯ୍ୟ କରିଚି ସେମାନଙ୍କର ଅସାଧାରଣତାରେ ସାଧାରଣତା ଏବଂ ସେମାନଙ୍କ ମାନବିକ ଆପଣାପଣ । ସେମାନଙ୍କ ବ୍ୟକ୍ତିତ୍ୱର ସାମଗ୍ରିକ ସତ୍ତା ଗୋଟେ ଗୋଟେ ନିଷ୍ପାପ କିଶୋର ଜୀବନର ଅପଢ଼ା ବହିଟିଏ ଭଳି ମନେହେଇଚି ।

ସେଇଭଳି ଜଣେ ବିସ୍ମୟକର ପ୍ରତିଭାଧର ପୁରୁଷ ଥିଲେ ଡଃ ହରେକୃଷ୍ଣ ମହତାବ । ସେ ଜଣେ ଅସାଧାରଣ ସ୍ୱାଧୀନତା ସଂଗ୍ରାମୀ ହୋଇପାରନ୍ତି; ହୋଇପାରନ୍ତି ଜଣେ ବିଚକ୍ଷଣ ରାଜନୀତିଜ୍ଞ– ତାଙ୍କ ବହୁମୁଖୀ ବ୍ୟକ୍ତିତ୍ୱର ରୂପ ସୁଦୂରପ୍ରସାରୀ ହୋଇପାରେ; କିନ୍ତୁ ମୁଁ ତାଙ୍କଠାରେ ସାହିତ୍ୟ ଓ ସଂସ୍କୃତିର ପରିପୂର୍ଣ୍ଣ ପ୍ରୀତି ଦେଖି ବାରମ୍ବାର ମୁଗ୍ଧ ଚକିତ ହେଇଚି। ମୋ ଭଳି ପ୍ରତ୍ୟେକ ସାହିତ୍ୟିକ, ଯେଉଁମାନେ ତାଙ୍କ ସାଂସ୍କୃତିକ ଜୀବନଧାରା ସଂପର୍କରେ ଆସିଛନ୍ତି, ସେମାନେ ନିଶ୍ଚିତ ଭାବେ ବିସ୍ମୟ ବିସ୍ତାରିତ ନେତ୍ରରେ ତାଙ୍କ ବିଶାଳ ବ୍ୟକ୍ତିତ୍ୱ ଆଡ଼କୁ ଚାହିଁ

ଚକିତ ହୋଇଛନ୍ତି । ତା'ଛଡ଼ା ଡଃ ମହତାବ ଥିଲେ ବିପୁଳ ଜନସମାଜ ସହିତ ନିବିଡ଼ ସଂପର୍କ ରଖିଥିବା ଓଡ଼ିଶାର ଏକ ଅଦ୍ୱିତୀୟ ବ୍ୟକ୍ତି ।

ମୋ ଜୀବନର ସବୁଠାରୁ ଗୌରବମୟ ସଂପଦ ହେଉଚି ଡଃ ମହତାବଙ୍କ ଏଇ ଖଣ୍ଡିକ ଚିଠି । ଏ ଚିଠି ଖଣ୍ଡିକ ବେଶ୍ ଚର୍ଚ୍ଚିତ ହୋଇ ପଡ଼ିଥିଲା ଏବଂ ସେ ସମୟରେ ମତେ କିଛିଟା ଅଡୁଆରେ ପକାଇଥିଲା ।

୧୯୭୫ ମସିହାର କଥା ।

ସାରା ଦେଶରେ ଏମରଜେନ୍‌ସି । ସବୁଆଡ଼େ ଭିନ୍ନ ରକମର ପବନ । ସବୁଠି କେମିତି ଗୋଟେ ସନ୍ଦେହର ବାତାବରଣ । ସମସ୍ତେ ଭାବୁଥାଆନ୍ତି, ମୁଁ ଯାହା କରୁଚି ବା କହୁଚି, ଅଦୃଶ୍ୟରେ ଥାଇ କେହି ତାହା ଦେଖୁଚି ବା ଶୁଣୁଚି । ମୁଁ ଅଳ୍ପଦିନ ଆଗରୁ ବଲାଙ୍ଗିର ରାଜେନ୍ଦ୍ର କଲେଜରୁ ବଦଳି ହେଇ ଆସିଥାଏ ଢେଙ୍କାନାଳ କଲେଜକୁ । ଦଶହରା ଛୁଟି ପରର କଥା । ଟିଚର୍ସ କମନ୍‌ରୁମ୍‌ରେ ମୁଁ ବସିଥାଏ । ପୋଷ୍ଟମ୍ୟାନ ଆସି ଧରାଇଲା ଖୁବ୍ ସ୍ଥୂଳକାୟ ଚିଠି ଖଣ୍ଡିଏ । ତାହା ଖଣ୍ଡିଏ ଚିଠି ହେଇଥାଇପାରେ, କିନ୍ତୁ ଅନ୍ୟୂନ ପାଞ୍ଚ ସାତଟି ଲଫାପାରେ ଆବୃତ ତାଡ଼ାଏ ଚିଠିର ରୂପ ଧାରଣ କରିଥିଲା ।

ଚିଠିଟି ଥିଲା ଡଃ ହରେକୃଷ୍ଣ ମହତାବଙ୍କର ।

ଡଃ ମହତାବ ସେତେବେଳେ ଥିଲେ ଭଞ୍ଜନଗର ଜେଲ୍‌ରେ ମିସା-ବନ୍ଦୀ । ତାଙ୍କର ପ୍ରତିଟି କାର୍ଯ୍ୟକଳାପକୁ କଡ଼ାକଡ଼ି ଭାବରେ ତନଖି କରିବାକୁ କେନ୍ଦ୍ରରୁ ନିର୍ଦ୍ଦେଶ ଥିଲା । ତେଣୁ ତାଙ୍କର ଚିଠିପତ୍ର ଓ ଲେଖାଲେଖି ସବୁ ବିଭିନ୍ନ ସରକାରୀ ବିଭାଗ ମାଧ୍ୟମରେ ପଢ଼ାଯାଇ ତର୍ଜମା କରାହୋଇ ବାହାରକୁ ଆସୁଥିଲା । ଯେଉଁ ମାଧ୍ୟମ (ଜେଲ୍ କର୍ତ୍ତୃପକ୍ଷ / ଗୁଇନ୍ଦା ପୋଲିସ୍ / ଇଣ୍ଟେଲିଜେନ୍‌ସ ଆଦି) ଦେଇ ଆସୁଥିଲା, ସିଏ ତାଙ୍କ ବିଭାଗର ଲଫାପାରେ ପୂରାଇ ଅନ୍ୟ ବିଭାଗକୁ ପଠାଉଥିଲେ । ଶେଷରେ ତାହା କୌଣସି ଏକ ବିଭାଗରେ ସିଲ୍ ହୋଇଥିଲା । ମୋ ପାଖରେ ପହଞ୍ଚିଲା ବେଳକୁ ସରକାରୀ ହେପାଜତରେ ତାହା ଏକ ସ୍ଥୂଳକାୟା ଲଳନା ଭଳି ହୋଇସାରିଥିଲା ।

ସବୁଠୁଁ ଆଶ୍ଚର୍ଯ୍ୟ କଥା ହେଉଚି, ମୁଁ ସତର୍କତାର ସହିତ ଲଫାପାଗୁଡ଼ିକ ଖୋଲି ଚିଠିଟି ମହତାବଜୀଙ୍କର ଜାଣି ଆଶ୍ୱସ୍ତ ହେଲାପରେ ଦେଖିଲି- ମୋ ପଛରେ ଠିଆ ହୋଇଛନ୍ତି ଖାକୀ ପୋଷାକପିନ୍ଧା ଜଣେ ପୋଲିସ୍ ଡି.ଏସ୍‌ପି. । ତାଙ୍କର

ମତେ ପ୍ରଥମ ପ୍ରଶ୍ନ (ଇଂରାଜୀରେ) ଥିଲା– 'କ୍ଷମା କରିବେ, ଦୟାକରି କହିବେ କି ଡଃ ମହତାବଙ୍କ ସହିତ ଆପଣଙ୍କର ସଂପର୍କ କ'ଣ ?'

ମୁଁ ସଂପର୍କ କ'ଣ ନ ବୁଝାଇ ହାତରେ ଧରିଥିବା ଚିଠି ଖଣ୍ଡକ ବଢ଼ାଇ ଦେଇ କହିଲି, 'ଏ ଚିଠିଟି ପଢ଼ନ୍ତୁ, ଜାଣିପାରିବେ ତାଙ୍କର ମୋର ସଂପର୍କ କ'ଣ ?' ସେ ଦୁଇ / ଚାରିଥର ତାକୁ ଏପଟ ସେପଟ କରି ଦେଖି କହି ଉଠିଲେ– 'ସରି ! ମୁଁ ଏ ଚିଠିର ଗୋଟିଏ ଅକ୍ଷର ବି ପଢ଼ିପାରୁ ନାହିଁ ।'

କମନ୍‌ରୁମ୍‌ରେ ପୋଷାକପିନ୍ଧା ପୋଲିସ୍ ! ସମସ୍ତଙ୍କର ଜାଣିବାର ଉକ୍ରଣ୍ଠା, କଥା କ'ଣ ? ସେତେବେଳକୁ ଶିକ୍ଷକ କମନ୍‌ରୁମ୍‌ରେ ଗହଳି ହୋଇସାରିଥିଲା । ଶେଷରେ ମୁଁ ଚିଠିଟିକୁ ପଢ଼ି ତାଙ୍କୁ ଶୁଣାଇଲି :

ତା.୨୧/୧୦/୭୫

ରତ୍ନାକର,

ଏଥର ପୂଜାସଂଖ୍ୟା 'ଝଙ୍କାର'ରୁ ତୁମ ଗଳ୍ପ ତଳେ ତୁମର ବର୍ତ୍ତମାନ ଠିକଣା ଜାଣିଲି । ମୋର 'ଏକାଙ୍କିକା' ସଂକଳନ କ'ଣ କଲ ? ମୁଁ ତ ଏକ ପ୍ରାଚୀନ ସାହିତ୍ୟିକ ହୋଇଗଲିଣି । ୧୯୨୭ ରୁ ଲେଖା ଆରମ୍ଭ । ୧୯୪୯ ରୁ 'ଝଙ୍କାର' ଏବଂ 'ପ୍ରଜାତନ୍ତ୍ର'ରେ ଲେଖା । ସତେଇଶି ବର୍ଷର କଥା । ମୁଁ ତମମାନଙ୍କ ସାଙ୍ଗରେ ପାଦ ମିଳାଇ ଚାଲିବି ବୋଲି ଦୌଡ଼ିଛି । ତୁମେମାନେ ସାହାଯ୍ୟ ନ କଲେ ମୁଁ ପ୍ରାଚୀନ ସାହିତ୍ୟିକ ହୋଇଯିବି । 'ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ'; ମୁଁ ଏଠାରେ ଅଭ୍ୟାସବଶତଃ ପ୍ରତିଦିନ ଲେଖୁଛି । ପ୍ରାୟ ଚାରିଶହ ପୃଷ୍ଠାର ଏକ ଏକ ଉପନ୍ୟାସ, ଦୁଇଟି ବଡ଼ ବହି, ପ୍ରବନ୍ଧ, ଆଠଟି ଗଳ୍ପ ଓ କେତୋଟି କବିତା ଲେଖିଲିଣି । ଏହି ଲେଖା ହିଁ ବୟସ ସହିତ ଲଢ଼େଇ କରିବାରେ ବ୍ରହ୍ମାସ୍ତ୍ରର କାମ କରୁଛି । ଆଶା କରେ ଭଲ ଥିବ । ଏକାଙ୍କିକାଗୁଡ଼ିକ ଶୀଘ୍ର ପ୍ରସ୍ତୁତ କର । ଅଧ୍ୟାପକ ମନ୍ମଥନାଥ ଦାସ 'ଗାଁ–ମଜଲିସ' ଗୁଡ଼ିକ ସଂପାଦନା କରୁଛନ୍ତି । ଗଳ୍ପ ଓ ପ୍ରବନ୍ଧ, ସଂପାଦକୀୟ ପ୍ରଚୁର; କେହି ଯତ୍ନ ନେଲେ ହେବ । ତମର ସହାଧ୍ୟାପକମାନଙ୍କୁ ଶୁଭେଚ୍ଛା ଜଣାଇବ ।

– ହରେକୃଷ୍ଣ ମହତାବ

ପ୍ରସଙ୍ଗଟି ଜାଣିବା ପରେ ପୋଲିସ୍ ଅଫିସର୍‌ଜଣକ କ'ଣ ଭାବିଲେ କେଜାଣି– କହିଲେ, ସାର୍ ! ମୁଁ ନିରୁପାୟ । ଆମକୁ ଉପରୁ ନିର୍ଦ୍ଦେଶ ଆସିଛି, ଆପଣଙ୍କ ଗତିବିଧି ଷ୍ଟଡ଼ି କରିବା ପାଇଁ । ତେଣୁ...

– ହଉ, କରନ୍ତୁ ।

ତାହାହିଁ ହେଲା ।

ମୋ ରହିବା ଘର ବାହାର ବାରଣ୍ଡାରେ ଦୁଇଜଣ ସିପାହି ରାତି ଦିନ ଡିଉଟି କଲେ । ପାଖ ପଡ଼ୋଶୀଏ ଆଶ୍ଚର୍ଯ୍ୟ ହୋଇ ପଚାରିଲେ– 'ଇଏ କ'ଣ ? ଏଠି ପୋଲିସ୍ କାହିଁକି ?' ମୁଁ କଥା ଚଳାଇ ନେବାପାଇଁ କହିଲି, ଏ ଏରିଆରେ ବରାବର ଚୋରି ହେଲା । ତେଣୁ ବଡ଼ ପୋଲିସ୍ ଅଫିସର୍‌ଙ୍କୁ କହିବାରୁ ସେ ଏଭଳି ବ୍ୟବସ୍ଥା କରିଛନ୍ତି । ଦେଖାଯାଉ–

ବାହାର ଲୋକଙ୍କୁ ସିନା ଏକଥା କହିଦେଲି; ମାତ୍ର ନିଜ ମନକୁ ଭୟ ଜାବୁଡ଼ି ଧଇଲା । ଭୟର କାରଣ କିନ୍ତୁ ଅଲଗା ଥିଲା । ସେତେବେଳେ 'ମିସା' ୱାରେଣ୍ଟ ବଳରେ ଆରେଷ୍ଟ ହେବାରୁ ନିଜକୁ ଲୁଚାଇ ଲୁଚାଇ ମୋ ଘରେ ଆସି ଆତ୍ମଗୋପନ କରିଥିଲା ସେ ସମୟର ବିପ୍ଳବୀ ପ୍ରସନ୍ନ ପାଟଶାଣୀ । ମୋର ସବୁବେଳେ ଶଙ୍କା ହେଲା– କୌଣସି କାରଣରୁ ଯଦି ପ୍ରସନ୍ନର ପରିଚୟ ଖୋଲିଯାଏ, ସିଏ ତ ଆରେଷ୍ଟ ହବ; ତା' ସହିତ ମୋ ଚାକିରିଟା ଚାଲିଯିବ । ଏକେ ତ ଇଏ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ଏରିଆ; ଦ୍ୱିତୀୟରେ ମୁଁ ଜଣେ ସରକାରୀ କର୍ମଚାରୀ ।

ଦେଢ଼ ମାସରୁ ଅଧିକ କାଳ ଏମିତି ଖେଳ ଚାଲିଲା । ତା'ପରେ ପ୍ରସନ୍ନ ବ୍ୟାପାର ଯାହା ହେଲା ସିଏ ଏକ ସ୍ୱତନ୍ତ୍ର ଅଧ୍ୟାୟ । ସେକଥା ଏବେ ଏଇଠି ଥାଉ । ଡଃ ମହତାବଙ୍କ ଏକାଙ୍କିକା ଗ୍ରନ୍ଥ 'ଯୁଗ ସଂକେତ' ମୋ ଦେଖାଚାହାଁରେ ପ୍ରକାଶିତ ହେଲା । ଦେଶରୁ ଜରୁରୀ ପରିସ୍ଥିତି ହଟିଲା । ମୁଁ ନ କହିଲେ ମଧ୍ୟ କୌଣସି ସୂତ୍ରରୁ ଡଃ ମହତାବ ଏସବୁ କଥା ଶୁଣିଲେ । ମତେ ଡାକି ବିସ୍ତୃତ ଭାବେ ସବୁକଥା ପଚାରି ବୁଝିଲେ । ଜଣେ ପ୍ରଗଳ୍‌ଭ କିଶୋର ଗୋଟେ ଆଶ୍ଚର୍ଯ୍ୟ କଥା ଶୁଣିଲେ ଯେମିତି ଅନେକଙ୍କ ଆଗରେ ତାହା କହି ବସେ, ଠିକ୍ ସେମିତି ସେ ଏ କଥାକୁ ଅନେକ ଜାଗାରେ / ସାହିତ୍ୟ ସଭାରେ ଉଦାହରଣ ଛଳରେ କହିଥିଲେ ।

ସେ କହିଥିଲେ, ସାହିତ୍ୟ ସଂସାରରେ ଏଗୁଡ଼ିକ ଅଶୋଭନୀୟ ପଦକ୍ଷେପ । ସାହିତ୍ୟିକ ହେଉଚି ଜଣେ ଗୃହସ୍ଥ ମୁନି । ସେ ସବୁଥିରେ ଥାଇ କୋଉଥିରେ ନ ଥିବା ଏକ ନିର୍ଲିପ୍ତ ସତ୍ତା । ସାହିତ୍ୟିକର ସମାଜ ଜୀବନର ସବୁ ବିଷୟରେ ଅନୁଭୂତି ହୋଇପାରିଲେ ଭଲ । ତା' ହେଲେ ଆମ ସାହିତ୍ୟ ମହତ୍ତର ହୋଇପାରିବ । ସେ ଜଣେ କଟକଣା ମୁକ୍ତ ପ୍ରାଣୀ ହେବା ଉଚିତ । ରାମାୟଣ ଓ ମହାଭାରତର ଲେଖକ ବାଲ୍ମୀକି ଓ ବ୍ୟାସ ସମକାଳୀନ ସମାଜ ନୀତି ଓ ରାଜନୀତିରୁ ପ୍ରତ୍ୟକ୍ଷ ଅନୁଭୂତି ସାଉଁଟିଥିଲେ । ସେଥିପାଇଁ ସେ ସାହିତ୍ୟ କାଳଜୟୀ । ସାହିତ୍ୟିକକୁ ସମାଜନୀତି ଓ ରାଜନୀତିଠାରୁ ନିର୍ବାସିତ କରିଦେଲେ ସେ ଜୀବନଧର୍ମୀ ସାହିତ୍ୟ ଲେଖିବ କେମିତି ?

ଡଃ ମହତାବ ଜଣେ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ । ତାଙ୍କର ଚଳମାନ ଦୁନିଆର ସବୁ ବିଷୟରେ କିଛି କହିବାର ଅଧିକାର ଥିଲା । ତାଙ୍କ ଦୃଷ୍ଟିରେ ସାହିତ୍ୟ ସଂସାରରେ ତରୁଣ–ପ୍ରବୀଣ ସୀମାରେଖା କିଛି ନାହିଁ । ତେଣୁ ସେ ଥିଲେ ଚିରକାଳର ଯୁବକ । ଆଜି ଏ ଚିଠି ପ୍ରସଙ୍ଗ ଉତ୍ଥାପନ କଲାବେଳେ ତାଙ୍କ ଅମର ଆତ୍ମାକୁ ପ୍ରଣାମ କରୁଛି ।

॥ ବାଇଶି ॥

# ଭିନ୍ନ ଏକ ପ୍ରସନ୍ନର ଉପକଥା

ଏହି ସମୟରେ ଘଟଣାବହୁଳ ଜୀବନର ଇଏ ଦ୍ୱିତୀୟ ମୋଡ଼ । ଏତିକିବେଳେ ଛନ୍ଦ୍ମ ରୂପରେ ଆସି ମୋ ପାଖରେ ପହଞ୍ଚିଥିଲା କବିବନ୍ଧୁ ପ୍ରସନ୍ନ ପାଟଶାଣୀ । ପ୍ରସନ୍ନ ମୋ ଘରେ ଆସି ରହିବା ଏବଂ ପରେ ଆକସ୍ମିକ ଭାବେ ଯିବା, ଏକପ୍ରକାର ନାଟକୀୟ ଘଟଣା । ଆଜି ସେ କଥା ମନେପକାଇଲା ବେଳକୁ ତାହା ଏକ ରୂପକଥା ଭଳି ମନେହେଉଛି ।

ଆଡଭୋକେଟ୍ ଗୁରୁ ମହାନ୍ତି ଓ ଲେଖିକା ବୀଣାପାଣି ମହାନ୍ତି ଥିଲେ ଯୁବ ଲେଖକ ସମ୍ମେଳନର ପୂର୍ବତନ କର୍ମକର୍ତ୍ତା ଓ ଉପଦେଷ୍ଟା । ପ୍ରସନ୍ନ ଏହି ସଂଗଠନର ଜଣେ ସକ୍ରିୟ ସଦସ୍ୟ । ମୁଁ ସେତେବେଳେ ସାଧାରଣ ସଂପାଦକ । ସଦାଶିବ ଦାଶ, ଗୁରୁବାବୁ ଓ ବୀଣାଅପା ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କୁ ଦେଖା କରିବା ପାଇଁ ମତେ ଡକାଇଲେ । ପ୍ରସଙ୍ଗଟି ହେଲା– 'ପ୍ରସନ୍ନ ଜଣେ ତରୁଣ କବି । ତା' ନାଁରେ ମିସା ୱାରେଣ୍ଟ ରହିଛି । ମୁଖ୍ୟମନ୍ତ୍ରୀ ନନ୍ଦିନୀଦେବୀ ଜଣେ ସୁଲେଖିକା । ସେ ଚାହିଲେ ଏ ମିସା ୱାରେଣ୍ଟ ରଦ୍ଦ କରିଦେବେ । ପ୍ରସନ୍ନ କବି ଭାବରେ କିଛି ଗର୍ହିତ ଅପରାଧ କରି ନାହିଁ । ତେଣୁ ତାକୁ ଛାଡ଼ କରାଯାଉ ।'

ଏଇ କଥା କହିବାକୁ ସ୍ଥିର ହେଲା ।

ଆମକୁ ମୁଖ୍ୟମନ୍ତ୍ରୀଙ୍କ ସହ ସାକ୍ଷାତ୍ କରାଇ ଦେବାର ଦାୟିତ୍ୱ ନେଲେ ମୋର ସହାଧ୍ୟାୟୀ ତତ୍କାଳୀନ ଉପମନ୍ତ୍ରୀ ସେକ୍ ମତଲୁବ୍ ଅଲ୍ଲୀ । ଆମେ ସମସ୍ତେ ମତଲୁବ୍ ବାବୁଙ୍କ ମନ୍ତ୍ରୀ କ୍ୱାର୍ଟରରେ ଯାଇ ଏକାଠି ହେଲୁ । ସେତେବେଳେ ବିଧାନସଭା ଚାଲୁଥାଏ । ମତଲୁବ୍ ବାବୁଙ୍କ ସରକାରୀ ଗାଡ଼ିରେ ଆମେ ବିଧାନସଭା ଭିତରକୁ ଗଲୁ । ନଚେତ୍ ଭିତରକୁ ଯିବାପାଇଁ ଭାରି କଟକଣା । ଆମ ସାଙ୍ଗରେ ପ୍ରସନ୍ନ ବି

ଯାଇଥାଏ । ମତଲୁବ୍ ବାବୁ ତାଙ୍କୁ ଆସେମ୍ବ୍ଲିର ଦର୍ଶକ ଗ୍ୟାଲେରୀରେ ବସି ରହିବାର ବନ୍ଦୋବସ୍ତ କରି ଆମ ସମସ୍ତଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଚାମ୍ବର୍‌କୁ ନେଇଗଲେ । ଆଗରୁ କଥାବାର୍ତ୍ତା କରି ସେ ସାକ୍ଷାତ୍‌କାରର ସମୟ ସ୍ଥିର କରିସାରିଥିଲେ ।

ଡକରା ପାଇ ଆମେ ମୁଖ୍ୟମନ୍ତ୍ରୀଙ୍କ କୋଠରି ଭିତରକୁ ଗଲୁ । ସୌଜନ୍ୟ ଦୃଷ୍ଟିରୁ ପ୍ରଥମେ ପରିଚୟ ପର୍ବ ଅନୁଷ୍ଠିତ ହେଲା । ଆମେ ସବୁ ଯୁବ ଲେଖକ ସମ୍ମେଳନର କାର୍ଯ୍ୟକର୍ତ୍ତା ବୋଲି ଜାଣିବା ପରେ ସେ ଆମକୁ ଅଧିକ ଆଗ୍ରହ ଦେଖାଇଲେ । ସେ ନିଜେ ମନେ ପକାଇଲେ; କଲିକତାଠାରେ ଯୁବ ଲେଖକ ସମ୍ମେଳନ ଆୟୋଜନ କରିଥିବା ଇଷ୍ଟ ଜୋନ୍ କନ୍‌ଫରେନ୍‌ସ କଥା । ସେତେବେଳେ ସେ କେନ୍ଦ୍ରମନ୍ତ୍ରୀ । ଉଦ୍‌ଘାଟନ କରିବାକୁ ଆସିଥିଲେ । ସେଠି ଆମ ସମସ୍ତଙ୍କୁ ସେ ଭେଟିଥିଲେ । ତେଣୁ ଖୁସି ଜାହିର୍ କରି ସେ ଚା' ବିସ୍କୁଟ ଖୁଆଇଲେ । ଆମେ ତାଙ୍କୁ ଦେଖା କରିବାର କାରଣ ସେତିକିବେଳେ ସେ ପଚାରିଲେ ।

ପୂର୍ବ ପ୍ରସ୍ତୁତି ଅନୁସାରେ ଆମେ ପ୍ରସନ୍ନ କଥା ହିଁ କହିଲୁ ।

ସେ ଟିକେ ବିସ୍ମୟ ପ୍ରକାଶ କଲେ ଏବଂ ହୋମ୍ ସେକ୍ରେଟାରୀଙ୍କୁ ସତ୍ୟାସତ୍ୟ ଜଣାଇବା ପାଇଁ ଫୋନ୍‌ରେ ନିର୍ଦ୍ଦେଶ ଦେଲେ ।

ଖୁବ୍ କମ୍ ସମୟ ଭିତରେ ସେକ୍ରେଟାରୀ ପୂରା ଫାଇଲ୍ ସହିତ ଆସି ପହଞ୍ଚିଗଲେ । ସେ ଆସି ମୁଖ୍ୟମନ୍ତ୍ରୀଙ୍କୁ ଯେଉଁ ସମ୍ବାଦ ଦେଲେ ଆମେ ସେ କଥା ଶୁଣି ଚକିତ ହୋଇଗଲୁ । ସେ କହିଲେ, ପ୍ରସନ୍ନ ପାଟଶାଣୀ ନାଁରେ ମିସା–ବନ୍ଦୀର କିଛି ୱାରେଣ୍ଟ ନାହିଁ । ଓଡ଼ିଶା ସରକାର ଏପରି କିଛି କେଶ୍ ତାଙ୍କ ନାଁରେ ଦାୟର୍ କରିନାହାନ୍ତି ।

ମୁଖ୍ୟମନ୍ତ୍ରୀ ହସି ହସି ଆମକୁ କହିଲେ– 'ତୁଚ୍ଛାଟାରେ ଛାନିଆଁ ।'

ଆମେ ଖୁସି ହୋଇ ତାଙ୍କଠୁଁ ବିଦାୟ ନେଲୁ ।

ଆସେମ୍ବ୍ଲି ବାହାରେ ଆସି ମତଲୁବ୍ ବାବୁଙ୍କୁ ଅପେକ୍ଷା କଲୁ । କିଛି ସମୟ ପରେ ସେ ଆସି ଆମ ପାଖରେ ପହଞ୍ଚିଗଲେ । ସବୁ କଥା ଶୁଣିଲେ । ଭାରି ଖୁସି ହୋଇ ସେ କହିଲେ– ତେବେ ଆମେ ସମସ୍ତେ ଏକାଠି ଯାଇ କୋଉଠି ଖାଇବା; ଖୁସି ମନେଇବା । ଆପଣମାନେ ଯାଇ ପ୍ରସନ୍ନବାବୁ ନିକଟରେ ଦର୍ଶକ ଗ୍ୟାଲେରୀରେ ବସନ୍ତୁ । ମୋର ଆସେମ୍ବ୍ଲିରେ ଗୋଟେ ପ୍ରଶ୍ନର ଉତ୍ତର ଦେବାକୁ ଅଛି । ସର୍ବମୋଟ ଅଧଘଣ୍ଟା ଲାଗିବ । ତା'ପରେ ଆମେ ସବୁ ଯିବା ।

ଆମଠୁଁ ଟିକେ ଆଗେଇ ଯାଇ ସେ ହଲ୍ ଭିତରକୁ ପଶିଗଲାବେଳେ ତାଙ୍କ ସହିତ ଦେଖା ହୋଇଗଲା ବାଣପୁର ନିର୍ବାଚନ ମଣ୍ଡଳୀର ତତ୍‌କାଳୀନ ବିଧାୟକ ରଘୁ ରାୟଙ୍କର । ତାଙ୍କର ମତଲୁବ୍‌ବାବୁଙ୍କ ପାଖରେ କିଛି ଗୋଟେ କାମ ଥିଲା । ସେ ତାଙ୍କୁ ଏକୁଟିଆ ପାଇ ନିଜ କାମଟି ବିଷୟରେ କହିବାକୁ ଲାଗିଲେ । ମତଲୁବ୍‌ବାବୁ କହିଲେ– 'ଭାଇ, ଏବେ ମୋର ପ୍ରଶ୍ନୋତ୍ତର ବେଳ । ତା'ଛଡ଼ା ମୋର ଜଣେ ବନ୍ଧୁଙ୍କୁ ନେଇ, ବାହାରେ ଖାଇବାକୁ ଯିବି । ଆରେ, ତାଙ୍କୁ ତ ଆପଣ ଜାଣିଥିବେ । ନିର୍ବାଚନରେ ସେ ଆପଣଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲା– ପ୍ରସନ୍ନ ପାଟଶାଣୀ ମ ! ହେଇ ସେଠି ବସିଛି ଦର୍ଶକ ଗ୍ୟାଲେରୀରେ ।'

ଏକଥା ଶୁଣି ସେ ଅଟ୍ଟହାସ୍ୟ କରି କହି ଉଠିଲେ– 'ଆପଣ ପାଗଳ ହେଲେ ମନ୍ତ୍ରୀ ମହାଶୟ ? ଏଇଟା କାହିଁକି ପ୍ରସନ୍ନ ହେବ । ଇଏ ତା'ର ସାନଭାଇ ପ୍ରମୋଦ । ଦି'ଭାଇ ଏକା ରଙ୍ଗର ଏବଂ ଏକାଭଳି ଡେଙ୍ଗା ଡେଙ୍ଗା । ଆପଣ ଭ୍ରମି ଯାଇଚନ୍ତି । ପ୍ରସନ୍ନ ନାଁରେ ପରା ସେଣ୍ଟ୍ରାଲ୍ ମିସା–ୱାରେଣ୍ଟ । ସେତକ ବନ୍ଦୋବସ୍ତ ମୁଁ କରେଇଚି । ରାଜନୀତି କରୁଚି ମ– କଞ୍ଚା ଖିଲାଡ଼ି ହେଇଚିକି ! ପ୍ରସନ୍ନ ଏଇନା କୋଉ ଜେଲ୍‌ରେ ଘଣା ପେଲୁଥିବ । ତା' ନାଁରେ ମିସା ଥିବା ତାଲିକା ମୋ ଫାଇଲ୍‌ରେ ଅଛି । ଦେଖିବେ ଯଦି, ଫାଇଲ୍‌ରୁ ଚିଠିଟା କାଢ଼ି ଦେଖେଇ ଦେବି ।'

ମତଲୁବ୍ ବାବୁ ତଟସ୍ଥ ହୋଇଗଲେ ।

ତାଙ୍କଠୁଁ ଖସି ଆସି ମତେ ପାଖକୁ ଡାକି ଧୀର ସ୍ୱରରେ କହିଲେ– ମୁଁ ଡ୍ରାଇଭର୍‌କୁ କହି ଦଉଚି; ଆପଣମାନେ ପ୍ରସନ୍ନଙ୍କୁ ସାଙ୍ଗରେ ଧରି ତୁରନ୍ତ ମୋ କ୍ୱାର୍ଟର୍‌କୁ ପଳାନ୍ତୁ । ମୁଁ ଏଠିକା କାମ ସାରି ଫେରିଲେ ଯାଇ ସବୁ କଥାବାର୍ତ୍ତା । ମୋଟେ ଡେରି କରନ୍ତୁ ନାହିଁ । ଶୀଘ୍ର ।

ଆମେ ମନ୍ତ୍ରୀ କ୍ୱାର୍ଟର୍‌କୁ ଆସି ପ୍ରସନ୍ନକୁ ଖୁସି ଖବର କି ଖରାପ ଖବର କିଛି ଶୁଣାଇ ପାରିଲୁ ନାହିଁ । ରଘୁ ରାୟ ସାଙ୍ଗରେ ମତଲୁବ୍ ବାବୁଙ୍କ କଥାବାର୍ତ୍ତା ପରେ ସେ ଏଭଳି ସତର୍କ ପଦକ୍ଷେପ ନେବା ଘଟଣାକୁ ଆଡଭୋକେଟ୍ ଗୁରୁ ମହାନ୍ତି ପରିସ୍ଥିତି ଗୋଳମାଳିଆ ବୋଲି କହିଲେ । ପ୍ରସନ୍ନ ରଘୁ ରାୟ ନାଁ ଶୁଣି କହିଲା– ଇସ୍ ! ସେଇଟା ପକ୍କା ଟାଉଟରଟାଏ । ମୋ ନାଁରେ ଏଣୁ ତେଣୁ ଗୁଡ଼ାଏ ଫାନ୍ଦି କରି ସେ କହିଥିବ । ମୋଠୁଁ ବାର ତେରଶହ ଅଧିକ ଭୋଟପାଇ ଜିତିଚି ତ ? ତା'ର ମୋ ଉପରେ ଭାରି କ୍ରୋଧ । ମୁଁ ବାହାରେ ବୁଲୁଚି ଓ ବିଧାନସଭା ଭିତରେ

ଆସି ବସିଚି, ଏକଥା ଶୁଣି ଏଇନା ମୋ ପଛରେ ସେ ଚର ଲଗେଇଦବ । ମତଲୁବ୍ ବାବୁ ଆସନ୍ତୁ; ଘଟଣା କ'ଣ ଜଣାପଡ଼ିଯିବ ।

ଘଟଣା କ'ଣ, ମୁଁ ତା'ର ଟେର୍ ପାଇ ସାରିଥିଲେ ସୁଦ୍ଧା ସେ କଥା ସମସ୍ତଙ୍କୁ କହିବାକୁ ତୁଣ୍ଡ ଖୋଲୁ ନ ଥିଲା କିମ୍ବା ଚୁପ୍‌ଚାପ୍ ବସି ବି ହେଉ ନ ଥିଲା । ଏଣେ ପେଟରେ ଭୋକ ପ୍ରବଳ । ତେଣେ ସମୟ ଅତିକ୍ରାନ୍ତ । ମତଲୁବ୍ ବାବୁ ନ ଆସିଲା ପର୍ଯ୍ୟନ୍ତ କିଛି ନିଷ୍ପତ୍ତି ନେଇ ହେଉ ନାହିଁ । ଘଟଣାଟି ଯେତେବେଳେ ଭିନ୍ନମୋଡ଼ ନେଲାଣି ଖାଇବା ପିଇବା କଥା ଉଠୁଛି ବା କୋଉଠୁ ?

ପ୍ରାୟ ଘଣ୍ଟାଏ ବିଳମ୍ବରେ ମତଲବୁ ବାବୁ ଆସିଲେ । ଆସୁ ଆସୁ ସେ କହି ଉଠିଲେ- 'ଆମେ ଏବେ କ'ଣ କରିବା ? ପ୍ରସନ୍ନ ବାବୁଙ୍କର ପୁଣି ଆତ୍ମଗୋପନ ଦରକାର । ମୋ ମତରେ ଗୋପନ ସ୍ଥାନ କଟକ ଭୁବନେଶ୍ୱରଠୁଁ ଦୂରରେ ହେବା ଉଚିତ । କାରଣ ଏଠି ଜଣାପଡ଼ିଯିବା ସମ୍ଭାବନା ଅଧିକ । ମିଡ଼ିଆଠୁଁ ଦୂରେଇ ରହିବା ଦରକାର । ପ୍ରସନ୍ନ ବାବୁ ତ ଭାଷଣବାଜି ଲୋକ । ପାଟି ଖୋଲିଲେ ବିପଦ । ତାଙ୍କ ଉପରେ ଅଛି ସେଣ୍ଟ୍ରାଲ୍ ମିସା । ରଘୁ ରାୟ ହୋମ୍ ସେକ୍ରେଟାରୀଙ୍କୁ ଏକଥା କହିସାରିବଣି । ମୁଁ ଖୁସିରେ ତାଙ୍କୁ କହିଦେଲି, ପ୍ରସନ୍ନବାବୁଙ୍କ ସହିତ ଆମେ ବାହାରେ ଖାଇବାକୁ ଯାଉଛୁ । ସେ ଯେତେ ବୁଲେଇ ବଙ୍କେଇ କହିଲେ- 'ଇଏ ପ୍ରସନ୍ନ ନୁହେଁ, ତା' ସାନଭାଇ ପ୍ରମୋଦ'- ତାହା ତାଙ୍କ ମଣ୍ଡକୁ ଠିକ୍ ଛୁଇଁଥିବ ।

ଛାଡ଼, ଆମେ ଏବେ କ'ଣ କରିବା ? ବୀଣାଅପା ତ ମହିଳା ହଷ୍ଟେଲ ରଖୁଆଳ । ସେ ଆଶ୍ରୟ ଦେବା ଅସମ୍ଭବ । ଗୁରୁବାବୁ କଟକ ବାସିନ୍ଦା । ତାଙ୍କ ଘର ବି ନିରାପଦ ନୁହେଁ । ସଦାଶିବ ବାବୁ ଆଉ ପ୍ରସନ୍ନବାବୁ ଏକାଠି ରହିଲେ ଚବିଶ ଘଣ୍ଟା ଭିତରେ ସବୁ ଗୋପନୀୟତା ବିପନ୍ନ ହେଇଯିବ ନିଶ୍ଚୟ ।

ଏକଥା ଶୁଣୁ ଶୁଣୁ ସଦାଶିବ ସହ ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ହଠାତ୍ ଗୁରୁବାବୁ କହି ଉଠିଲେ- ମୋ ମତରେ ପ୍ରସନ୍ନ ରତ୍ନାକରଙ୍କ ସହିତ ଢେଙ୍କାନାଳ ଯାଉ । କିନ୍ତୁ ମୋର ଅନୁରୋଧ, ପ୍ରସନ୍ନ ସହିତ ରତ୍ନାକରଙ୍କ ନିରାପତ୍ତା ମତଲୁବ୍ ବାବୁ ନିଅନ୍ତୁ । ସିଏ ସରକାରୀ ଚାକିରିଆ । ଏଇଥିପାଇଁ ତା' ଚାକିରିରେ ଯେମିତି କିଛି ଆଞ୍ଚ ନ ଆସୁ ।

ମତଲୁବ୍ ବାବୁ ଏଥିରେ ରାଜି ହେଲେ ।

ଖିଆପିଆ କଥା ଭୁଲି ଯିବାକୁ ପଡ଼ିଲା ।

ମନ୍ତ୍ରୀଙ୍କ ଗାଡ଼ି ଚାଲିଲା ଢେଙ୍କାନାଳ ଅଭିମୁଖେ ।

ଗାଡ଼ିରେ ପ୍ରସନ୍ନ ଓ ମୁଁ ।

ଡ୍ରାଇଭର୍‌କୁ ନିର୍ଦ୍ଦେଶ– ଯାହା ହେଲେ ବି ବାଟରେ ଗାଡ଼ି କୌଣସି ଜାଗାରେ ଅଟକିବ ନାହିଁ । ଢେଙ୍କାନାଳରେ ଆମକୁ ଛାଡ଼ି ସାରିଲା ପରେ ବାଟରେ ଅଟକି ସେ କୋଉ ଢାବାରେ ଖାଇପାରିବ । ପ୍ରସନ୍ନକୁ କୁହାଗଲା, କାଚବନ୍ଦ ଗାଡ଼ିରେ ଯାଉଥିଲେ ବି ବାଟରେ ନୀରବତା ରକ୍ଷା କରିବ । ଦେଖ, ବର୍ତ୍ତମାନ ପାଇଁ ସଙ୍କଟରେ ମତଲୁବ୍ ବାବୁ, ରତ୍ନାକର ଏବଂ ଶେଷରେ ତମେ । ତେଣୁ ବୁଝି ଛୁସିଆର୍ ।

ଏହାପରେ ସବୁ କଥା ଠିକ୍‌ଠାକ୍ ଚାଲିଲା ।

ଆମେ ଢେଙ୍କାନାଳରେ ପହଞ୍ଚିଲୁ ଅପରାହ୍ନ ଚାରିଟା ବେଳକୁ । ଡ୍ରାଇଭର୍ ସାଙ୍ଗେ ସାଙ୍ଗେ ଫେରିଗଲା । ମୋ ସ୍ତ୍ରୀ ଲିଲି ବାହାଘର ବେଳର ଫଟୋରୁ ପ୍ରସନ୍ନକୁ ଜାଣିଥିଲେ । ତେଣୁ ପରିଚୟ ପାଇଲା ମାତ୍ରେ ଅତିଥି ଚର୍ଚ୍ଚା ସାଙ୍ଗେ ସାଙ୍ଗେ ଆରମ୍ଭ ହୋଇଗଲା । ଦାଣ୍ଡଘରେ ପ୍ରସନ୍ନର ଖଟିଆ ପଡ଼ିଲା । ମୋ ଘରକୁ ପାରିବାରିକ ସଂପର୍କ ଯୋଡ଼ି ଆସୁଥିଲେ ଆଡଭୋକେଟ୍ ରବି ପଟ୍ଟନାୟକ ଓ ତାଙ୍କ ସଂପର୍କୀୟ ଜନନେତା ପ୍ରଫୁଲ୍ଲ କୁମାର ଭଞ୍ଜ । ଏମାନଙ୍କୁ ମୋ ଘରେ ମେଳ କରିବାର ସୂତ୍ରଧର ଥିଲା ମୋର ସହପାଠୀ ବନ୍ଧୁ ଜୟକୃଷ୍ଣ ପଟ୍ଟନାୟକ । ସେ ପ୍ରସନ୍ନ ସହିତ ପୂର୍ବରୁ ପରିଚିତ ଥିଲା । ସେହି ସୂତ୍ରରେ ସେ ସମସ୍ତଙ୍କୁ ଚିହ୍ନେଇ ଦେଲା, ଇଏ ରତ୍ନାକରର କଲମ ବନ୍ଧୁ । କ'ଣ ଗୋଟେ 'ଗାଈ–ଖୋଜା' କାମରେ, ମାନେ 'ଗବେଷଣା' କାମରେ ସିଏ ଏଠିକି ବିଜେ ହେଇଛନ୍ତି । ଭାଇ, ମତେ ତମ ଭାଷା ଠିକ୍‌ଠାକ୍ ଜଣା ନାଇଁ । ଶୁଦ୍ଧ ଅଶୁଦ୍ଧ ପୂରାଇ ବୁଝିବ ।

ଜୟୀ ଘଟଣାକୁ ସ୍ୱାଭାବିକ କରିଦେଲା ।

ସମସ୍ତେ ଜାଣିଲେ ସିଏ ମୋର ବନ୍ଧୁ ପ୍ରସନ୍ନ ।

ତା'ପରେ ସେମାନଙ୍କ ସାଙ୍ଗରେ ତାସ ଖେଳ– ଖୁସିଗପ ଚାଲିଲା । ମଜା ମଜଲିସ୍‌ରେ ତା'ର ସମୟ କଟିଲା । ସେମାନେ ନ ଥିଲାବେଳେ ସେ ଅଣ୍ଡର୍‌ଗ୍ରାଉଣ୍ଡରେ ଥିଲାବେଳର କାହାଣୀ ଗପେ ମୋ ସ୍ତ୍ରୀ ଓ ତାଙ୍କ ସାନଭଉଣୀଙ୍କ ଆଗରେ । ମୁଁ ଦୂରରେ ଥାଇ ପଢ଼ା ପ୍ରସ୍ତୁତ କରୁଥିଲାବେଳେ ତା' କଥା ଶୁଣେ ।

...'ରଣପୁରକୁ ଲାଗି ଘନ ଜଙ୍ଗଲ । ତା'ରି ଭିତରେ ଆଦିବାସୀ ବନବାସୀଙ୍କ ବସ୍ତି । ବର୍ଷା ପାଣିରେ ତିନ୍ତି ଭୀଷଣ ଜର–କାଶ । ଚାଲି ଚାଲି ଏଣେ କ୍ଳାନ୍ତ ।

ଗୋଟିଏ ଜାଗାରେ ବସି ପଡୁ ପଡୁ ମୂର୍ଚ୍ଛା ହେଇଯାଇଥିଲି । ଚେତା ଆସିଲାବେଳକୁ ଦେଖେ ତ ମୁଁ ଜଣକ ଘରେ ଆଶ୍ରା ପାଇଛି । ସେମାନଙ୍କ ସେବାଯତ୍ନ ଅଦ୍ଭୁତ । ସାତ ଆଠ ଦିନ ଧରି ମୁଁ ବେମାର । ଜଡ଼ିବୁଟି ଯାହା ଆଣିଦେଲେ ବିଶ୍ୱାସରେ ଖାଇଲି । କ୍ରମେ କ୍ରମେ ସୁସ୍ଥ ହେଲି । ସେମାନଙ୍କ ସାଙ୍ଗରେ ମିଶିଲି, ହସିଲି, ରସିଲି । ଦିନ ମାସ ତାରିଖ ଭୁଲିଗଲି । ହିସାବ କେବଳ ସକାଳ-ସଂଜ-ରାତି । ଦିନେ ତାଙ୍କର ଭୋଜି ମଉଜରେ ମତେ ମୂଷା ତରକାରି ଖାଇବାକୁ ପଡ଼ିଲା । ଅନିଚ୍ଛା ଓ ବିକାର ସତ୍ତ୍ୱେ ଖାଇଲି । ନ ଖାଇଲେ ମୁଁ ତାଙ୍କ ଭଳିଆ ମଣିଷ ନୁହେଁ ବୋଲି ଗଣା ହେବି ।'

ତେଣୁ କ୍ରମେ ସେମାନଙ୍କର ହେଲି ।

ସେମାନେ ଜଣକୁ ମୋର ତୀର୍ଲା କରିବାକୁ ବସିଲେ ।

ଏଣିକି ସବୁକଥା କ୍ରମେ ଅସହ୍ୟ ହେବାକୁ ଲାଗିଲା । ମୋ ଘରସଂସାର, ମୋ ଆପଣାର ଦୁନିଆ ଭାରି ମନେପଡ଼ିଲା । ଏହା ଭିତରେ କେତେ ବର୍ଷ ମାସ ଦିନ ବିତିଗଲାଣି, ଜାଣିବାକୁ ଇଚ୍ଛା ହେଲା । ଆତ୍ମଗୋପନ ମୋର ଆତ୍ମସତ୍ତାକୁ ହଜେଇ ଦେବାକୁ ବସିଲା । କ୍ରମେ ମୁଁ ଛଟପଟ ହେବାକୁ ଲାଗିଲି । ସେଠୁ ଖସିବାର ରାହା ଖୋଜିଲି । ମନରେ ଭୟ; କାଳେ ଖସି ପଳାଇଲା ବେଳେ ଧରା ପଡ଼ିଯିବି । ଧରା ପଡ଼ିଲେ ତ ତୀର ମାରି ନାଛି ଦେବେ । ଏଇ ଚିନ୍ତାରେ ଅତିଷ୍ଠ ହେବାକୁ ଲାଗିଲି । ରାତିରେ ନିଦ ହେଉ ନ ଥାଏ । ଦିନେ ରାତିରେ ମତେ ବୋଧେ କାଳିସୀ ଲାଗିଲା । ଅଧରାତି । ହୁଦସ୍ତ ଉଠି ପୂର୍ବମୁହାଁ ହେଇ ଧପାଲିଲି । କେତେ ଜୋରରେ ଚାଲୁଥିଲି ଜାଣେନା । ସିନ୍ଦୁରା ଫାଟିଲାବେଳକୁ ରାସ୍ତାଘାଟ ଗାଁଗଣ୍ଡା ମୋର ପରିଚିତ ମନେହେଲା । ଏଥର ପଛକୁ ଫେରିଚାହିଁଲି । ଆଶ୍ୱସ୍ତ ହେଲି- ନା, ଆଉ କେହି ମୋ ପଛରେ ଧନୁ ତୀର ଧରି ଧପାଲି ନାହାନ୍ତି ।'

ପ୍ରସନ୍ନ କଥାରେ ମୁଁ ଆସି ବିରାମ ଦିଏ ।

ଦୁହେଁ ରାସ୍ତାରେ ଚାଲବୁଲ ପାଇଁ ବାହାରି ପଡୁ ।

ଏସବୁ ରୁଟିନ୍ ଜୀବନର କଥା । ମଝିରେ ମଝିରେ ତା' ସାନଭାଇ ପ୍ରମୋଦ ଆସେ । ମୁଁ ଘରେ ଥାଏ କି ନ ଥାଏ ପ୍ରମୋଦ ଆସିଥିବାର ବାସ୍ନା ପାଇଯାଏ ଘରେ ପଶୁ ପଶୁ । ସେ ଆସିଲାବେଳେ ଚିଲିକା କୂଳର ଶୁଖୁଆ, ନ ହେଲେ ବଡ଼ ଚିଙ୍ଗୁଡ଼ି ଧରି ଆସିଥାଏ । ଘରର ଖବର ଅନ୍ତର ଓ ପ୍ରସନ୍ନର ଭଲମନ୍ଦ କଥାବାର୍ତ୍ତା

ହେଇ ଅଳ୍ପ ସମୟ ରହି ସେ ଚାଲିଯାଏ । ତେଣେ ବୀଣାଅପା, ଗୁରୁବାବୁ, ସଦାଶିବ- ଏପରିକି ମତଲୁବ୍ ବାବୁ ପ୍ରସନ୍ନ ନାଁ ନ ଧରି 'ଭାଲୁ' ବୋଲି କୋଡ୍ ନାଁରେ ସମ୍ବାଦ ଦିଆନିଆ କରୁଥିଲେ । ସେତେବେଳେ ଫୋନ୍‌ର ବହୁଳ ବ୍ୟବହାର ହେଇ ନ ଥିଲା ।

ମତଲୁବ୍ ବାବୁ କଲେଜକୁ ଫୋନ୍ କରି ମୋ ସହିତ ଆଳାପ କରୁଥିଲେ । ଢେଙ୍କାନାଳ କଲେଜର ତତ୍କାଳୀନ ପ୍ରିନ୍‌ସିପାଲ ଥିଲେ ଗୁରୁପଦ ପରିଡ଼ା । ସେ କାହାରିକୁ ଅଧକ୍ଷଙ୍କ ଫୋନ୍‌ରେ କଥା ହେବାକୁ ଦିଅନ୍ତି ନାହିଁ । ସେଥିପାଇଁ ମତଲୁବ୍ ବାବୁଙ୍କର ଥରେ ତାଙ୍କ ସହିତ ଝଗଡ଼ା ହେଲା । ସେଦିନ ସେ ଗୁରୁପଦ ପରିଡ଼ାଙ୍କୁ ଖୁବ୍ କଡ଼ାସ୍ୱରରେ କହିଲେ- 'ଶୁଣନ୍ତୁ, ଫୋନ୍ କାଟି ଦିଅନ୍ତୁ ନାହିଁ । ଏ ଫୋନ୍ ଆପଣଙ୍କ ବ୍ୟକ୍ତିଗତ ଫୋନ୍ ନୁହେଁ । ଇଏ ସରକାରୀ ଫୋନ୍ । ଚଇନି ବାବୁ ଜଣେ ସରକାରୀ କର୍ମଚାରୀ ସେଇ କଲେଜର । ତାଙ୍କ ସହିତ ଯୋଗାଯୋଗ କରାଇବା ଆପଣଙ୍କ ଦାୟିତ୍ୱ । ମୁଁ ଶିକ୍ଷାମନ୍ତ୍ରୀ କହୁଚି-

ବାସ୍, ତା'ପରେ ଆଉ କିଛି ଅସୁବିଧା ହେଇନି ।

ଫୋନ୍‌ରେ 'ଭାଲୁ' ସମ୍ବାଦ ଦିଆନିଆ ଚାଲିଲା ।

ଏପରିକି ଟୁର୍‌ରେ ଅନୁଗୁଳ ବା ସମ୍ବଲପୁର ଯାଉଥିଲେ, ଢେଙ୍କାନାଳ ଆଇ.ବି. ରେ କିଛି ସମୟ କଟାଇ 'ଭାଲୁ' ଉତ୍ପାତ କରୁଛି କି ନାଇଁ ବୁଝୁଥିଲେ ସେ । ଆଉ ଜଣେ ସୂତ୍ରଧର ଥିଲେ ବଡ଼ମ୍ବାର ଭାଗୀରଥି ସାହୁ । ସେ ପ୍ରସନ୍ନର ଗୁଣଗ୍ରାହୀ । ପ୍ରାୟ ପ୍ରତିଦିନ ସେ ଆସି ହାଜର ହଉଥିଲେ । ଏଣେ କଲେଜର ସାହିତ୍ୟପ୍ରେମୀ କିଛି ଛାତ୍ର ବରାବର ଯା'ଆସ କରୁଥିଲେ ମୋ ଘରକୁ । ସେମାନଙ୍କ ଭିତରେ ପ୍ରକାଶ କୁମାର ପରିଡ଼ା ଏବଂ କୁଳମଣି ଜେନା ବେଶି ଅନ୍ତରଙ୍ଗ ଥିଲେ । କାରଣ ଏମାନେ ଲେଖାଲେଖି କରୁଥିଲେ । କୁଳମଣି ଜେନାର ପ୍ରଗତିବାଦୀ ଚିନ୍ତାଚେତନାରେ ପତିଆରା ବେଶି ଥିଲା । ନାନା ସାହିତ୍ୟ ଆସରରୁ ସେ ପ୍ରସନ୍ନକୁ ଆଗରୁ ଜାଣିଥିଲା । ତେଣୁ ପ୍ରଥମରୁ ତାକୁ ସତର୍କ କରିଦେଲି । – ଶୁଣ, ଏଠିକି ଆସି ପ୍ରସନ୍ନ ସାଙ୍ଗରେ ଆଳାପ କର; କିଛି ବାଧା ନାହିଁ । ମାତ୍ର ଏଠି ପ୍ରସନ୍ନ ଅଛି, ଏକଥା ଆଉ ଯେମିତି ତମ ହଷ୍ଟେଲରେ କେହି ନ ଜାଣନ୍ତି, ମନେରଖ ।

ସେ ବିଶ୍ୱସନୀୟତା ପାଇଁ ସହମତି ଜଣାଇଲା ।

ମୁଁ ଘଟଣାକ୍ରମର ପ୍ରଥମ ମୋଡ଼ରେ କହିଥିଲି ପଦ୍ମମଣିଷ ଡଃ ମହତାବଙ୍କ କଥା । ତାଙ୍କ ଚିଠି ଖଣ୍ଡିକ ପାଇଁ ପ୍ରତି ରାତିରେ ସେତେବେଳକୁ ଦୁଇଜଣ ସିପାହି ଆସି ଡିଉଟି କରୁଥିଲେ ମୋ ଘର ବାରଣ୍ଡାରେ । ଏଣେ ପ୍ରସନ୍ନ ଆସି ଘରେ ଅତିଥି । ମନରେ ଯେତେ ଦମ୍ଭ ଧରିଲେ ବି ଛାତିକି ଛନକା ଛୁଉଁଥିଲା । ପ୍ରାୟ ଦେଢ଼ମାସ ଏମିତିରେ କଟିଗଲା । କିଛି ଦୁର୍ଘଟଣା ଘଟିଲା ନାହିଁ । କ'ଣ ଭାବି ପୋଲିସ୍‌ମାନେ ଆଉ ରେଗୁଲାର ଡିଉଟିକୁ ଆସିଲେ ନାହିଁ । ପାଞ୍ଚ ସାତ ଦିନରେ ଥରେ ଆସି ବାରଣ୍ଡାରେ ଟିକେ ବସି ପଳେଇ ଯାଉଥିଲେ ।

ପ୍ରସନ୍ନର ବି ଟିକେ ସାହସ ବଢ଼ିଗଲା ।

ସେ ଏକା ଏକା ବୁଲି ବାହାରି ଯାଉଥିଲା ।

ସେତେବେଳକୁ ତା'ର ସ୍ୱରୂପରେ କିଛିଟା ପରିବର୍ତ୍ତନ ଆସିସାରିଥିଲା । ସେ ଦାଢ଼ି ନିଶ କାଟୁ ନ ଥିଲା । ପିନ୍ଧୁଥିଲା ଲମ୍ବା ପଞ୍ଜାବୀ ଓ ଟ୍ରାଉଜର । ବେଳେବେଳେ ପାୱାର ନ ଥିବା ଚଷମା ପିନ୍ଧି ବାହାରୁଥିଲା । ଏଭଳି ବେଶରେ ସେ ବୁଲୁଥିବାବେଳେ ଥରେ ତାକୁ କୁଳମଣି ଦେଖି ମଧ୍ୟ ଚିହ୍ନିପାରି ନ ଥିଲା । କୁଳମଣିର ଏହା ପରେ କୌତୁକ ବଢ଼ିଲା । ସେ ପ୍ରସନ୍ନ ଓ ଭାଗୀରଥିଙ୍କୁ ଗୋଟାଏ ରାତି ପାଇଁ ତା' ହଷ୍ଟେଲକୁ ନେବାପାଇଁ ବିକଳ ହେଲା । ସେ ଜାଣେ, ଏକଥାରେ ମୁଁ ରାଜି ହେବି ନାହିଁ । ତେଣୁ ସେ ପ୍ରସନ୍ନକୁ ଟିହାଇଲା । ପ୍ରସନ୍ନର ପାଟି ଖଲଖଲ ହେଉଥିଲା । ସେ ଯିବାକୁ ଜିଦ୍ ଧଇଲା । କହିଲା– ଦେଖ, ଏତେ ଦିନ ଧରି ଗୋପନୀୟତା ରଖିଚି କି ନାଇଁ ? ଇଏ ସେମିତି ରହିବ । ଗୋଟାଏ ରାତି କଥା । ତୁ ବ୍ୟସ୍ତ ହଅନା । ମୁଁ ସମ୍ଭାଳି ନେବି । ଯାଉଚି–

ପ୍ରସନ୍ନ ଓ ଭାଗୀରଥି କୁଳମଣି ସାଙ୍ଗରେ ହଷ୍ଟେଲକୁ ଗଲେ । ରାତିସାରା ମୋ ମୁଣ୍ଡରେ ଚିନ୍ତା । ସକାଳୁ କଲେଜ ପରୀକ୍ଷା । ପ୍ରସନ୍ନ ଫେରିବା ପୂର୍ବରୁ ମୁଁ ଯାଇ ପରୀକ୍ଷା ଡିଉଟି କଲି । ସମୟ ୯ଟା କି ସାଢ଼େ ନଅଟା ହେବ । ପ୍ରଥମ ସିଟିଂ ପରେ କମନ୍‌ରୁମ୍ ଆଡ଼କୁ ଫେରୁଚି– ଦେଖା ହେଇଗଲେ ବିଜୟା ମାଡାମ୍ । ସେ ଫିଜିକ୍ସ ଅଧ୍ୟାପିକା ଓ ଜିଲ୍ଲାପାଳ ସୁଧାଂଶୁ ମିଶ୍ରଙ୍କ ପତ୍ନୀ । ସେ ମତେ ବାଟରେ ଅଟକାଇ କହିଲେ– ଚଇନିବାବୁ ! ଗୋଟେ ଅର୍‌ଜେଣ୍ଟ କଥା । କଲେଜକୁ ଆସୁ ଆସୁ ଆପଣଙ୍କୁ ଖୋଜି ହଉଥିଲି । ଆପଣଙ୍କର ସେ ବନ୍ଧୁ ପ୍ରସନ୍ନଙ୍କ ଅସଲ ପରିଚୟ କ'ଣ ? ଦେଖନ୍ତୁ, ମୋର ସେଥିରୁ କିଛି ମିଳିବାର ନାହିଁ । ସେ କ'ଣ କାଲି ରାତିରେ

ହଷ୍ଟେଲରେ ରହି ଗୋଟେ ଝଡ଼ ସୃଷ୍ଟି କରିଚନ୍ତି । ଏସ୍.ପି. ସୁଧାଂଶୁବାବୁଙ୍କୁ ପଚାରୁଥିଲେ- ଆପଣଙ୍କ ଘର ତଲାସି ନେବା ପାଇଁ । ମୁଁ ତାଙ୍କୁ କହି ଦେଇଚି, ହଁ, ତାଙ୍କର ଜଣେ ସାହିତ୍ୟିକ ବନ୍ଧୁ ଆସି ତାଙ୍କ ଘରେ ଦୁଇ ଚାରି ଦିନ ରହିଥିଲେ । ମୁଁ ଯେତିକି ଜାଣେ, ସିଏ ଏଠୁ ଚାଲିଗଲେଣି । ତେବେ ହଷ୍ଟେଲ କଥା ସୁପରିଟେଣ୍ଡେଣ୍ଟଙ୍କୁ ଯାଇ ପଚାରି ବୁଝନ୍ତୁ ।

ଶୁଣନ୍ତୁ, ସେ ପ୍ରସନ୍ନ ଯିଏ ହୁଅନ୍ତୁ, ଆପଣ ତାଙ୍କୁ ଘରୁ ତୁରନ୍ତ ବିଦା କରନ୍ତୁ । ଇଏ ଇମରଜେନ୍‌ସି ସମୟ । ତୁଚ୍ଛାଟାରେ ଗୋଟାଏ ପ୍ରବଲେମ୍ ମୁଣ୍ଡ ଟେକିବ । ଆପଣ ଜଣେ ଭଦ୍ରଲୋକ । ବିନା କାରଣରେ ହଇରାଣ ହେବେ । ଯାଆନ୍ତୁ–

ଏକଥା ଶୁଣି ମୋ ଫକାସି ଉଡ଼ିଗଲା । ହଷ୍ଟେଲ ଗୁଡ଼ାକରେ ଯେ ପୋଲିସ୍‌ର ଚର ଥାଆନ୍ତି ମତେ ତାହା ଜଣା ନ ଥିଲା । ମୁଁ ଘରକୁ ନ ଯାଇ ସିଧା ଚାଲିଲି ସଦର ଥାନାକୁ । ଏ ଥାନାରେ ଥାନା ଅଧିକାରୀ ଥିଲେ ମୋର ଜଣେ ପୁରୁଣା ଛାତ୍ର ପଟେଲ । ସେ ମତେ ଭାରି ସମ୍ମାନ କରେ । ସେତେବେଳେ ସେ ରାସ୍ତାରେ ଏତେ ବସ୍ ଯା'ଆସ କରୁ ନ ଥିଲା । କଟକ ଫେରିବାକୁ ଥରେ ଥରେ ବସ୍ ନ ମିଳିଲେ ସେ ଟ୍ରକକୁ ଅଟକାଇ ଆମକୁ ଫେରିବାରେ ସାହାଯ୍ୟ କରୁଥିଲା । ମୁଁ ଥାନାରେ ପହଞ୍ଚି ଦେଖିଲି ପଟେଲ ଅଛି । ତାକୁ ଧୀର ସ୍ୱରରେ କହିଲି– 'ପଟେଲ ! ତମର ସାହାଯ୍ୟ ଏବେ ନିହାତି ଦରକାର ।'

ସେ ତା'ର ପୋଲିସିଆ ସ୍ୱରରେ କହି ଉଠିଲା, କ'ଣ ଆଜ୍ଞା, ଅର୍‌ଜେଣ୍ଟ କଟକ ଯାତ୍ରା ? ଯୋଗାଡ଼ ହେଇଯିବ ସାର୍ ! ଏବେ ଯିବେ ତ ?

ମୋର ସନ୍ଦେହ ହେଲା । ଇଏ ସବୁ କଥା ଜାଣିଲା ଭଳି କେମିତି କହିଯାଉଚି ! ପଟେଲ ମୋ ମୁହଁର ଗମ୍ଭୀରତାକୁ ଲକ୍ଷ୍ୟକରି ହସି ହସି କହିଲା, ଆଜ୍ଞା, ଆପଣ ଭାବୁଥିବେ କଟକ ଯିବା କଥା ମୁଁ କେମିତି ଜାଣିଲି । ଆପଣ ତ ଏଇ କଥା ଛଡ଼ା ଅନ୍ୟ କିଛି ସାହାଯ୍ୟ ପାଇଁ କେବେ କହି ନାହାନ୍ତି । ତେଣୁ ମୁଁ ଭାବିଲି–

ଠିକ୍ ଭାବିଚ । ତେବେ ମୁଁ ଆଜି ଯାଉ ନାହିଁ; ମୋର ଜଣେ ବନ୍ଧୁ ଯିବ; ଏଇ ସାଙ୍ଗେ ସାଙ୍ଗେ । ଭାରି ଜରୁରୀ କାମ । ଶୀଘ୍ର ପହଞ୍ଚିବାକୁ ହେବ । ଟିକେ ବନ୍ଦୋବସ୍ତ କର ।

ପଟେଲ କହିଲା, ଆପଣ ତାଙ୍କୁ ଏଠିକି ଡାକି ଆଣନ୍ତୁ । ମୁଁ ଗାଡ଼ି ଅଟକାଇ ତାଙ୍କ ଯିବା ବନ୍ଦୋବସ୍ତ କରୁଚି ।

ମୁଁ ଘରକୁ ଯାଇ ଦେଖେ ତ ପ୍ରସନ୍ନ ଓ ଭାଗୀରଥି ଜଳଖିଆ ଖାଇ ମୁହଁ ଧୋଉଛନ୍ତି । ମୁଁ ପ୍ରସନ୍ନକୁ କହିଲି, ଚଞ୍ଚଳ ବାହାରି ପଡ଼ । ମୁଁ କଟକ ଯିବାପାଇଁ ଗାଡ଼ି ଅଟକାଇ ଆସିଚି । କଟକରୁ ବାହାରକୁ କୁଆଡ଼େ ଯିବୁ ବାଟରେ ସ୍ଥିର କରିବୁ । ସାଙ୍ଗରେ ଭାଗୀରଥି ଯାଉ । ଗୋଟାଏ ରାତି ଭିତରେ ହଷ୍ଟେଲରେ କିଭଳି ଉତ୍ପାତ ହେଲ ଯେ, ଏସ୍.ପି. ଠାରୁ ଆରମ୍ଭ କରି ସମସ୍ତେ ଜାଣିଗଲେ । ହଉ, ଏଠି ମୋର କ'ଣ ହେଉଛି ସେକଥା ପଛେ ଦେଖିବି । ତମେ ଆଗ ଚାଲିଲ- ନିରାପଦ ଦୂରତାକୁ ।

ଆମେ ଥାନା ପାଖରେ ପହଞ୍ଚିଲା ବେଳକୁ ପଟେଲ ଦୁଇଟା ଟ୍ରକକୁ ଅଟକାଇ ସେମାନଙ୍କ କାଗଜପତ୍ର ତନଖି କରୁଥିଲା । ତନଖିର ମୂଳ ଉଦ୍ଦେଶ୍ୟ ହେଲା, କିଏ କଟକ ଯାଉଚି ପଚାରି ବୁଝିବା । ବୟସ୍କ ପଞ୍ଜାବୀ ଡ୍ରାଇଭର୍ ଜଣକ କଟକ ଯାଇଥିବା ଜାଣି ତାକୁ କହିଲା- ଶୁଣ, ତମ ଗାଡ଼ିରେ ଆମର ଜଣେ ବଡ଼ ଅଫିସର୍ କଟକ ଯିବେ । ବାଟରେ କୋଉଠି ଅଟକିବୁନି, ଦାରୁପାନି ବନ୍ଦ୍ । ମୁଁ ଫୋନ୍ କରୁଚି ଚୌଦ୍ୱାର ଥାନାକୁ । ସେ ବି ଅଟକାଇବେନି । ଇଏ ବାବୁଙ୍କ ପି.ଏ. । ଦି'ଜଣ ଯିବେ । ଶୀଘ୍ର ନେଇକରି ଯା' ।

ସେମାନେ ଗାଡ଼ିରେ ବସିଲେ ।

ଗାଡ଼ି ଛାଡ଼ିଲା ।

ପଟେଲ ମତେ କହିଲା, ଆପଣ ଏଥର ଯାଆନ୍ତୁ ସାର୍ । ସେମାନେ ଠିକ୍ ସମୟରେ କଟକରେ ପହଞ୍ଚି ଯିବେ ।

ମୋ ଛାତିରେ ଜୀବନ ପଶିଲା । ମୁଁ ଘରକୁ ଫେରି ଜଳଖିଆ ଖାଇଲି । ତଥାପି ମନରେ ଆଶଙ୍କା- ପ୍ରସନ୍ନ ବାଟରେ କୋଉଠି ଧରାପଡ଼ି ଯିବନି ତି ! ଧରାପଡ଼ିଲେ ଯଦି ମୋ ଘର କଥା ଉଠେ-

ସେଦିନ ସନ୍ଧ୍ୟାରେ ବସ୍‌ଷ୍ଟାଣ୍ଡ ପାଖରେ ଦେଖାହେଲା ପଟେଲ ।

ହଠାତ୍ ରାସ୍ତାର ଗୋଟାଏ ପଟକୁ ଡାକିନେଇ ଧୀର କଣ୍ଠରେ ପଚାରିଲା- ସାର୍ ! ସିଏ ଯିଏ ଆପଣଙ୍କ ଘରୁ ଗଲେ, ତାଙ୍କ ପଛରେ ଆମ ଏସ୍.ପି. ସାହେବ କାହିଁକି ଟିଙ୍କ ଭଳି ଲାଗିଯାଇଛନ୍ତି । ସେମାନେ ଯିବାର ପ୍ରାୟ ଦେଢ଼ଘଣ୍ଟା ପରେ ସାହେବ ଆସି ଥାନାରେ ହାଜର । ସେ ମତେ ଆପଣଙ୍କ ଘରକୁ ଯାଇ ବୁଆ

ଲୋକ କିଏ ଅଛନ୍ତି ଦେଖି ଆସିବାକୁ ପଠାଉଥିଲେ । ମାଡାମ୍ କଲେକ୍ଟର କୁଆଡ଼େ ତାଙ୍କୁ କହିଥିଲେ, ଆପଣଙ୍କ ସାହିତ୍ୟିକ ସାଙ୍ଗ କିଏ ଜଣେ ଆସିଥିଲେ, ସିଏ ଚାଲିଗଲେଣି ।

ଆଜ୍ଞା, ସତ କହିବାକୁ ଗଲେ ମୁଁ ଆପଣଙ୍କ ସାଙ୍ଗ ବିଷୟରେ କିଛି ଜାଣି ନ ଥିଲି । ମୁଁ ତତ୍‌କ୍ଷଣାତ୍ କହି ପକାଇଲି– ହଁ ସାର୍, ମୁଁ ତାଙ୍କୁ ପରା ଆଜି ଗାଡ଼ିରେ ବସାଇ କଟକ ବିଦା କରିଚି । ମାଡାମ୍ ସତ କହିଛନ୍ତି । ତାଙ୍କ ଘରେ ତାଙ୍କ ପରିବାର ଛଡ଼ା ଆଉ କେହି ନାହାନ୍ତି । ତୁଛାଟାକୁ କାହିଁକି ଯିବି ତାଙ୍କ ଘରକୁ ।

ଏସ.ପି, ସାହେବଙ୍କ ବିଚକ୍ଷଣ ବୁଦ୍ଧି । ସାଙ୍ଗେ ସାଙ୍ଗେ ସେ ମତେ ପଚାରିଲେ– ତମେ ପଠେଇଚ ! କେତେବେଳେ– କେତେ ନମ୍ବର ଗାଡ଼ିରେ ?

ମୁଁ ଗାଡ଼ି ନମ୍ବର ଟିପି ରଖିଥିଲି । ଆପଣଙ୍କ କାମ; କିଛି ଅସୁବିଧା ନ ହଉ, ସେଇଥିପାଇଁ । ଚୌଦ୍ୱାରକୁ ଛାଡ଼ିଦବା ପାଇଁ କହିଥିଲି । ଗାଡ଼ି ନମ୍ବରଟା ମୋଠୁ ପାଇ ସେ ସାଙ୍ଗେ ସାଙ୍ଗେ ଚୌଦ୍ୱାର ଥାନାକୁ କଲ୍ କଲେ । ସେଠୁ ଖବର ମିଳିଲା, ଅଳ୍ପ ସମୟ ଆଗରୁ ସେ ଗାଡ଼ି ପାସ୍ କରି ଗଲାଣି । ତା'ପରେ ସେ କଟକ ଏସ୍.ପି.ଙ୍କୁ ଯୋଗାଯୋଗ କରି ଓ.ଏମ.ପି. ଛକ ଘେରାବନ୍ଦୀ କରାଇଦେଲେ । ସେ ଛକ ପୋଲିସମୟ ହୋଇଗଲା । ଏଇ ପଞ୍ଜାବୀ ଡ୍ରାଇଭର୍ ଗାଡ଼ିକୁ ଖୋଜା ଚାଲିଲା ।

ଏସ୍.ପି. ସାହେବ ଏଇ ଥାନାରୁ ସବୁ କଣ୍ଟ୍ରୋଲ କରୁଥିଲେ ।

ଶେଷରେ ଫୋନ୍ ଥୋଇଦେଲେ ବିରକ୍ତ ହୋଇ ।

କହି ଉଠିଲେ– ଭାରି ଲକୀ ପଡ଼ିଲା ସେ । ଭିଡ଼ରେ ପୋଲିସ୍‌ଙ୍କୁ ଦେଖି ଆଗରୁ ଓହ୍ଲାଇ ପଡ଼ି ଚମ୍ପଟ । ପୋଲିସ୍ ଗାଡ଼ିବାଲାଠୁଁ ସବୁ କଥା ଜାଣିଲା; ଫଲୋ କଲା । କିନ୍ତୁ ତାଙ୍କ ପାଖରେ ପହଞ୍ଚିଲା ପୂର୍ବରୁ ଗୋଟାଏ ବେଗଗାମୀ ଚଳନ୍ତା ଟ୍ରେନ୍‌ରେ ବସି ସେମାନେ ଛୁ...

।। ତେଇଶି ।।

# ଜୀବନର ନୂଆ ରାଗିଣୀ

ସମୟ ପିଠିରେ ଇତିହାସ ବୁହା ହେଇ ଚାଲେ ।

ଆଜିର ଜୀବନ୍ତ ଘଟଣା ସ୍ରୋତ କାଲିକି ବିସ୍ମରଣ ହୋଇଯାଏ । ଇତିହାସ ପାଲଟିଯାଏ । ସମସ୍ୟା-ବିକଳ ଆଜିର ମଣିଷ ଆସନ୍ତାକାଲିକି ତା'ର କିଛି ହେଇ ନ ଥିଲା ଭଳି ଝାଡ଼ିଝୁଡ଼ି ହେଇଚାଲେ । ସେମିତି ହେଇଯାଇଥିଲା ପ୍ରସନ୍ନ । ଚଳନ୍ତା ଟ୍ରେନ୍ ଧରିଯାଇ ହିମାଳୟ ପାଦଦେଶରେ ମହେଶ ଯୋଗୀଙ୍କ ଆଶ୍ରମରେ ଆତ୍ମଗୋପନ କରିବା ତା' ପାଇଁ ଜମା ବିଚିତ୍ର କଥା ମନେହେଇ ନ ଥିଲା । ଗଣ ମଣିଷଟିରୁ ଜଣମଣିଷ ପାଲଟି ସନ୍ନ୍ୟାସୀ ଭେକ ଧରିବା ପରିସ୍ଥିତିର ତାଡ଼ନା ଭଳି ମନେ ହେଇଥିଲା । କିନ୍ତୁ ଆଶ୍ଚର୍ଯ୍ୟ କଥା- ଜରୁରୀ ପରିସ୍ଥିତିରେ ସେ କଂଗ୍ରେସ ଦଳର ଶିକାର ହୋଇଥିଲା । ମାତ୍ର ପରବର୍ତ୍ତୀ କାଳରେ ସେଇ କଂଗ୍ରେସ ଦଳର ପ୍ରଚାରର ଅନ୍ୟତମ କର୍ଣ୍ଣଧାର ହେଇ ସେ କଟକ ସହରର ରାସ୍ତାରେ ଜାନକୀବାବୁଙ୍କ ପଛରେ ଭୋଟ ଭିକାରୀ ହେଇ ବୁଲୁଥିବା ଦେଖି ମୁଁ ଭାବିଥିଲି, ଇଏ ସେ ପ୍ରସନ୍ନ ନୁହଁ । କ'ଣ ପାଇଁ ତେବେ ତା'ର ଏଭଳି ପରିବର୍ତ୍ତନ ହେଲା !

ଛାଡ଼ନ୍ତୁ; ଆମେ ସବୁ ମଣିଷ ।

ମଣିଷ ଏ ପୃଥିବୀର ସବୁଠୁଁ ସ୍ୱାର୍ଥପର ପ୍ରାଣୀ । ସେ ପୁଣି ଅତି ମାତ୍ରାରେ ଆତ୍ମକୈନ୍ଦ୍ରିକ । ତେଣୁ ପ୍ରସନ୍ନକୁ ନେଇ ଆଉ କେବେ ଚିନ୍ତିତ ହେବାକୁ ମତେ ପଡ଼ିନି । ଏହାପରେ ବହୁବାର ଅନେକ ଜାଗାରେ ଆମେ ମିଶିଚୁ; ଏକାଠି ହେଇଚୁ । ମାତ୍ର ଆଉ କେବେ ସେଇ ସ୍ୱାଧୀନଚେତା, ମୁକ୍ତ ମଣିଷ ଭାବେ ସେ ପ୍ରସନ୍ନକୁ ମୁଁ ଆଉ ଭେଟି ନାହିଁ । ସେ ସବୁବେଳେ ରାଜନୀତି କାଦୁଅରେ ଲଟପଟ ହେଉଥିବା ଭିନ୍ନ ପ୍ରାଣୀଟିଏ ପାଲଟି ଯାଇଥିଲା । ଢେଙ୍କାନାଳ ରହଣି ବେଳର ସେ ପ୍ରସନ୍ନ ଥିଲା

ମୋର ବନ୍ଧୁ ମଣିଷ । ପରେ ତା'ର ବୋଧେ ମୁଖା ବଦଳେଇବାର ପର୍ବ ଆରମ୍ଭ ହେଲା । କଂଗ୍ରେସ, ବିଜେଡ଼ି– କିଏ ଜାଣେ, ଏହାର ଶେଷ କେଉଁଠି ?

ଢେଙ୍କାନାଳ କଲେଜରେ ମୋର ପ୍ରାୟ ତିନି ବର୍ଷ ଅବସ୍ଥାନ ।

ଏ କଲେଜ ପରିବେଶ ଭଲ ଥିଲା । ବରଂ ଆକର୍ଷଣୀୟ କୁହାଯାଇପାରେ । ଅଧ୍ୟାପକ ବନ୍ଧୁ ମହଲ ଥିଲେ ଖୁବ୍ ମେଳାପୀ । ସହରର ଲୋକଙ୍କ ସାଙ୍ଗରେ ଗଢ଼ି ଉଠିଥିଲା ନିବିଡ଼ ଆତ୍ମୀୟତା । ସବୁ ଭଲ ଭିତରେ ଏଠି ମୋ ବ୍ୟକ୍ତିଗତ ଜୀବନରେ ଏକ ଦୁଃଖଦ ଘଟଣା ଘଟିଗଲା । ମୋର ପତ୍ନୀ ଲିଲି ପ୍ରଥମ ପୁତ୍ର ସନ୍ତାନ ଜନ୍ମ ଦେଲାବେଳେ ତିନି ଦିନ କଷ୍ଟ ପାଇଲେ ଜିଲ୍ଲା ମେଡ଼ିକାଲରେ ପଡ଼ିରହି । ମାତ୍ର ଡାକ୍ତରଙ୍କ ଅନଭିଜ୍ଞତା ଯୋଗୁଁ ପ୍ରସବ କାଳରେ ପୁତ୍ର ସନ୍ତାନଟିର ଅପମୃତ୍ୟୁ ଘଟିଲା । ଲିଲିଙ୍କ ବୁକୁଫଟା କାନ୍ଦଣା, ଦିନେ ଅଧେ ନୁହେଁ, ମାସ ମାସ ଧରି ଚାଲିଲା । ଫରସେଭ୍ ଡେଲିଭରି କରାଇଥିବାରୁ ପରବର୍ତ୍ତୀ କାଳରେ ବହୁ ଜଟିଳ ସମସ୍ୟା ଦେଖାଦେଲା । ପରେ କଟକ ବଡ ଡାକ୍ତରଖାନାରେ ଏକ ଅପରେସନ କରାଇବାକୁ ପଡ଼ିଲା । ଅପରେସନ୍ ଶିରୋଦ୍କର ଷ୍ଟିଚ୍ ।

ଏହି ଦୁଃଖକୁ ଲାଘବ କରିବା ପାଇଁ ମୋ ପାଖରେ ନାନା ପନ୍ଥା ଜୁଟି ଯାଉଥିଲେ ବି ଲିଲିଙ୍କ ପାଖରେ ଥିଲା ଚାରିକାନ୍ଥର ଯନ୍ତ୍ରଣା ଶିବିର; ସେଇ ଘର । ମାତ୍ର ବଡ଼ ଆନନ୍ଦର କଥା– ମୋର କେତେକ ଛାତ୍ରଛାତ୍ରୀ ନିୟମିତ ଭାବେ ଆମ ଘରକୁ ଆସି ତାଙ୍କ ସାଙ୍ଗରେ ଆଳାପ କରୁଥିଲେ; ତାଙ୍କୁ ହସଖୁସିରେ ରଖିବା ପାଇଁ ପ୍ରୟାସ କରୁଥିଲେ । ସବୁଠୁ ସ୍ମରଣୀୟ ଭୂମିକା ନେଇଥିଲା ପ୍ରକାଶ କୁମାର ପରିଡ଼ା । ପରବର୍ତ୍ତୀ କାଳରେ ସେ ଏକ ଉଜ୍ଜ୍ୱଳ ପ୍ରତିଭାଧାରୀ ଲେଖକ ରୂପେ ଜଣାଶୁଣା ହୋଇଗଲା । ସେତେବେଳେ ଏହାର ଆଦ୍ୟ ଝଲକ ସେଇଠି ଦେଖିବାକୁ ମିଳିଥିଲା ।

ପ୍ରକାଶ ମୋ ପରିବାରର ଜଣେ ସଦସ୍ୟ ପାଲଟି ଯାଇଥିଲା । ଲିଲିଙ୍କୁ ସେ 'ବୋଉ' ବୋଲି ସମ୍ବୋଧନ କରୁଥିଲା । ତାଙ୍କୁ ବୁଝାଇ କରି କହୁଥିଲା– ଯିଏ ଆସି ଚାଲିଗଲା, ତା' କଥା ଭାବି ହଉଚନ୍ତି କାହିଁକି ? ମୁଁ ପରା ଅଛି, ତୁମ ପୁଅ । ତା' କାମ ମୁଁ କରିବି । କ'ଣ ବଜାରରୁ ଆଣିବେ କୁହନ୍ତୁ । ଏଇ ସାଙ୍ଗେ ସାଙ୍ଗେ ନେଇଆସିବି । ମୋର କେବଳ ଗୋଟାଏ ବଦ୍‌ଗୁଣ; ପେଟକୁ କିଛି ଦେଇସାରି ତା'ପରେ ପିଠିକୁ ପୂଜିଲେ ବି ମୁଁ ଖୁସି ।

ପ୍ରକାଶ ଏବେ ସାହିତ୍ୟ ଜଗତର ବର୍ଷୀୟାନ୍ ଉଦ୍ଭିଦ ।

ତା'ର ଏକଥା କେତେ ମନେଅଛି, ମୁଁ ଜାଣେନା ।

ଲିଲିଙ୍କର କିନ୍ତୁ ମନେଅଛି, ପ୍ରକାଶର ଏଭଳି କଥା ସେତେବେଳେ ତାଙ୍କ କ୍ଷତାକ୍ତ ମନରେ କିପରି ଆଶ୍ୱାସନାର ମଲମ ଲେପି ଦେଉଥିଲା । ଭଲ ଲାଗୁଥିଲା ସେସବୁ କଥା ।

ଢେଙ୍କାନାଳରେ ସନ୍ତୁଳିତ ତିନି ବର୍ଷର ଜୀବନ ।

ଡାକ୍ତରୀ ସେବାପାଇଁ ବରାବର କଟକ ଧାଁଦଉଡ଼ ଦରକାର ପଡୁଥିଲା । ହଠାତ୍ ଦିନେ ବଦଳି ଆଦେଶ ପାଇଲି, ମୋର କଟକ ରେଭେନ୍ସା ରାତ୍ରି କଲେଜକୁ ସ୍ଥାନାନ୍ତରଣ ହୋଇଛି । ଖୁସି ଲାଗିଲା । ଅନ୍ତତଃ ଧାଁଦଉଡ଼ରୁ ରକ୍ଷା ମିଳିଯିବ । ମାତ୍ର ଚିନ୍ତା ବଢ଼ିଗଲା । ଶୁଣିବାକୁ ପାଇଲି ରେଭେନ୍ସାରୁ ଅନ୍ୟତ୍ର ବଦଳି ହେଲେ ଲୋକେ ସହଜରେ ରିଲିଭ୍ ହେଇଯାଆନ୍ତି ନାହିଁ । ଯାହାକୁ ପଚାରିଲି, ସମସ୍ତେ ପ୍ରାୟ ସେଇୟା କହିଲେ । କ'ଣ କରିବି; ମୋ ପାଖରେ ଅନ୍ୟ ଉପାୟ କିଛି ନ ଥିଲା । ମୁଁ ଢେଙ୍କାନାଳ କଲେଜରୁ ରିଲିଭ୍ ହୋଇ ଆସି ରେଭେନ୍ସା କଲେଜ ପ୍ରିନ୍ସିପାଲ୍ ଡ. ମହେନ୍ଦ୍ର କୁମାର ରାଉତଙ୍କୁ ଦେଖାକଲି । ମୁଁ ଜଣେ ଅଧ୍ୟାପିକାଙ୍କ ଜାଗାରେ ଯୋଗ ଦେବାକୁ ଆସିଥିଲି । ମୋ ଭାଗ୍ୟ ଭଲ, ଡଃ ରାଉତଙ୍କ ଶୁଭ ଦୃଷ୍ଟିରେ ରହିପାରି ନ ଥିଲେ ସେ ଅଧ୍ୟାପିକା ଜଣକ । ରାତ୍ରି କଲେଜରେ ଚାକିରି–କରା ଅନେକ ବୟସ୍କ ପିଲା ପଢୁଥିଲେ । ପାଠପଢ଼ା ଆକର୍ଷଣୀୟ ନ ହେଲେ ସେମାନେ କ୍ଲାସରେ ଗଣ୍ଡଗୋଳ କରୁଥିଲେ । ଲାଇଟ୍ ନିଭେଇ ଦଉଥିଲେ । ଏଭଳି ସମସ୍ୟାର ବରାବର ସମ୍ମୁଖୀନ ହେଉଥିଲେ ସେ ଅଧ୍ୟାପିକା ଜଣକ । ତେଣୁ ଡ. ରାଉତ ଚାହୁଥିଲେ, ସେ ଏଠୁ ଯାଆନ୍ତୁ । ଅତଏବ ସେଇଥିପାଇଁ ମୋର ଜଏନ୍ କରିବା ସହଜ ହେଇଗଲା ।

ରେଭେନ୍ସା ରାତ୍ରି କଲେଜରେ ଯୋଗ ଦେବାପରେ ମୁଁ ଟିକେ ଆଶ୍ୱସ୍ତ ହେଲି । ମୁଁ ଅନୁଭବ କଲି, ଦଶ ବର୍ଷ ପରେ ମୁଁ ମୋର ପୁରାତନ ପରିଚିତ ପରିବେଶକୁ ଫେରିଆସିଚି । ଏବେ ରାତିରେ କଲେଜ ପାଠପଢ଼ା; ଦିନରେ ପୁରୁଣା ସଂପର୍କ ଯୋଡ଼ିବାର ପର୍ବ । ଏହି ସମୟରେ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର ସାଧାରଣ ପରିଷଦର ନବୀକରଣ ହେଲା । ନୂତନ ପରିଷଦରେ ମୁଁ ସର୍ବକନିଷ୍ଠ ସଦସ୍ୟ ଭାବେ ସ୍ଥାନ ପାଇଥିଲି । ଆମେ ସବୁ ସେଠିକି ଯାଇ କ'ଣ କରିପାରିବୁ, ସେ ବିଷୟରେ ମୁଁ କିଛି ଜାଣି ନ ଥିଲି । ତଥାପି ଏହା ମତେ ଖୁବ୍ ଆନନ୍ଦ ଦେଇଥିଲା ।

ରାତ୍ରି କଲେଜରେ ଯୋଗ ଦେବାର ଅଳ୍ପଦିନ ମଧ୍ୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପିଏଚ.ଡି. ଡିଗ୍ରୀ ପାଇଲି । ବଲାଙ୍ଗିରରେ ଥିଲାବେଳେ ମୋର ଭାରାକ୍ରାନ୍ତ ମନକୁ ମୁଁ ଗବେଷଣା କାମରେ ବୁଡ଼ାଇ ରଖୁଥିଲି । ରାଜେନ୍ଦ୍ର କଲେଜର ଏକ ସମୃଦ୍ଧ ପାଠାଗାର ଥିଲା । ଏହି ପାଠାଗାର ମୋ ଗବେଷଣା କାର୍ଯ୍ୟରେ ବିଶେଷ ସହାୟକ ହୋଇଥିଲା । ମୋ ଗବେଷଣାର ଗାଇଡ୍ ଥିଲେ ପ୍ରଫେସର ଗୋଲୋକ ବିହାରୀ ଧଳ । ଦୁର୍ଭାଗ୍ୟ ତ ମୋ ପିଛା ଛାଡୁ ନ ଥିଲା । ମୁଁ ଦୁଇଜଣ ଭିନ୍ନ ଭିନ୍ନ ପ୍ରଫେସରଙ୍କଠାରୁ ସୁପାରିଶ ପତ୍ର ସଂଗ୍ରହ କରିସାରିଥିଲି ଯେ– ମୁଁ ସାମାଜିକ, ମାନସିକ ଓ ଚାରିତ୍ରିକ ଦୃଷ୍ଟିରୁ ପିଏଚ.ଡି. ପାଇବା ପାଇଁ ସୁସ୍ଥ ଓ ଯୋଗ୍ୟ ବ୍ୟକ୍ତି । ସେତେବେଳେ ଏଭଳି ସାର୍ଟିଫିକେଟ ଦୁଇଟା ଥେସିସ୍ ଦାଖଲ ବେଳେ ଯୋଗାଡ଼ କରି ଦେବାକୁ ପଡୁଥିଲା । ସାତଦିନ ପରେ ଥେସିସ୍ ଦାଖଲ ହେବା ଦିନ ସ୍ଥିର କରିଥିଲେ ପ୍ରଫେସର ଧଳ । ସେ ଦିନଟି ତାଙ୍କ ବିଶ୍ୱାସରେ ଭଲ ଦିନ । ମାତ୍ର ମୋର ଚରମ ଦୁର୍ଭାଗ୍ୟ, ସେ ଭଲ ଦିନର ତିନି ଦିନ ପୂର୍ବରୁ ବାଣୀବିହାରଠାରେ ଏକ ସଂପାନରେ ଅଭିଭାଷଣ ଦେଲାବେଳେ ବାଥରୁମ୍‌ରେ ପଡ଼ି ପ୍ରଫେସର ଧଳଙ୍କର ବ୍ରେନ୍ ହାମ୍‌ରେଜ ହେଲା । ତାଙ୍କୁ କଟକ ବଡ଼ ଡାକ୍ତରଖାନାକୁ ଆଣି ଚିକିତ୍ସା କରାଯାଇଥିଲେ ମଧ୍ୟ ସବୁ ବିଫଳ ହେଲା । ସେ ସବୁଦିନ ପାଇଁ ଚାଲିଗଲେ ପରପାରିକୁ । ମୋ ସ୍ୱପ୍ନ ଧୂଳିସାତ୍ ହେଇଗଲା । ପୁଣି ଏକ ଦୁଃଖଦ ଧକ୍କା ।

ମୁଁ ଡିଗ୍ରୀ ଲାଭର ଆଶା ଛାଡ଼ିଦେଲି ।

ସ୍ଥିର କଲି 'ଉଭଟ ନାଟ୍ୟ ପରଂପରା' ବହି ଭଳି ଏହାକୁ ବି ପୁସ୍ତକ ଆକାରରେ ପ୍ରକାଶ କରିଦେବି । ଅବଶ୍ୟ ଏ କଥାଟି ପାଇଁ ମତେ ପରାମର୍ଶ ଦେଇଥିଲେ ମୋର ପୂଜ୍ୟଗୁରୁ ପଠାଣି ପଟ୍ଟନାୟକ । ସେ ମତେ କହିଥିଲେ, ରତ୍ନାକର ! ତମେ ଜଣେ ସର୍ଜନଶୀଳ ସ୍ରଷ୍ଟା । ଗବେଷଣା ଦ୍ୱିତୀୟ ଶ୍ରେଣୀ ପ୍ରତିଭାଧାରୀଙ୍କ କାମ । ତମ ବହି ତ ଏବେ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟ ଅନୁମୋଦିତ । ଡକ୍ଟର ଡିଗ୍ରୀ ତମଠିଁ ଆଉ ଅଧିକ କି ଗୌରବ ଯୋଡ଼ିବ ? ତମେ ଏହାକୁ ବହି ଛାପିଦିଅ । ଏ କ୍ଷେତ୍ରରେ ବିଧିବଦ୍ଧ ଭାବରେ ପ୍ରାୟ କିଛି ବହି ନାହିଁ । ବିଚାର କରି ପଦକ୍ଷେପ ନିଅ ।

ସେତେବେଳେ ପିଏଚ.ଡି. ପ୍ରମୋଶନ ପାଇଁ ନିହାତି ଆବଶ୍ୟକ ହେଉ ନ ଥିଲା । ତେଣୁ ମୁଁ ପଠାଣି ସାର୍‌ଙ୍କ କଥାରେ ସହମତ ହେଇଗଲି ।

ମାତ୍ର ତା'ପରେ ଦିନେ ଦେଖା ହେଇଗଲେ ମୋର ଅନ୍ୟତମ ଗୁରୁ ଡ. ବଂଶୀଧର ମହାନ୍ତି । ସେ ସେତେବେଳେ ବାଣୀବିହାର ଓଡ଼ିଆ ବିଭାଗର ମୁଖ୍ୟ

ଥିଲେ । ସେ ଏ ସବୁକଥା ଜାଣିଥିଲେ । ମତେ କହିଲେ, ଗାଇଡ୍ ପରିବର୍ତ୍ତନ ପାଇଁ ତମେ ଗୋଟେ ଦସ୍ତଖତ ଲେଖି ଆଣ । ଥେସିସ୍‌ରେ ଧଳବାବୁଙ୍କ ନାଁ ବଦଳରେ ମୋ ନାଁ ଲେଖି ସବୁତକ କପି ମୋ ପାଖରେ ଆଣି ଥୋଇଦିଅ । ମୁଁ ତ କହିଲି, ତମେ ପିଏଚ.ଡି. ପାଇବ । ହେଲା–

ତାଙ୍କ କଥା ମାନି ନେଲି ।

ଆଶା ତ ବୈତରଣୀ ନଦୀ ।

ମୁଁ ଦରଖାସ୍ତ ସହ ଥେସିସ୍ କପି ତାଙ୍କ ପାଖରେ ରଖିଦେଇ ଆସିଲି ।

ପ୍ରାୟ ତିନି ବର୍ଷରୁ ଊର୍ଦ୍ଧ୍ୱକାଳ ବିତିଗଲା । ମୋ ଥେସିସ୍ ଦାଖଲ କରାଇବାର ସୁଯୋଗ ସେ ଦେଲେ ନାହିଁ । ମୁଁ କୃତଜ୍ଞତା ଜଣାଉଛି ଡକ୍ଟର ବାସୁଦେବ ସାହୁଙ୍କୁ । ସେ ଦିନେ ଭୟଙ୍କର କ୍ରୋଧ ପ୍ରକାଶ କରିଥିଲେ ବଂଶୀଧର ସାର୍‌ଙ୍କ ଉପରେ । କାରଣ ସେ ଜାଣିପାରିଥିଲେ, ମୋ ଥେସିସ୍‌କୁ ପ୍ରଫେସର ମହାନ୍ତି ଆଉ ଜଣଙ୍କୁ ଦେଇ ସେଇ ଏକା ବିଷୟରେ ତାଙ୍କ ଅଧୀନରେ ରେଜିଷ୍ଟ୍ରି କରାଇଛନ୍ତି । ବାସୁଭାଇଙ୍କୁ ଧନ୍ୟବାଦ । ସେ ଏ କାମ କରି ନ ଥିଲେ ମୋ ଥେସିସ୍ ଦାଖଲ ହୋଇପାରି ନ ଥାନ୍ତା, କିମ୍ବା ମୁଁ ପିଏଚ.ଡି. ଡିଗ୍ରୀ ପାଇପାରି ନ ଥାନ୍ତି । ମୋ ପାଇଁ ସେ ଦେବଦୂତ ପାଲଟି ଯାଇଥିଲେ । ତାଙ୍କ ଅବର୍ତ୍ତମାନରେ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ସେତେବେଳେ ଖୁବ୍ କମ୍ ଲୋକ ପିଏଚ.ଡି. କରିଥିଲେ । ପ୍ରିନ୍‌ସିପାଲ ଡକ୍ଟର ରାଉତଙ୍କର ଉଚ୍ଚ ଡିଗ୍ରୀଧାରୀଙ୍କ ଉପରେ ଖୁବ୍ ଭଲ ଧାରଣା । ମୁଁ ପିଏଚ.ଡି ପାଇବା କଥା ଶୁଣି ସେ ମତେ ଡକାଇ ବଧେଇ ଜଣାଇଲେ । ତା'ପରେ ରାତି କଲେଜ ଷ୍ଟାଫ୍‌ଙ୍କୁ ଏକାଠି କରି ଗୋଟେ ଟି–ପାର୍ଟିରେ ସମସ୍ତଙ୍କ ଗହଣରେ ମତେ ସ୍ୱାଗତ ସମ୍ବର୍ଦ୍ଧନା ଦେଲେ । ମୁଁ ହଠାତ୍ ସମସ୍ତଙ୍କ ଦୃଷ୍ଟିରେ ଜଣେ ଦାମିକା ବ୍ୟକ୍ତି ହୋଇଗଲି । ମୋଟ ଉପରେ ମତେ ପ୍ରଶଂସା କରିବା ଦ୍ୱାରା ଅନ୍ୟମାନଙ୍କୁ ଗବେଷଣା କରିବାକୁ ଉତ୍ସାହ ପ୍ରଦାନ କରିବା ଥିଲା ଡକ୍ଟର ରାଉତଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଅବଶ୍ୟ ଏହାପରେ ମୁଁ ଡକ୍ଟର ରାଉତଙ୍କ ଶୁଭ ଦୃଷ୍ଟିରେ ବରାବର ରହି ଆସିଥିଲି ।

ରାତି କଲେଜରେ ମୁଁ ଅଳ୍ପକାଳ ଭିତରେ ପିଲାମାନଙ୍କର ପ୍ରିୟ ଶିକ୍ଷକ ହେଇପାରିଥିଲି । ଗୋଟିଏ ଘଟଣା ଏକଥାର ପ୍ରମାଣ ଦେବା ସଙ୍ଗେସଙ୍ଗେ ଶିକ୍ଷା ବିଭାଗର ଉଚ୍ଚ ଅଧିକାରୀଙ୍କୁ ଅଡୁଆରେ ପକାଇ ଦେଇଥିଲା । ଏଇ କଲେଜରେ ମୋର ରହଣି ଛ'ମାସ ନ ପୂରୁଣୁ ମତେ ରେଭେନ୍ସା ଦିନ କଲେଜକୁ ବଦଳି

କରାଗଲା । ଏହାର ପ୍ରତିବାଦରେ ରାତି କଲେଜର ପିଲାମାନେ ତିନି ଦିନ ଯାଏ କ୍ଲାସ ବର୍ଜନ କରିଥିଲେ । ଶିକ୍ଷା ସଚିବ ଏହାର ସମାଧାନ ପନ୍ଥା ବାହାର କରିବା ପାଇଁ ଡକ୍ଟର ରାଉତଙ୍କୁ କହିଥିଲେ ।

ମୁଁ ଗୋଲକ ଧନ୍ଦାରେ ପଡ଼ିଲି ।

ଦିନ କଲେଜକୁ ଯିବାପାଇଁ ମୋର ମଧ୍ୟ ପ୍ରବଳ ଇଚ୍ଛା ।

ମନରେ ଭୟ, ସୁଯୋଗ କାଳେ ହାତଛଡ଼ା ହେଇଯିବ ।

ଡକ୍ଟର ରାଉତ ମତେ ଡାକି କହିଲେ, ତୁମେ ରାତି କଲେଜ ଓ ଦିନ କଲେଜ ଉଭୟଠିଁ ଏବେ କ୍ଲାସ ନିଅ । ମୁଁ ଚାହେଁ, ଭଲ ଅଧ୍ୟାପକମାନେ ପି.ଜି. କ୍ଲାସ ନିଅନ୍ତୁ । ଇଭିନିଙ୍ଗ ପିଲା ଏବେ ଧର୍ମଘଟ କରିଛନ୍ତି । ସରକାରୀ କଳ ଉପରେ ବିଶ୍ୱାସ ନାହିଁ । ସେମାନେ ତୁମକୁ ପୂର୍ବଭଳି ଇଭିନିଙ୍ଗରେ ରଖି ଦିନ କଲେଜକୁ ଆଉ ଗୋଟେ କାହାକୁ ବଦଳି କରି ନେଇଆସିବେ । ତୁମେ ଦୁଇଟା ମାସ କଷ୍ଟ କର । ଟେଷ୍ଟ ପରୀକ୍ଷା ପରେ ଏ ନେତା ପିଲାଙ୍କ କ୍ଲାସ ସରିଯାଇଥିବ । ତା'ପରେ ତୁମେ କେବଳ ଦିନ କଲେଜରେ ଷ୍ଟାଫ୍ ହେଇଯିବ ।

ମତେ ଡ. ରାଉତଙ୍କ କଥା ଉଚିତ ମନେହେଲା ।

ମୁଁ ତାଙ୍କ କଥାରେ ରାଜି ହେଇଗଲି ।

ସେ ସେଇ ପ୍ରସ୍ତାବଟି ଶିକ୍ଷା ସଚିବଙ୍କୁ ଜଣାଇ ଦେବାରୁ ପରିସ୍ଥିତି ଥଣ୍ଡା ପଡ଼ିଲା । ହେଲେ ଏ ଘଟଣାର ମୂଳ ରହସ୍ୟ ଲୁଚିଥିଲା ସାହିତ୍ୟ ଏକାଡ଼େମୀର ଏକ ମିଟିଂ ଉପରେ । ଏକଥା ମୁଁ ଜାଣିଲି ଏକାଡ଼େମୀର ପରବର୍ତ୍ତୀ ମିଟିଂ ଦିନ । ଏହାର ପୂର୍ବ ମିଟିଂର ପରିସ୍ଥିତି ବଡ଼ ବିଚିତ୍ର ଥିଲା । ଏକାଡ଼େମୀର ତତ୍‌କାଳୀନ ସଭାପତି ଥିଲେ କବି ସଚ୍ଚି ରାଉତରାୟ । ସଦସ୍ୟଙ୍କ ମଧ୍ୟରେ ଥିଲେ ଶିକ୍ଷା ସଚିବ ସୀତାକାନ୍ତ ମହାପାତ୍ର, ଶିକ୍ଷା ଉପନିର୍ଦ୍ଦେଶକ ରାଜେନ୍ଦ୍ର ନାରାୟଣ ଦାସ, ବିଶିଷ୍ଟ କଥାକାର ଗୋପୀନାଥ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଖଗେଶ୍ୱର ମହାପାତ୍ର, କବି ସୌଭାଗ୍ୟ କୁମାର ମିଶ୍ର, ସରୋଜ ରଂଜନ ମହାନ୍ତି ଏବଂ ଅନ୍ୟମାନଙ୍କ ସହ କନିଷ୍ଠତମ ସଦସ୍ୟ ମୁଁ । ସେଦିନ ବିତର୍କର ପରିସରକୁ ଆସିଥିଲା ମାୟାଧର ମାନସିଂହଙ୍କ ଏକ ଇଂରାଜୀ ଅନୂଦିତ ଗ୍ରନ୍ଥ (ବୋଧେ ଓମର ଖୟାମ୍‌ଙ୍କ କବିତା) । ସଚ୍ଚିବାବୁଙ୍କ ମତ ଥିଲା– ମାନସିଂହ ଦିବଂଗତ । ତାଙ୍କ ଅମର ଆତ୍ମାକୁ ସମ୍ମାନ ଜଣାଇ ତାଙ୍କ ଲେଖାଟିକୁ ଅବିକଳ ଛପାଯାଉ । ମାତ୍ର ସୀତାକାନ୍ତବାବୁ ସେ ବହିଟିକୁ

ବୋଧେ ନିଜେ ଅନୁବାଦ କରିବାକୁ ଚାହୁଁଥିଲେ । ତେଣୁ ସେ ସଚ୍ଚିବାବୁଙ୍କ ବିରୋଧ କରି କହିଲେ- ମୋଟେ ନୁହେଁ; ଯାହାର ସାମାନ୍ୟ ଇଂରାଜି ଜ୍ଞାନ ଥିବ, ସେ କେବେ ସେ ଅନୁବାଦକୁ ସମର୍ଥନ କରିବ ନାହିଁ । ତାହା ଚସର୍‌ଙ୍କ ଭାଷାରେ ଅନୁବାଦ ହେଇଚି । ନିହାତି ରବିସ୍... !

ସଚ୍ଚିବାବୁ ଖୁବ୍ ରାଗିଗଲେ ।

ସେ କ୍ରୋଧ ତମତମ ହୋଇ କହିଲେ- 'ଶିଷ୍ଟତା ରଖି କଥାବାର୍ତ୍ତା କର । ମୁଁ ବୁରୋକ୍ରାଟଙ୍କଠାରୁ ଇଂରାଜୀ ଶିଖିବାକୁ ଏଠିକି ଆସିନି । ମାନସିଂହ ବିଲାତରେ ଇଂରାଜିରେ ଡକ୍ଟରେଟ୍ କରିଥିଲେ । ତାଙ୍କ ଲେଖା ଉପରେ ନିଜ ପାଣ୍ଡିତ୍ୟ ଦେଖାଇବା ଅର୍ଥ ଆମ୍ବପ୍ରୌଢ଼ି କାଢ଼ିବା ।

ଏହାପରେ ଘଟଣାଟି ବିବଦମାନ ମୋଡ଼ ନେଲା ।

ସୀତାକାନ୍ତବାବୁ ସେତେବେଳେ ଶିକ୍ଷା ସଚିବ । ଏଠିକାର ଅଧିକାଂଶ ସଦସ୍ୟ ଶିକ୍ଷା ବିଭାଗର ଅଧ୍ୟାପକ କିମ୍ବା ପ୍ରଶାସନିକ ଅଧିକାରୀ । ସେମାନେ ସୀତାକାନ୍ତବାବୁଙ୍କ ଆଖିବୁଜା ସମର୍ଥନ କଲେ । ଏପରିକି ବିଶିଷ୍ଟ କଥାକାର ଗୋପୀନାଥ ମହାନ୍ତି ଠିଆହୋଇ ପଡ଼ି ସୀତାକାନ୍ତ ବାବୁଙ୍କ ପାଣ୍ଡିତ୍ୟ ଓ ଭାଷା ଦକ୍ଷତାର ଭୂୟସୀ ପ୍ରଶଂସା କଲେ । ସୀତାକାନ୍ତ ବାବୁଙ୍କୁ ସେ ଗ୍ରନ୍ଥଟିକୁ ପୁନଃ ଅନୁବାଦ କିମ୍ବା ସମୀକ୍ଷା କରିବାକୁ ଦିଆଯିବା ପାଇଁ ସେ ପ୍ରସ୍ତାବ ଦେଲେ । ଏହାପରେ ବି ତାଙ୍କର ଦୀର୍ଘ ବକ୍ତବ୍ୟ ଚାଲିଥିଲା । ସଚ୍ଚିବାବୁ ଅତିଷ୍ଠ ଓ ବିଚଳିତ ହୋଇପଡୁଥାନ୍ତି । ସଦସ୍ୟମାନେ ଅସ୍ଥିର ହୋଇ ଏ ବିବାଦରୁ ନିଷ୍କୃତି ଚାହୁଁଥାନ୍ତି । ମୁଁ ମଧ୍ୟ ଅଶ୍ୱସ୍ତି ଅନୁଭବ କରୁଥାଏ । କେମିତି ହେଲେ ଗୋପୀବାବୁଙ୍କ ଅସରନ୍ତି ବକ୍ତବ୍ୟର ବିରତି ଆବଶ୍ୟକ । କିଏ ଅବା ତାଙ୍କୁ ଅଟକାଇବ !

ଗୋପୀବାବୁଙ୍କ କଥା ମଝିରେ ହଠାତ୍ ମୁଁ ଠିଆହୋଇ ପଡ଼ିଲି । ତାଙ୍କ କଥାର ସ୍ରୋତ ଟିକିଏ ଥମିଗଲା । ମୁଁ କହି ଉଠିଲି- 'ମୁଁ ପୂଜ୍ୟ ଗୋପୀନାଥ ମହାନ୍ତିଙ୍କ ପ୍ରସ୍ତାବକୁ ସମର୍ଥନ କରୁଚି ।'

– 'ହଁ'... ଏତିକି କହି ଗୋପୀବାବୁ ବସି ପଡ଼ିଲେ ।

ମୁଁ ପୁଣି କହିଲି- 'ମାତ୍ର ଏକାଡ଼େମୀର ପାଣ୍ଡୁଲିପି ପ୍ରକାଶ ହେବା ପୂର୍ବରୁ ସମୀକ୍ଷା ହେବା ପରଂପରା ଅଛି କି ନା ସଭାପତି କହିପାରିବେ । କିନ୍ତୁ ଏ ବୈଠକରେ ସଚ୍ଚି ରାଉତରାୟଙ୍କୁ କେବଳ ନୁହେଁ, ଏକାଡ଼େମୀର ସଭାପତିଙ୍କୁ ଅପମାନିତ

କରାଯାଇଚି । ସଭାପତିଙ୍କ ଅପମାନ ତ ଆମ ସମସ୍ତଙ୍କର ଅପମାନ । ଅପମାନିତ କରିଥିବା ବ୍ୟକ୍ତି ଯଦି ସଭାପତିଙ୍କୁ ଏଠି କ୍ଷମାଭିକ୍ଷା ନ କରନ୍ତି ମୁଁ ସଦସ୍ୟ ପଦରୁ ଇସ୍ତଫା ଦେଇ ହଲ୍ ବାହାରକୁ ଚାଲିଯିବା ଉଚିତ ମନେକରିବି ।'

ହଲ୍ କିଛି ସମୟ ପାଇଁ ନିରବ ନିସ୍ତବ୍ଧ ହୋଇଗଲା । ହଠାତ୍ ଏକ ବିସ୍ଫୋରଣ ସୃଷ୍ଟିକରି ଉଠିପଡ଼ିଲେ ବର୍ଷିୟାନ୍ ସାହିତ୍ୟିକ ନିତ୍ୟାନନ୍ଦ ମହାପାତ୍ର । ସେ ଢୋ-ଢୋ କରି ଦୁଇଟା ଶକ୍ତ ଚାପୁଡ଼ା ମାରିଲେ ନିଜର ଦୁଇ ଗାଲରେ । ତା'ପରେ ପାଟିକରି କହିଉଠିଲେ- ଧିକ୍ ମୋ ସାହିତ୍ୟିକ ପଣିଆକୁ । ବୟସରେ କନିଷ୍ଠ ଏଇ ସଚ୍ଚା ସାହିତ୍ୟରଥୀଙ୍କଠାରୁ ସ୍ୱାଭିମାନ ଟିକକ ମୋର ଶିଖିବାର କଥା । ସିଏ ଏ ହଲ୍ ଛାଡ଼ିଯିବା ପୂର୍ବରୁ ମୁଁ ଭାବୁଚି ମୋର ଏଠୁ ଚାଲିଯିବା ଉଚିତ ।

ଆକସ୍ମିକ ଭାବେ ବିବାଦ ଥଣ୍ଡା ପଡ଼ିଗଲା ।

ସୀତାକାନ୍ତବାବୁ ଠିଆହୋଇ ପଡ଼ି କହିଲେ- ମୁଁ ସଭାପତି କବି ରାଉତରାୟଙ୍କ ନିକଟରେ କ୍ଷମାପ୍ରାର୍ଥୀ । ସେ ଆମ ସାହିତ୍ୟର ମାର୍ଗଦର୍ଶକ ଅଗ୍ରଜ କବି । ମୁଁ ତାଙ୍କୁ ଆଘାତ ଦେବାକୁ ସେ କଥା କହି ନ ଥିଲି । ସେ ଯାହା ହେଉ; ତଥାପି ମୁଁ ଦୁଃଖିତ । ତେଣୁ ଏ କଥାର ଏଇଠି ପରିସମାପ୍ତି ହେଉ ।

ସେଦିନର ମିଟିଂ ସେଇଠି ପରିସମାପ୍ତି ଘଟିଥିଲା । ମାସକ ପରେ ଅସମାପ୍ତ ବୈଠକର କାର୍ଯ୍ୟ ସଂପନ୍ନ ହେବାକୁ ସ୍ଥିର ହେଲା । ମାତ୍ର ଏ ଦିନର କାର୍ଯ୍ୟଧାରା ଓ ମୋର ଭୂମିକାକୁ ନେଇ ସୀତାକାନ୍ତବାବୁ ନୁହନ୍ତି ବରଂ ଅଧିକ କ୍ଷୁବ୍ଧ ହୋଇଥିଲେ ଶିକ୍ଷା ଉପନିର୍ଦ୍ଦେଶକ ରାଜେନ୍ଦ୍ର ନାରାୟଣ ଦାସ । ତାଙ୍କର ଧାରଣା ହେଇଥିଲା, ମୁଁ ରାତି କଲେଜରେ ଚାକିରି କରି ଦିନଯାକ ବୁଲି ନେତାଗିରି କରୁଚି । ତେଣୁ ସେ ରାତିରୁ ଦିନକୁ ମୋର ବଦଳି ପାଇଁ ଯୋଜନା କଲେ । ତାଙ୍କ ଯୋଜନା ବି ସଫଳ ହେଲା । ଦିନ କଲେଜରୁ ପ୍ରାଧ୍ୟାପକ ବେଣୁଧର ରାଉତ ରାତି କଲେଜକୁ ଆସି ଉପାଧ୍ୟକ୍ଷ ଭାବେ ଯୋଗ ଦେଲେ । ଦିନ କଲେଜର ସେଇ ଖାଲି ଜାଗାକୁ ମୋତେ ବଦଳି କରି ଦିଆଯାଇଥିଲା ।

ଡକ୍ଟର ରାଉତଙ୍କ ପ୍ରସ୍ତାବ ଅନୁସାରେ ମୁଁ କେତେ ମାସ ଉଭୟଚର ପ୍ରାଣୀ ହେଇଗଲି । ସେଇ ସମୟରେ ଏକାଡ଼େମୀର ଅସମାପ୍ତ ବୈଠକ ଅନୁଷ୍ଠିତ ହେଲା । ସେ ମିଟିଂ ଆରମ୍ଭରେ ସୀତାକାନ୍ତବାବୁଙ୍କ ସହିତ ମୋର ସାକ୍ଷାତ୍ ହୋଇଗଲା । ଯୋଗକୁ ପାଖରେ ଥିଲେ ରାଜେନ୍ଦ୍ରବାବୁ । ସୀତାକାନ୍ତବାବୁ ମତେ ପଚାରିଲେ-

'ଆପଣ ଦିନ କଲେଜରେ ଜଏନ୍ କଲେଣି ତ ? ଡକ୍ଟର ରାଉତ କହୁଥିଲେ ଇଭିନିଙ୍ଗ୍ ପିଲାଏ କ'ଣ ଟିକେ ପ୍ରବଲେମ୍ ଉଠାଇଥିଲେ । ଭଲ ଟିଚର୍‌ଙ୍କୁ କେହି ହାତଛଡ଼ା କରିବାକୁ ଚାହାନ୍ତି ନାହିଁ । ମୁଁ ତାଙ୍କୁ କହିଚି, ଫ୍ୟାକ୍‌ଲ୍‌ଟି କଣ୍ଟ୍ରୋଲ କରିବେ । ମୁଁ ଜାଣିଚି, ମାସକ ଭିତରେ ସବୁ ଠିକ୍ ହେଇଯିବ ।'

ମୁଁ ତାଙ୍କୁ ଧନ୍ୟବାଦ ଜଣାଇଲି ।

ରାଜେନ୍ଦ୍ରବାବୁ ମୋ ପାଖକୁ ଆସି ମତେ ଧୀରେ ପଚାରିଲେ, ହଇହୋ ! ସେକ୍ରେଟାରୀଙ୍କ ସହିତ ତ ଏତେ ଜଣାଶୁଣା; ସେଦିନ ତାଙ୍କୁ ନାକ ଘଷେଇଲ କାହିଁକି ?

ମୁଁ ତାଙ୍କୁ ଉତ୍ତର ଦେଲି– ନାଇଁ ଆଜ୍ଞା ! ମୁଁ ନାକ ଘଷେଇ ନାହିଁ; ବରଂ ତାଙ୍କ ମର୍ଯ୍ୟାଦା ବଢ଼େଇ ଦେଇଚି । ଆପଣ ତାଙ୍କୁ ସେକଥା ପଚାରି ପାରନ୍ତି । ପାଟିରୁ ଖସିଯିବା କଥା ପାଇଁ କ୍ଷମା ମାଗିନେଲେ ବଡ଼ପଣ ବଢ଼ିଯାଏ ବୋଲି ମୋର ଧାରଣା ।

ଏହାପରେ ମୋର ଆଉ କିଛି ଅସୁବିଧା ହେଇନି ।

ରେଭେନ୍ସା କଲେଜ ମୋର କାର୍ଯ୍ୟ ବ୍ୟସ୍ତତା ବଢ଼ାଇ ଦେଲା । ସେତେବେଳେ ପ୍ରଫେସର ଓ ମୁଖ୍ୟ ଅଧ୍ୟାପକ ଥିଲେ, ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) । ସେ ବି ମୋର ଶିକ୍ଷାଗୁରୁ ଥିଲେ । ମତେ ଖୁବ୍ ଭଲ ପାଉଥିଲେ । ବିଭାଗରେ ବରିଷ୍ଠ ଅଧ୍ୟାପକ ଥିଲେ ଡ. କୃଷ୍ଣଚରଣ ବେହେରା, ଡ. ଶରତଚନ୍ଦ୍ର ପ୍ରଧାନ, ଅସିତ କବି, ଡ. କ୍ଷେତ୍ରବାସୀ ନାୟକ, ଡ. ବିଚିତ୍ରାନନ୍ଦ ମହାନ୍ତି, ଡ. ଧନେଶ୍ୱର ମହାପାତ୍ର ଓ ଗିରୀଶ ଚନ୍ଦ୍ର ମିଶ୍ର । ବିଭାଗର ଯାବତୀୟ କାର୍ଯ୍ୟ ସହ ମତେ ବଡ଼ ବଡ଼ ଏମ୍.ଆଇ.ଏଲ. କ୍ଲାସ ନେବା ପାଇଁ ପଡୁଥିଲା । ବିଭାଗରେ ଉପୁଜୁଥିବା ମନାନ୍ତର ଓ ମତାନ୍ତର ସବୁକୁ ସୂତ୍ରଧର ସାଜି ମିଳାମିଶା କରିବାର ପ୍ରମୁଖ ଭୂମିକା ନେଉଥିଲୁ ମୁଁ ଓ ଗିରୀଶ ।

ରେଭେନ୍ସା ଅବସ୍ଥାନ ଘଟଣାବହୁଳ ହେଲେ ମଧ୍ୟ ପ୍ରୀତିପ୍ରଦ ଥିଲା । ଅଧ୍ୟୟନ ଓ ଅଧ୍ୟାପନାରେ ବେଶି ସମୟ କଟୁଥିଲା । ଓଡ଼ିଶାର ସର୍ବବୃହତ କଲେଜ ଇଏ । ରାଜ୍ୟର ବଛା ବଛା ପିଲାଏ ଏଠିକି ପଢ଼ିବାକୁ ଆସୁଥିଲେ । ସେମାନଙ୍କର ମେଧା ଓ ପ୍ରଜ୍ଞାକୁ ସାମ୍ନା କରିବାକୁ ହେଉଥିଲା । ଖୁବ୍ ଭଲ ଲାଗୁଥିଲା ଏମାନଙ୍କର କ୍ଲାସ ନେବାକୁ । ମନେ ହେଉଥିଲା– ଇଏ ତ ମୋ ଜାତିର ସମ୍ଭାବନାମୟ ସୁରଭିତ

ଫୁଲବନ । ଏମାନଙ୍କ ସବୁଜ ଚେତନାକୁ ଠିକ୍ ବାଟ ଦେଖାଇ ପାରିଲେ ଏ ଗୁଣ୍ଡୁଚି ମୂଷାର ଭୂମିକା ସାର୍ଥକ ହେବ ।

ଏଇଠି କର୍ମରତ ଥିଲାବେଳେ ମୋ ଛୋଟିଆ ପରିବାରକୁ ଫେରି ଆସିଲା ଖୁବ୍ ଆନନ୍ଦ । ୧୪.୦୫.୧୯୮୧ ତାରିଖ; ତିଥି ବୈଶାଖ ଶୁକ୍ଳ ଏକାଦଶୀ । ସେଦିନ ବୃଷ ସଂକ୍ରାନ୍ତି । ପୁତ୍ର ସତ୍ୟକାମର ଜନ୍ମ । ଧୁମ୍‌ଧାମ୍‌ରେ ଜନ୍ମ ଉତ୍ସବ ପାଳିତ ହେଲା । ଭୋଜିରେ ଯୁଟିଲା ଶ୍ରୀକ୍ଷେତ୍ର ପୁରୀର ଅଭଡ଼ା । ମହମହ ମହକ । କଟକ ସହରରୁ ଗାଁଯାଏ ମହକିଗଲା । ସେତେବେଳେ ବୋଉ କଥା ଖୁବ୍ ମନେପଡ଼ିଲା । ସତ୍ୟକାମ ଜନ୍ମ ନେବାର କେଇ ମାସ ଆଗରୁ ବୋଉ ଇହ ଜଗତ ଛାଡ଼ିଯାଇଥିଲା । ତା'ର ସ୍ୱପ୍ନ ଥିଲା– ପୁଅଟିଏ ହବ । ମହାପ୍ରସାଦ ଭୋଜି ଲାଗିବ । ସମସ୍ତେ କଲ୍ୟାଣ କରିବେ ମୋ ନାତିକୁ । ସେତିକି ମୋର ଆଶା ।

ବୋଉର ଆଶା ଆଶାରେ ରହିଗଲା ।

ସେ ଆଗତୁରା ବାଟ କାଟିଥିଲା ।

ମାତ୍ର ତା'ର ସ୍ୱପ୍ନ ସାକାର ହେଇଥିବାରୁ ମୁଁ ଖୁସି ।

ରେଭେନ୍ସାରେ ଥିଲାବେଳେ ଗିରୀଶ ଓ ମୁଁ ଅନେକ ଯୋଜନା କରି ଚାଲିଲୁ । ମୋ ଘର ଛାତ ଉପରେ ବସି ପରିକଳ୍ପନା କଲୁ– ଗୋଟେ ପ୍ରକାଶନ ସଂସ୍ଥା କରିବା । ଦୁଷ୍ପ୍ରାପ୍ୟ ଦୁର୍ଲଭ ବହିକୁ ଛାପି ସୁଲଭ ମୂଲ୍ୟରେ ଯୋଗାଇ ଦେବା । ପ୍ରଥମେ ଆମର ଯୋଜନା ହେଲା ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'କୁ ପୁନଃମୁଦ୍ରଣ କରିବା । ସେଥିପାଇଁ ତାଙ୍କ ପରିବାରଠାରୁ ଅନୁମତି ଆଣିବାକୁ ଅନେକ ପ୍ରୟାସ କଲୁ । ବହୁ ବ୍ୟକ୍ତି ମଧ୍ୟସ୍ଥତା କଲେ । ମାତ୍ର ସବୁ ବିଫଳ ହେଲା । ବର୍ଷଟିଏ ବରବାଦ ହୋଇଗଲା ।

ଭାଷାକୋଷ ପ୍ରଣୟନର ଆଗ୍ରହ ଆମର ଅତି ପ୍ରବଳ ଥିଲା । ତେଣୁ ଆମେ ସମଧର୍ମା କେତେଜଣ ପ୍ରତିଜ୍ଞାବଦ୍ଧ ହେଲୁ । ପ୍ରତିଦିନ ସନ୍ଧ୍ୟାରେ ଏକାଠି ହେଲୁ । ହାତରୁ ଖାଇ ଘୋଡ଼ା ଆଗରେ ଦୌଡ଼ିବାର ପଣ କଲୁ । ଡକ୍ଟର ଶରତଚନ୍ଦ୍ର ପ୍ରଧାନ, ରତ୍ନାକର ଚଇନି, ଗିରୀଶ ଚନ୍ଦ୍ର ମିଶ୍ର, ରାଜକିଶୋର ମିଶ୍ର ଓ ଅଜୟ କୁମାର ପଟ୍ଟନାୟକଙ୍କୁ ନେଇ ଏଇ ଦଳ । ବାସ୍, ଆଗେଇ ଚାଲିଲା କାମ– ନୂଆ ନାଁ 'ଓଡ଼ିଆ ଭାଷାକୋଷ' ।

॥ ଚବିଶି ॥

# କିଛି ସ୍ମୃତି କିଛି ଅନୁଭୂତି

ଜୀବନରେ ଏମିତି ଗୋଟେ ଲେଖାଁ ମୋଡ଼ ଆସେ, ଯେଉଁଠି ପହଞ୍ଚିଗଲେ ମଣିଷ ଭାବେ, ଏ ପରିସ୍ଥିତିରୁ ଆଉ ମୁକୁଳିବାର ରାହା ନାହିଁ । ଏକ ମସ୍ତବଡ଼ ଆବର୍ତ୍ତରେ କେବଳ ଘୂରିବାକୁ ହିଁ ପଡ଼ିବ । ସେଥିରୁ ଅଲଗା ହେଇ ରହିବାକୁ ଚେଷ୍ଟା କଲେ ବି ରହିହେବ ନାହିଁ । ଅଧ୍ୟାପନା, ପ୍ରଶାସନିକ କାର୍ଯ୍ୟ ପରିଚାଳନା, ସାହିତ୍ୟ ସର୍ଜନା, ସାଂସ୍କୃତିକ ସଭାସମିତିରେ ଯୋଗ ଦେଇ ସାରା ଓଡ଼ିଶା ଓ ଓଡ଼ିଶା ବାହାର ରାଜ୍ୟରେ ଅଭିଭାଷଣ ପ୍ରଦାନ ଆଦି କାମରେ ଚକ୍ରବତ୍ ପରିଭ୍ରମଣ ମୋ ଜୀବନର ଧାରା ପାଲଟିଗଲା । ଜୀବନର ପ୍ରବହମାନ ଧାରାକୁ ଫାଙ୍କି ମାରି, ଧରିନେଲି–ମତେ ଏହାରି ଭିତରେ ବଞ୍ଚିବାକୁ ହିଁ ପଡ଼ିବ ।

ଏଇତ ମୋର ଜୀବନ; ଲେଖକର ଜୀବନ ।

ଏକଥା ସତ– ସାହିତ୍ୟ ମଣିଷକୁ ଗୋଟାଏ ମୁଖା ଦିଏ; ବ୍ୟକ୍ତିତ୍ୱ ଗଢ଼ି ତୋଳିବାର ଦସ୍ତିଲା ସୁଯୋଗ ଦିଏ । କାଲି ଭଳି ମନେପଡୁଛି; ମତେ ଗୋଟେ ସର୍ବଭାରତୀୟ ସମ୍ମେଳନରେ ଯୋଗ ଦେବାର ସୁଯୋଗ ମିଳିଥିଲା । ତାହା ୧୯୮୨ ଜାନୁୟାରୀ ମାସ । ଲେଖକ ଓ ଗଣମାଧ୍ୟମର ଅଧିକାରୀଙ୍କର ଥିଲା ଇଏ ସଂଗୋଷ୍ଠୀ । ପ୍ରତି ସ୍ୱୀକୃତିପ୍ରାପ୍ତ ଭାରତୀୟ ଭାଷାର ଜଣେ ଲେଖାଁ ନାଟ୍ୟକାର ଓ ସେଇ ଭାଷାର ଜଣେ ଜଣେ ମିଡ଼ିଆ ବ୍ୟକ୍ତି ନିର୍ବାଚିତ ହୋଇଥିଲେ । ଚାରି ସପ୍ତାହର କାର୍ଯ୍ୟକ୍ରମ । ଜାତିସଂଘର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ସଂସ୍ଥା ନୂଆଦିଲ୍ଲୀରେ ଏହାକୁ ଆୟୋଜନ କରିଥିଲା । ତେଣୁ ଯିବାପାଇଁ ଆବଶ୍ୟକ ଛୁଟି ମିଳିଗଲା ।

ରହିବା ଓ ଖାଇବା ପିଇବାର ସୁବନ୍ଦୋବସ୍ତ ଥିବାରୁ ସପରିବାର ଗଲି । ଆମ ସାଙ୍ଗରେ ଥିଲା ଆମର ୮/୧୦ ମାସର ପୁଅ ପୁପୁନ୍ । ଜାନୁୟାରୀ ମାସର

ଦିଲ୍ଲୀରେ ଶୀତ ପ୍ରବଳ । ଛୋଟ ପିଲାଙ୍କୁ ଯେତେ ଶୀତବସ୍ତ୍ର ପିନ୍ଧାଇଲେ ବି ଥଣ୍ଡା ଧରିବାର ଭୟ । ମାତ୍ର ସେଠି ଏମିତି ହେଲା, ଟିକି ପୁଅ ଲିଲିଙ୍କ ପାଖରେ କମ୍ ସମୟ କଟାଇଲା; ବେଶି ସମୟ ଅନ୍ୟ ଭାରତୀୟ ଭାଷାଭାଷୀ ମହିଳାଙ୍କ ପାଖରେ ରହିଲା । ତା'ର ଦରୋଟି କଥା– 'ବାବା କାଇ'... 'ମାମା ଯାଇ' ଆଦି କଥା ଭଲ ଲାଗୁଥିଲା ମିସେସ୍ ବେନ୍ଦ୍ରେ, ମିସ୍ ରାଓ ଓ ମିସେସ୍ ଆଭା ଟାଇଙ୍କୁ ।

ଏଇଠି ବିଭିନ୍ନ ଭାରତୀୟ ଭାଷାଭାଷୀ ଲେଖକମାନଙ୍କ ସହିତ ମତେ ଭାବ-ବିନିମୟର ସୁଯୋଗ ଜୁଟିଲା । କେରଳୀ, ମରାଠୀ, ବଙ୍ଗାଳୀ ଲେଖକମାନେ ଲେଖାକୁ ବୃତ୍ତିକରି ସେମାନେ ବଞ୍ଚିଥିବା କଥା କହିଲେ । ଏଠିକି ଆସିବା ଯିବାର ସମସ୍ତ ଖର୍ଚ୍ଚ କେତେ ଜଣଙ୍କୁ ତାଙ୍କ ଭାଷାର କୌଣସି ନା କୌଣସି ପତ୍ରିକା ଅଗ୍ରିମ ଆକାରରେ ଦେଇଥିଲା । ଏଠିକାର ଅନୁଭୂତିକୁ ଲେଖି ସେମାନେ ସେଇ ସେଇ ପତ୍ରିକାକୁ ଦେବେ । ସେମାନେ ମତେ ମୋ ଭାଷାର ସ୍ଥିତି ବିଷୟରେ ପଚାରିଲେ । ମୁଁ କହିଲି– କିଛି ପାଇବା ପାଇଁ ଓଡ଼ିଶାରେ କେହି ଲେଖେ ନାହିଁ । ଲେଖକ-ବୃତ୍ତିରୁ ଅର୍ଥ ଲାଭକରି ପେଟ ପୋଷିବା ଆମର ଏଠି ଅସମ୍ଭବ ବ୍ୟାପାର । ପତ୍ରପତ୍ରିକାମାନଙ୍କରେ ଲେଖାପାଇଁ ଅର୍ଥ ପ୍ରଦାନର ସୌଜନ୍ୟ ଏବେବି ସୃଷ୍ଟି ହୋଇ ନାହିଁ । ଅଗ୍ରିମ ଦେବା ତ ଦୂରର କଥା ।

ତଥାପି ଏଠି ଲେଖକ ଲେଖେ ।

ମନରେ ଯେତେବେଳେ ସୃଜନ ବେଣୁ ବାଜେ, ଭାବ ପ୍ରକାଶର ଆବେଗ ମୁଣ୍ଡିଆ ମାରେ, ସେସବୁକୁ ଖଲାସ କରିବାକୁ ଆତ୍ମା ଛଟପଟ ହୁଏ, ଛାତିରେ ଯନ୍ତ୍ରଣା ବଢ଼େ; ଆହାର ନିଦ୍ରା ବିଷ ପରି ମନେହୁଏ । ମାଆର ପ୍ରସବ ବେଦନା ଭଳି ଏକ ଅପ୍ରକାଶ୍ୟ ଯନ୍ତ୍ରଣା ସେ । ପ୍ରକାଶର ରୂପ ନେଲା ପରେ ଲୁହଝରା ଧାରେ ହସ ଫୁଟିଉଠେ । ବାସ୍, ଆତ୍ମପ୍ରକାଶର ସିଏ ଗୋଟାଏ ଝୁଙ୍କ– ସେତିକି ଆମ ଲେଖକଙ୍କର ପାଉଣା । ଆଉ ପାଠକୀୟ ପ୍ରଶଂସା, ଯଶ, ପୁରସ୍କାର ଅର୍ଥ, ଏସବୁ ଉପୁରି । ତାହାରି ଭିତରେ ଓଡ଼ିଆ ଲେଖକକୁ କାଳିଶି ଲାଗେ । ସେ ଲେଖିଚାଲେ । ଭାଷା ସାହିତ୍ୟକୁ ସମୃଦ୍ଧ କରେ ।

ସେମାନଙ୍କ ଭିତରୁ ଜଣେ ମତେ ପଚାରିଲେ, ତେବେ ତ ଓଡ଼ିଆ ଲେଖକମାନେ ବେଶି ଫିଲୋସଫର୍ ହେବା ଉଚିତ । କହିଲେ ଆପଣଙ୍କ ସାହିତ୍ୟର ଭାବଭୂମି କ'ଣ ?

ମୁଁ କହିଥିଲି, ମୋ ମାଟି–ମଣିଷର ବାସ୍ତବ ଜୀବନ ଚିତ୍ରଣ ଓ ସତ୍ୟାନୁରାଗ ମୋ ସାହିତ୍ୟର ଭାବଭୂମି । ବୃତ୍ତିରେ ମୁଁ ଅଧ୍ୟାପକ । ଜଣେ ଅଧ୍ୟାପକକୁ ମୁଖ୍ୟ ଚରିତ୍ର କରି ମୁଁ ଲେଖିଥିଲି ଗୋଟେ ଗଳ୍ପ 'ଜଣେ ରାଜା ଥିଲେ' । ଓଡ଼ିଶାର ଅଗଣିତ ପାଠକ ଏହାକୁ ସତ୍ୟ ଘଟଣା ମନେକରି ମତେ ଅନେକ ଅଛିଣ୍ଡା ପ୍ରଶ୍ନ ପଚାରିଥିଲେ ପରିଣତି ଜାଣିବା ପାଇଁ । ଏହା କ'ଣ ସାର୍ଥକ ସାହିତ୍ୟର ଜୟମାଲ୍ୟ ନୁହେଁ ?

ଆଉ ଜଣେ କହିଲେ, ସତ କଥା । ପରିବେଶ ପରିସ୍ଥିତିକୁ ନେଇ ପ୍ରତ୍ୟେକ ଭାରତୀୟ ସାହିତ୍ୟ ଅନନ୍ୟ ଓ ଅସାଧାରଣ । ଆମର ବିଶେଷତ୍ୱ ହେଉଛି ଅନେକତା ଭିତରେ ଏକତା । ସେଦିନ ଆମ ଗହଣରେ ଥିଲେ ଜଣେ ଅସମୀୟା ଲେଖକ– ଶ୍ରୀ ଲକ୍ଷ୍ମୀନନ୍ଦନ ବୋରା । ସେ ମୋ ଭାବଭାବନାରେ ଖୁବ୍ ପ୍ରଭାବିତ ହୋଇପଡ଼ିଲେ । ମତେ ଆସାମ ଯିବାକୁ ସେ ଆମନ୍ତ୍ରଣ କଲେ । ମୁଁ ଯାଇପାରିଲି ନାହିଁ ସତ; କିନ୍ତୁ ମୁଁ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ଥିଲାବେଳେ ତାଙ୍କୁ ଆମର ପ୍ରାଚୀନତମ ସାଂସ୍କୃତିକ ତଥା ସାହିତ୍ୟ ଅନୁଷ୍ଠାନର ଏକ ଉତ୍ସବକୁ ଡାକିଥିଲି । ସେ ଆସିଥିଲେ ଏବଂ ଭାବବିଭୋର ହୋଇ ସେଦିନର ଏଇ ସ୍ମୃତିକୁ ରୋମନ୍ଥନ କରିଥିଲେ ।

ମୋ ବିଚାରରେ ସାହିତ୍ୟର ସୀମା ନାହିଁ; ତାହା ଅସୀମ ।

ସଂସ୍କୃତିର ସୀମା ଅଛି;ସରହଦ ଅଛି; ତଥାପି ତାହା ବି ଅସୀମ ।

ମୋ ଜାତିର ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି ।

ମୋ ଦେଶର ଅନ୍ୟ ନାମ ତ ଜଗନ୍ନାଥ ଦେଶ ।

ଶ୍ରୀଜଗନ୍ନାଥ ମୋ ଅସ୍ମିତାର ପରିଚୟ ।

ଶ୍ରୀଜଗନ୍ନାଥଙ୍କର ସେବା କରିବାର ସୁଯୋଗ ପାଇବା ପରମ ସୌଭାଗ୍ୟର କଥା । ମୁଁ ୧୯୮୧ ମସିହାରେ ପ୍ରଥମେ ରଥଯାତ୍ରାର ଧାରା ବିବରଣୀ ପ୍ରଦାନ ପାଇଁ ସୁଯୋଗ ପାଇଥଲି । ତେଣୁ ଅତ୍ୟନ୍ତ ଆନନ୍ଦିତ ହୋଇ ଭାବିଥିଲି– ମୁଁ ମହାପ୍ରଭୁଙ୍କର 'ବଚନସେବା' କରିବାର ସୌଭାଗ୍ୟ ଲାଭ କଲି । ମୁଁ ଜାଣିଥିଲି, ଜଗନ୍ନାଥଙ୍କର ଛତିଶା ନିଯୋଗ ସେବା । ଅର୍ଥାତ୍ ଶ୍ରୀମନ୍ଦିରରେ ଆଗେ ଛତିଶ ଶ୍ରେଣୀର ସେବକ ବା ସେବା ନିଯୋଗ ବ୍ୟବସ୍ଥା ରହିଥିଲା । ଏବେ ଏହି ସେବକ ସଂପ୍ରଦାୟର ସଂଖ୍ୟା ଅନେକ ବେଶି । ମୁଁ ବଚନସେବାକୁ ଏଥିରେ ଯୋଡ଼ି ଆଉ

ଗୋଟିଏ ଅଧିକ ସଂପ୍ରଦାୟ ବଢ଼ାଇଦେଲି । ଧାରା ବିବରଣୀକାରୀ ଆମେ ହେଲୁ ବଚନ-ସେବକ ।

ସ୍ୱୟଂ ଗଜପତି ମହାରାଜା ଜଗନ୍ନାଥ ମହାପ୍ରଭୁଙ୍କର ପ୍ରଥମ ସେବକ । ରଥଯାତ୍ରା ବେଳେ ସେ ମହାପ୍ରଭୁଙ୍କ ରଥରେ ଛେରାପହଁରା କରନ୍ତି । ଦ୍ୱିତୀୟ ପ୍ରମୁଖ ସେବକ ହେଲେ ମୁଦିରଥ । ରାଜାଙ୍କ ଅନୁପସ୍ଥିତିରେ ସେ ମହାରାଜାଙ୍କ ପ୍ରତିନିଧି ରୂପେ ଏହି ସେବାକାର୍ଯ୍ୟ କରନ୍ତି । ଏହା ବ୍ୟତୀତ ପୂଜାପଣ୍ଡା (ନୈବେଦ୍ୟ ସେବା), ଖୁଣ୍ଟିଆ (ଡାକହାକ ସେବା), ଭଣ୍ଡାର ମେକାପ (ଭଣ୍ଡାର ରକ୍ଷଣାବେକ୍ଷଣ ସେବା), ଘଣ୍ଟୁଆ, କାହାଳିଆ ଆଦି ଅନେକ ଉଲ୍ଲେଖନୀୟ ସେବା ରହିଛି । ଏସବୁ ଦୁର୍ଲଭ ସେବା । ରଥଯାତ୍ରାର ଧାରାବିବରଣୀ ସେବା ପ୍ରଥମେ ଆରମ୍ଭ ହୋଇଥିଲା ଆକାଶବାଣୀରୁ । ତା'ପରେ ଆରମ୍ଭ ହେଲା ଦୂରଦର୍ଶନ ପ୍ରସାରଣ ସେବା । ଦୂରଦର୍ଶନରେ ପ୍ରଥମେ ପୁରୀରୁ ରେକର୍ଡ କରି ଆଣି କଟକରୁ ପ୍ରସାର କଲାବେଳେ ପ୍ରଥମ ବର୍ଷ ପ୍ରଥମ ବର୍ଣ୍ଣନାକାରୀ ହେବାର ସୁଯୋଗ ପାଇଥିଲି ମୁଁ । ପୁଣି ପୁରୀରୁ ଏଲ୍‌ପିଟି ମାଧ୍ୟମରେ ପ୍ରଥମ ସିଧା ପ୍ରସାରଣ ଆରମ୍ଭ ହେଲାବେଳେ ସେଦିନ ଧାରାବିବରଣୀ ପ୍ରଦାନ କରିଥିଲି ମୁଁ । ମୋର ମନେହେଉଚି, ଏସବୁ ଜଗନ୍ନାଥ ମହାପ୍ରଭୁଙ୍କର ଅପାର କରୁଣାର ଫଳ । ନଚେତ୍ ମତେ ଏ ସୁଯୋଗ ମିଳି ନ ଥାନ୍ତା ।

କାଲି ଭଳି ମନେପଡୁଚି ସେଦିନର କଥା । ପ୍ରଥମଥର ଧାରାବିବରଣୀ ଦେବାପାଇଁ ଆକାଶବାଣୀ ତରଫରୁ ପୁରୀ ରାଧାବଲ୍ଲଭ ମଠ ଉପରେ ଠିଆ ହୋଇଥାଏ । ମୋ ସହିତ ସେଠି ଥାଆନ୍ତି ପଣ୍ଡିତ ସଦାଶିବ ରଥଶର୍ମା, ଡଃ ବ୍ରଜମୋହନ ମହାନ୍ତି- ଆଉ ବି ଜଣେ ଥିଲେ, ଏବେ ତାଙ୍କ ନା ମନେପଡୁନି । ପ୍ରଥମେ ବ୍ରଜମୋହନ ମହାନ୍ତି ବିବରଣୀ ପ୍ରଦାନ ଆରମ୍ଭ କଲେ । ସଦାଶିବ ରଥଶର୍ମା ମନ୍ଦିର ଭିତର କାର୍ଯ୍ୟାବଳୀର ତଥ୍ୟ ସଂଗ୍ରହ କରି ଆସି ପହଞ୍ଚି ନ ଥାନ୍ତି । ବ୍ରଜମୋହନଙ୍କ ପରେ ପଡ଼ିଲା ମୋ ପାଳି । ମୁଁ କ'ଣ କହିବି- କିଛି ତ ମନେପଡୁନି ! ଜଗନ୍ନାଥଙ୍କ କଥା କ'ଣ ଅବା ଜାଣେ ମୁଁ । ତୁହାକୁତୁହା କୋହ ଉଠିଲା ମନରେ । କାହିଁକି ଏ ଦୁଃସାହସ କଲି ଆସି ଧାରାବିବରଣୀ ଦେବାକୁ । ଆଖିବୁଜି ଜଗନ୍ନାଥଙ୍କୁ ଡାକିଲି । ପ୍ରଭୁ ! ମୋର ଦୁଃସାହସକୁ କ୍ଷମା କର । ତୁମରି ଲୀଳାକୁ ତୁମେ ପ୍ରସାର କର । ମୁଁ ନିମିତ୍ତ ମାତ୍ର, ଲକ୍ଷ ଲକ୍ଷ ଶ୍ରୋତା ମୋ ଆଖିରେ ତୁମକୁ ଦେଖନ୍ତୁ । ମୋ ମନ ପ୍ରାଣ ତୁମରି ଚେତନାମୟ ହୋଇଯାଉ-

ପ୍ରଥମେ ପନ୍ଦର ମିନିଟ୍ କାଳ ଧାରାବିବରଣୀ ଦେଇସାରିଲା ପରେ ମାଇକ୍ରୋଫୋନ୍ ସଦାଶିବ ରଥଶର୍ମାଙ୍କୁ ବଢ଼ାଇଦେଲି । ତା'ପରେ ହଠାତ୍ ମତେ କୁଣ୍ଢାଇ ପକାଇଲେ ସେତେବେଳର ଅଣଓଡ଼ିଆ କେନ୍ଦ୍ର ନିର୍ଦ୍ଦେଶକ; ପରେ ପରେ ବ୍ରଜମୋହନ ମହାନ୍ତି । କହିଲେ, 'ଚମତ୍କାର ! ଆମେ ଏମିତିଆ କମେଣ୍ଟ୍ରି ଚାହୁଁଥିଲୁ । ତତ୍ତ୍ୱ ବା ତଥ୍ୟରେ ଭାରାକ୍ରାନ୍ତ ନ ହେଉ; ଯାହା ଘଟୁଚି ଲୋକେ ତାହା ଶୁଣନ୍ତୁ; ଆପଣଙ୍କ ଭାବଭାବନାରେ ସେମାନେ ବିଭୋର ହୁଅନ୍ତୁ । ଏଥର ଏମିତି କହି ଆଗେଇ ଚାଲନ୍ତୁ ।'

ମୁଁ ଉତ୍ସାହିତ ହେଲି । ସେଇ ବର୍ଷଠାରୁ ଜଗନ୍ନାଥଙ୍କର ଅପାର କରୁଣାରୁ ମୁଁ ତାଙ୍କର ବିଶ୍ୱପ୍ରସିଦ୍ଧ ରଥଯାତ୍ରାର ଧାରାବିବରଣୀ ସହିତ ଯୋଡ଼ି ହେଇଗଲି । ମୋର ଅନୁଭୂତି ହେଲା, ସେ ନ ଚାହିଁଲେ ଦୂବ ହଲେ ନାହିଁ; ସେ ଚାହିଁଲେ କିଞ୍ଚିତ୍ ମାତ୍ରକେ ଦାରୁ ଟଳିପଡ଼େ ।

ଆଉ ଥରକର କଥା ମନେପଡୁଚି । ସେ ବର୍ଷ ନବକଳେବର ପଡ଼ିଥାଏ । ଆମେ ଧାରାବିବରଣୀ ପ୍ରଦାନ ପାଇଁ ପୂର୍ବ ଦିନରୁ ପୁରୀରେ ପହଞ୍ଚିଥାଉ । ରାତିରେ ମନ୍ଦିର ଭିତରେ ନବଯୌବନ ଦର୍ଶନ ପାଇଁ ପ୍ରବଳ ଭିଡ଼ । ଏଥରକ ୧୯ ବର୍ଷର ବ୍ୟବଧାନରେ ନବକଳେବର ପଡ଼ିଥାଏ । ଭକ୍ତଙ୍କ ସମାବେଶ ତେଣୁ ଅଧିକ । ବ୍ରଜମୋହନ ମହାନ୍ତି କହିଲେ, ଚାଲ ଆମେ ଟିକେ ଆଲୋଚନା କରିବା– ଏଥରକ ଯିଏ ବ୍ରହ୍ମ ପରିବର୍ତ୍ତନ କରିଛନ୍ତି, ତାଙ୍କ ସହିତ । ମୋର ଆଗ୍ରହ ବଢ଼ିଲା । ମୁଁ ତାଙ୍କ ସହିତ ଗଲି–

ମୁଁ ଜାଣିଥିଲି, ବ୍ରହ୍ମ ପରିବର୍ତ୍ତନ କରନ୍ତି ପତି ମହାପାତ୍ର ବା ସ୍ୱାଇଁ ମହାପାତ୍ର କିମ୍ବା ଦାସ ମହାପାତ୍ର । ବଡ଼ ଭାଗ୍ୟବାନ୍ ସେମାନେ, ଯେଉଁମାନେ ଏହି ମହାନ୍ କର୍ମ କରିବାର ସୁଯୋଗ ପାଆନ୍ତି । ବ୍ୟବସ୍ଥା ଅନୁସାରେ ତାଙ୍କ ସହିତ ଭେଟ କରାଇ ଦିଆଗଲା । ମୁଁ ତାଙ୍କୁ ପ୍ରଶ୍ନ କଲି, ତାଙ୍କ ଅନୁଭୂତି ସଂପର୍କରେ ଦି'ପଦ କହିବା ପାଇଁ । ବ୍ରଜବାବୁ ଗୋପନ ଭାବେ ସାଙ୍ଗରେ ଟେପ ରେକର୍ଡର ନେଇଥିଲେ । କିଛି ସମୟ ନୀରବରେ କଟିଗଲା । ମୁଁ ଭାବିଲି, ଦିବ୍ୟ ଅନୁଭୂତି ଓ ଅବର୍ଣ୍ଣନୀୟ ପୁଲକ ସମ୍ଭବତଃ ସେମାନଙ୍କୁ ନିର୍ବାକ୍ କରିଦିଏ । କେଉ ଭାଷାରେ କିଏ ଅବା ବର୍ଣ୍ଣନା କରିପାରିବ ସେ ଅପୂର୍ବ ଅନୁଭୂତି ! ବର୍ଣ୍ଣନା କରିବାର ସେ ଭାଷା କ'ଣ ସୃଷ୍ଟି ହେଇଛି ଏ ବିଶ୍ୱରେ ! ଏହା ତ ଗୁପ୍ତ ସେବା । ଗୋପନ ରଖାଯାଏ ଏ ସକଳ ଅନୁଭୂତି ।

ତଥାପି ସେହି ବର୍ଷୀୟାନ୍ ସେବକ ଭାବବିଭୋର ହୋଇ କହି ଚାଲିଲେ ତାଙ୍କର ଅନୁଭବ ସବୁକୁ । ସଙ୍କେତାତ୍ମକ ଢଙ୍ଗରେ କହି ଚାଲିଥିଲେ ସେ । ଯେତିକି କଥା ସେ କହିଲେ, ଆମେ ସେତକ ରେକର୍ଡ କରି ଆଣି ଗଡ଼ ଜିଣିଲା ଭଳି ଫେରିଆସିଲୁ । ଧାରାବିବରଣୀ ପ୍ରଦାନ ବେଳେ ରଥଯାତ୍ରା ଦିନ ସେଥିରୁ କିଛି ଅଂଶ ପ୍ରସାର କରିବାର ଅଭିଳାଷ ସବୁରି ମନରେ ଥାଏ । କେଉଁ ଅଂଶଟିକୁ ପ୍ରସାର କରାଯିବ ତାହା ସ୍ଥିର କରିବା ପାଇଁ ଟେପ୍‌କୁ ବଜାଇ ଦେଖିଲୁ । ଦେଖିଲୁ ସେଥିରୁ ଗୋଟିଏ ହେଲେ ବି ଶବ୍ଦ ରେକର୍ଡ ହୋଇ ନାହିଁ ।

ମୁଁ ଆଶ୍ଚର୍ଯ୍ୟ ଚକିତ ହେଇଗଲି । ଭାବିଲି, ମହାପ୍ରଭୁଙ୍କ ଗୁପ୍ତ ସେବା ପ୍ରଘଟ କରିବାକୁ ମଣିଷର ସାମର୍ଥ୍ୟ କାହିଁ ? ଚେଷ୍ଟାକରି ମଧ୍ୟ ବିଫଳ ହେବା ଏକ ଦୈବୀ ଅଭିପ୍ରେତ କର୍ମ । କୋଟି ଜଗତର ଲୀଳାନାୟକ ସେ । ସେ ଇଚ୍ଛା ନ କରିବା ପର୍ଯ୍ୟନ୍ତ କିଛି କଥା ସଂଘଟିତ ହୁଏ ନାହିଁ । ତାଙ୍କ ଦିବ୍ୟ ଇଚ୍ଛାର ଜୟ ହେଉ ।

ରଥଯାତ୍ରା ଶ୍ରୀଜଗନ୍ନାଥଙ୍କର ଏକ ମାନବବାଦୀ ପର୍ବ । ଦୁର୍ଲଭ ମାନବ ଜୀବନର ମଙ୍ଗଳ ବିଧାନ ହିଁ ଜଗନ୍ନାଥଙ୍କର ସକଳ ସାମାଜିକ ତଥା ଆଧ୍ୟାତ୍ମିକ ପର୍ବର ମୂଳ ଲକ୍ଷ୍ୟ । ଏଇଥିପାଇଁ ଶ୍ରୀଜଗନ୍ନାଥ ଶବର କୁଳର ବୃକ୍ଷଦେବତା ବା ଦାରୁଦେବତାରୁ ଶ୍ରୀକ୍ଷେତ୍ରକୁ ଆସି ସମଗ୍ର ଓଡ଼ିଆ ଜାତିର ରାଷ୍ଟ୍ର ଦେବତା ହୋଇଯାଇଛନ୍ତି । ସେ କୌଣସି ଗୋଟିଏ ଧର୍ମ ସଂପ୍ରଦାୟର ବା ଗୋଷ୍ଠୀର ଦେବତା ନ ହୋଇ, ହୋଇଯାଇଛନ୍ତି ସମଗ୍ର ମାନବ ଜାତିର ପ୍ରିୟ ପୂଜ୍ୟଦେବତା । ନାନା ଧର୍ମର, ନାନା ମତର ବିଚିତ୍ର ବର୍ଣ୍ଣରେ ସେ ରଂଜିତ ।

ଜଗନ୍ନାଥଙ୍କ ଧାମ ବୌଦ୍ଧମାନଙ୍କ ଦୃଷ୍ଟିରେ ଦନ୍ତପୁରୀ । ସେମାନଙ୍କ ତ୍ରିପିଟକ ଏଠାରେ ତ୍ରିମୂର୍ତ୍ତିର ରୂପ ଧାରଣ କରିଛନ୍ତି । ଜଗନ୍ନାଥଙ୍କ ନବମ ଅବତାର ବୁଦ୍ଧ । ବୌଦ୍ଧମାନଙ୍କର ଜାତି ବର୍ଣ୍ଣ ବିଚାରହୀନତା ଭାବ ଶ୍ରୀକ୍ଷେତ୍ରର ଆଦର୍ଶ । ତେଣୁ କୁହାଯାଏ, 'ପୁରୀରେ ଜାତି ନାଇଁ, କଟକରେ ରାତି ନାଇଁ ।' ସେଇଭଳି ଜଗନ୍ନାଥ ହିଁ ଜୀନନାଥ । ଜୈନ ଧର୍ମର ଆଦିନାଥ । ତାଙ୍କ କେବଳୀ ଭାବରୁ କୈବଲ୍ୟ ଶବ୍ଦର ସୃଷ୍ଟି । ଶ୍ରୀମନ୍ଦିରର ବାଇଶି ପାହାଚର ପରିକଳ୍ପନା ଜୈନମାନଙ୍କର ବାଇଶି ତୀର୍ଥଙ୍କରଙ୍କ ପ୍ରତୀକ । ସେ ପୁଣି ମୁସଲମାନମାନଙ୍କ ଧର୍ମର ଅର୍ଦ୍ଧଚନ୍ଦ୍ର ଓ ବିନ୍ଦୁକଳା ସଙ୍କେତ ବହନକାରୀ ନିରାକାର ସତ୍ତା । ସେ ପ୍ରତୀକ ରୂପୀ ଆଦି–ଖ୍ରୀଷ୍ଟ–କ୍ରୁଶର ସ୍ୱରୂପ । ତା'ଛଡ଼ା ଭାରତ ଭୂଖଣ୍ଡରେ ପୂଜିତ ପଞ୍ଚଦେବ (ଗଣେଶ, ନାରାୟଣ,

ରୁଦ୍ର, ଅମ୍ବିକା ଓ ଭାସ୍କର)ଙ୍କ ସମାହାର ସ୍ମାର୍ତ୍ତ ରୂପେ ସେ ଆରାଧିତ । ସେ ସର୍ବଧର୍ମ ସମନ୍ବୟର ପ୍ରତୀକ ।

ସମଗ୍ର ଭାରତଭୂମିରେ ଚାରୋଟି ପ୍ରଧାନ ତୀର୍ଥକ୍ଷେତ୍ର ଚାରିଧାମ ରୂପେ ସୁବିଦିତ । ରାମନାଥ, ଦ୍ୱାରିକାନାଥ, ବଦ୍ରିନାଥ ଓ ଜଗନ୍ନାଥ– ଆଧ୍ୟାତ୍ମିକ ଚେତନାର ଉତ୍ତରଣ କ୍ଷେତ୍ର । ସେହି ଭାବନାର ପ୍ରତୀକ ସ୍ୱରୂପ ଜଗନ୍ନାଥଙ୍କ ଶ୍ରୀମନ୍ଦିରର ଚାରିଦ୍ୱାର–ଚାରିବେଦ–ଚାରିମାର୍ଗ । ମଣିଷ ପଶୁ ପ୍ରବୃତ୍ତିକୁ ପରିହାର କରିବା ପାଇଁ ଚାରିଟି ଶ୍ରେଷ୍ଠ ପଶୁଙ୍କ ନାମରେ ଏହି ଚାରିଦ୍ୱାର ନାମିତ । ମନ୍ଦିରର ପୂର୍ବଦ୍ୱାର–ସିଂହଦ୍ୱାର, ପଶ୍ଚିମଦ୍ୱାର–ବ୍ୟାଘ୍ରଦ୍ୱାର, ଦକ୍ଷିଣଦ୍ୱାର–ଅଶ୍ୱଦ୍ୱାର ଓ ଉତ୍ତରଦ୍ୱାର–ହସ୍ତୀଦ୍ୱାର ନାମରେ ପରିଚିତ । ସକଳ ଧର୍ମ, ସକଳ ବର୍ଣ୍ଣ ଓ ସକଳ ଜାତିର ମଣିଷଙ୍କୁ ମୁକ୍ତ ଦର୍ଶନ ଦେବାପାଇଁ, ସେହି ଜ୍ୟୋତିର୍ମୟ ନିରଂଜନ, ପ୍ରଣବସ୍ୱରୂପ ଶ୍ରୀଜଗନ୍ନାଥ–ନିଜର ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ବିମଣ୍ଡିତ ବଡ଼ଦେଉଳରୁ ଓହ୍ଲାଇ ଆସନ୍ତି ବଡ଼ଦାଣ୍ଡକୁ । ବିଶ୍ୱ ଧର୍ମ ଇତିହାସରେ ଏହା ବିରଳ ଉଦାହରଣ ।

ଜଗନ୍ନାଥଙ୍କ ପାକଶାଳା ବଡ଼ ବିଚିତ୍ର । ପ୍ରତିଦିନ ଦେଉଳ ପୁରୋହିତ ପାକଶାଳାରେ ପ୍ରବେଶ କରି ସହସ୍ର ଆହୂତି ଦେଇ ବୈଷ୍ଣବାଗ୍ନିଙ୍କୁ ଆବାହନ କରନ୍ତି । ପାତ୍ର ସଂସ୍କାର ଓ ଦ୍ରବ୍ୟ ସଂସ୍କାର ପରେ ସୂପକାରମାନେ ରନ୍ଧନ କାର୍ଯ୍ୟ ଆରମ୍ଭ କରନ୍ତି । ଶ୍ରୀମନ୍ଦିରର ପାକଶାଳା ହେଉଛି ପୃଥିବୀର ସର୍ବ ବୃହତ୍ ପାକଶାଳା । ମହାପ୍ରଭୁଙ୍କ ନୀତିନିର୍ଘଣ୍ଟ ଅନୁଯାୟୀ ଏହି ପାକଶାଳାରେ ଆବଶ୍ୟକ ଭୋଗମାନ ପ୍ରସ୍ତୁତ ହୁଏ । ଏହା ବିଶ୍ୱର ଅତ୍ୟନ୍ତ ସ୍ୱାସ୍ଥ୍ୟକର ପ୍ରସାଦ ବା ଖାଦ୍ୟ ପଦାର୍ଥ । ଏହି ପାକଶାଳା ୩୨ଟି କୋଠରି ବିଶିଷ୍ଟ । ଏଠାରେ ୭୫୨ଟି ଚୁଲି ଅଛି । ପ୍ରତି ଚୁଲିର ଝିଙ୍କା ଦେହରେ ଛଅଟି ଲେଖାଁ ହାଣ୍ଡି ଓ ତାହାର ମଝି ଫାଙ୍କରେ ତିନୋଟି ହାଣ୍ଡି ବସେ । ଏ ନଅଟି ହାଣ୍ଡି ବ୍ୟତୀତ ଗୋଟେ ଅହିଆରେ ବାରଟି ହାଣ୍ଡି ବସେ । ବାମ୍ଫରେ ସିଦ୍ଧ ହେବା ପ୍ରଣାଳୀ ହେତୁ ସବା ଉପର ହାଣ୍ଡିର ଭୋଗ ଆଗ ପ୍ରସ୍ତୁତ ହୁଏ ।

କେବଳ ସୁଆର ସଂପ୍ରଦାୟର ଲୋକେ ରୋଷେଇ କରନ୍ତି । ପ୍ରତିଦିନ ପ୍ରାୟ ୪୦୦ ସୂପକାର ଏଠି ରନ୍ଧନ କାର୍ଯ୍ୟ କରନ୍ତି ଏବଂ ତାଙ୍କୁ ଜିନିଷପତ୍ର ଯୋଗାଇ ଦେବାଲାଗି ୨୦୦ ଜଣ ଯୋଗାଣିଆ ଥାଆନ୍ତି । ସୁଆରମାନେ ପ୍ରତିଦିନ ନୂଆ ପଇତା ଓ ଓଦା ଗାମୁଛା ପିନ୍ଧି ରୋଷଘରକୁ ଯାଆନ୍ତି । ତେବେ ଶ୍ରୀମନ୍ଦିରର

ରୀତିନୀତି ଓ ଶ୍ରୀଜଗନ୍ନାଥଙ୍କ ବିଶେଷତ୍ୱ ଆମ ସାଂସ୍କୃତିକ ଜୀବନଧାରାର ମହାନ୍ ବିଭବ । ଏହାକୁ ସାମଗ୍ରିକ ଭାବେ ଉପସ୍ଥାପନ କରିବା ଅସମ୍ଭବ ବ୍ୟାପାର । ତା' ଭିତରକୁ ପଶିଗଲେ ବାହାରିବା କାଠିକର ପାଠ ।

ବୋଧେ ଭାବ ପ୍ରବଣତାବଶତଃ ସେ ଦୁନିଆ ଭିତରକୁ ପଶିଯାଇଥିଲି । ଅବଶ୍ୟ ଏକଥା ସତ– ଜଗନ୍ନାଥ ଚିନ୍ତାଚେତନା ମୋ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ମୋ ବୃତ୍ତି ଓ ପ୍ରବୃତ୍ତି ସହିତ ସେ ଆକସ୍ମିକ ଭାବେ ଯୋଡ଼ି ହୋଇଗଲେ ଏବଂ ଯୋଡ଼ି ହୋଇ ରହିଗଲେ ସାରା ଜୀବନ ପାଇଁ । କେବଳ ଗୋଟାଏ ଧାର୍ମିକ ଚିତ୍ତବୃତ୍ତି ହୋଇ ନୁହେଁ, ବରଂ ବ୍ୟାପକ ସାଂସ୍କୃତିକ ଚେତନାର ବୋଧିଦ୍ରୁମ ପାଲଟିଗଲେ । ତେଣୁ ଜଗନ୍ନାଥ ମୋ ଜୀବନର ଉଠପଡ଼ ପ୍ରବାହ ଭିତରେ ହୋଇଗଲେ ଏକ ଅଭିନ୍ନ ସତ୍ତା ।

ଅନେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସହ ଜଗନ୍ନାଥଙ୍କ ରଥଯାତ୍ରାର ଧାରା ବିବରଣୀ ଦେଇଚି । ଆଜି ଜଣକଙ୍କର ସ୍ମୃତି ମତେ ବ୍ୟଥିତ କରୁଚି । ସେ ମୋର କନିଷ୍ଠ ସହଯୋଗୀ ତୀର୍ଥାନନ୍ଦ ମିଶ୍ର । ନିକଟରେ ସେ ଆମ ଗହଣରୁ ସେପୁରକୁ ଚାଲିଗଲା । ସେ ମୋ ସାଙ୍ଗରେ ବେତାରରେ ଓ ଦୂରଦର୍ଶନରେ ରଥଯାତ୍ରାର ଧାରା ବିବରଣୀ ପ୍ରଦାନ କରିଚି ଅନେକ ଥର । ବେତାର ହେଉ ବା ଦୂରଦର୍ଶନ ହେଉ– ମୁଁ କେବଳ ଗୁଣ୍ଡିଚା ଦିନ ଧାରା ବିବରଣୀ ଦେବାକୁ ଯାଏ । ବାହୁଡ଼ା ଓ ସୁନାବେଶ ଆଦିକୁ ଯାଏ ନାହିଁ । ଏ ମୋର ବ୍ୟକ୍ତିଗତ ବିଶ୍ୱାସ ଓ ଧର୍ମସଂକଳ୍ପ । ତୀର୍ଥାନନ୍ଦ ଥରେ ମତେ ପଚାରିଥିଲା– ସାର୍, ଆପଣ ତ ଗୁଣ୍ଡିଚା ଛଡ଼ା ଅନ୍ୟ ଦିନ ଯାଆନ୍ତି ନାହିଁ ବିବରଣୀ ଦେବାକୁ । ମୁଁ ଯିବି କି ନାହିଁ, ମତେ ଟିକେ ଉପଦେଶ ଦିଅନ୍ତୁ ।

ମୁଁ ତାକୁ ବୁଝାଇ କହିଥିଲି– ଶୁଣ, ତୁମର ଯଦି ମନରେ ଦୃଢ଼ ସଂକଳ୍ପ କିଛି ରଖି ନାହଁ ତେବେ ବାହୁଡ଼ା ଓ ସୁନାବେଶ ଆଦିକୁ ଯାଅ । ତମେମାନେ ଯଦି ନ ଯିବ, ସେ କାର୍ଯ୍ୟକ୍ରମ ସଫଳ ହେବ କେମିତି ?

ମୁଁ ଦେଖିଲି, ସେ ତାହାପରେ ବିଭିନ୍ନ ଚାନେଲ୍‌ରେ ଅଲଗା ଅଲଗା ଦିନ ଧାରା ବିବରଣୀ ପ୍ରଦାନ କରି ଚାଲିଲା ସଫଳତାର ସହିତ ।

ଥରକର କଥା । ଦୁହେଁ ପୁରୀ ଯାଇଥିଲୁ ରଥଯାତ୍ରାକୁ । ପୂର୍ବଦିନ ରାତି । ପାରିବାରିକ ଘନିଷ୍ଠତା ଯୋଗୁଁ ପୁରୀରେ ମୁଁ ଅଧ୍ୟାପିକା ତୁଳସୀ ଓଝାଙ୍କ ଘରେ ରହିଲି । ତୀର୍ଥାନନ୍ଦ ମଧ୍ୟ ତୁଳସୀର ପୂର୍ବ ପରିଚିତ । ନିଜ ଗାଁ–ପାଖ ଲୋକ ।

ଦୁହେଁ ଏକାଠି ରହିଲୁ ତା' ଘରେ । ସକାଳୁ ଉଠି ନରେନ୍ଦ୍ର କୋଣରୁ ଶ୍ରୀମନ୍ଦିର ଯାଏ ଚାଲି ଚାଲି ଯାଇପାରିବୁ । ରାତିରେ ଖାଇସାରି ଶୋଇବାକୁ ଗଲୁ । ମୁଁ ବିଛଣାରେ ଲମ୍ବିଗଲା ପରେ ଦେଖିଲି, ତୀର୍ଥାନନ୍ଦ ବସି ମୋ ଗୋଡ଼କୁ ଆଉଁସୁଚି ।

ମୁଁ ବାରଣ କଲି ।

ସେ ନମ୍ର ଭାବରେ କହିଲା, ମତେ ଗୁରୁସେବା କରିବାର ଟିକେ ସୁଯୋଗ ଦିଅନ୍ତୁ ।

ମୁଁ ତା'ର ମଥାକୁ ଆଉଁସି ଦେଇ କହିଲି, ଥାଉ, ଯା' ଶୋଇପଡ଼ ।

ଏବେ ତୀର୍ଥାନନ୍ଦ ସବୁଦିନ ପାଇଁ ଶୋଇପଡ଼ିଲା ।

ପ୍ରଭୁ ଜଗନ୍ନାଥ ବୋଧେ ଏବେ ତା' ମଥା ଆଉଁସୁଥିବେ- ମୋର ଏଇ କାମନା ।

ମୋ ଜୀବନର ପ୍ରତିଟି ଛକରେ, ଦୁଃଖରେ ସୁଖରେ, ମୁଁ ତାଙ୍କୁ ହିଁ ଭେଟିଚି । 'ସନ୍ଥ ସାହିତ୍ୟ ଶବ୍ଦକୋଷ' ପ୍ରକାଶ କଲାବେଳେ ସେଇ ଶବ୍ଦ ବ୍ରହ୍ମଙ୍କୁ ମୁଁ ତାକୁ ଉତ୍ସର୍ଗ କରିଛି । 'ଓଡ଼ିଆ ଭାଷାକୋଷ'ର ପ୍ରତିଟି ଖଣ୍ଡ ପ୍ରକାଶିତ ହେଲା ପରେ ପ୍ରଥମ କପିଟି ତାଙ୍କୁ ଭେଟି ଦେବାକୁ ଧାଇଁଛୁ ଶ୍ରୀକ୍ଷେତ୍ର ପୁରୀକୁ । ଅତଏବ ସେ ମୋ ଚେତନାର ଚେତାପୁରୁଷ ।

॥ ପଚିଶି ॥

# ଅକୁହା କଥା : ସାହିତ୍ୟର ଓ ସଂଗଠନର

କିଛି ଅକୁହା କଥା କହିବା ପାଇଁ ଚେଷ୍ଟା କରିଥିଲି ଦଶବର୍ଷ ତଳେ । ତାହା 'ଆତ୍ମଧ୍ୱନି' ନାମରେ ପ୍ରକାଶ ପାଇଥିଲା 'ଅର୍ପିତା' ପତ୍ରିକାରେ । ଶିରୋନାମା ଥିଲା 'ସାହିତ୍ୟ ମତେ ପ୍ରତାରିତ କରିଚି' । ପ୍ରକୃତରେ ସାହିତ୍ୟ କାହାକୁ କେବେ ପ୍ରତାରଣା କରେ ନାହିଁ । ସାହିତ୍ୟ ସମାଜ ଜୀବନର ପ୍ରତିଛବି । ଜୀବନାଚର୍ଯ୍ୟାର ପ୍ରତିଲିପି । ମୋ ଚାରିପଟେ ସମାଜ ଜୀବନରେ ଘଟିଯାଉଥିବା ଅଘଟଣଗୁଡ଼ିକ ମୋ ଆତ୍ମଧ୍ୱନିର ରୂପ ନେଇଥିଲା । ଅତଏବ ଇଏ ପ୍ରତାରଣା ମୋ ସମାଜ ଜୀବନର ।

ଆଜି ବି ସେ ଚିନ୍ତା ଅପରିବର୍ତ୍ତିତ ।
ଆଜି ବି ତାହା ଅକୁହା ବେଦନା ।
ସେଦିନ ମୁଁ କହିଥିଲି–
ଏ ଆତ୍ମଧ୍ୱନି ମୋ ନିଜର ।

ଚାଳିଶ ବର୍ଷରୁ ଊର୍ଦ୍ଧ୍ୱକାଳ ସାହିତ୍ୟ ପ୍ରେମରେ ବୁଡ଼ି ରହିଲି । ବାସ୍ତବ ଜୀବନରେ ଯାହା ହେଇପାରିଲି ନାହିଁ, କରିପାରିଲି ନାହିଁ; ସାହିତ୍ୟ ପୃଷ୍ଠାରେ, ଚରିତ୍ର ମାଧ୍ୟମରେ ତାହା ହେବାର ଓ କରିବାର ପ୍ରୟାସ କଲି । ଏତେ ବର୍ଷ ପରେ ପଛକୁ ଚାହିଁଦେଲା ମାତ୍ରେ, କେଜାଣି କାହିଁକି ଆଜି ମନେହେଉଛି– ସାହିତ୍ୟ ପ୍ରେମ ବୋଧେ ମତେ ପ୍ରତାରିତ କରିଛି । ମୋ ପ୍ରେମକୁ ଏକ ମାନସିକ ବ୍ୟାଧି ଆଖ୍ୟା ଦେଉଛି ।

ସାହିତ୍ୟିକ ବୋଲାଇବାର ଗର୍ବ ଗୌରବ ମତେ ଅନେକଥର ଧିକ୍କାରିଛନ୍ତି । ଜୀବନ ପ୍ରବାହରେ ନାନା ପ୍ରଲୋଭନ ଧରି ଆସିଥିବା ଚକ୍ରାନ୍ତକାରୀଙ୍କ ମାୟାଜାଲରେ ନ ପଡ଼ି ଖସିଯାଇଥିବାରୁ ଯେଉଁ ଆନନ୍ଦ ପାଇଥିଲି, ତାହା ମ୍ଳାନ ହୋଇଯାଉଛି । ମୋ ଭିତରେ ମୁଣ୍ଡ ଟେକି ରହିଥିବା ସାହିତ୍ୟିକ ବଡ଼ପଣ କ୍ରମଶଃ ବାମନାକାର

ହୋଇଯାଉଛି । ଆଜି ଚାରିଆଡ଼େ ସାହିତ୍ୟିକକୁ ସମ୍ମାନ ଓ ପୁରସ୍କାର ନାଁରେ ପରିହାସ ଚାଲିଚି । ସାହିତ୍ୟ ଜଗତକୁ ଭେଜାଲ୍ କରାଯାଉଛି । ପ୍ରକୃତ ବାଘ ଓ ବାଘଛାଲ ଢାଙ୍କି ହୋଇଥିବା ଜୀବକୁ ଚିହ୍ନିବା ସାଧାରଣ ଲୋକଙ୍କ ପକ୍ଷେ କଷ୍ଟକର ହୋଇପଡୁଛି । ନିଜକୁ ବହୁ ଜନ ଆଗରେ ପରିଚିତ କରାଇବା ପାଇଁ ହେଉ କିମ୍ବା ନିଜ ପାରିଲାପଣ ଦେଖାଇବା ପାଇଁ ହେଉ– ଛତୁ ଫୁଟିଲା ଭଳି ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ଗଢ଼ି ଉଠୁଚି/ ମାନପତ୍ର ଉତ୍ତରୀୟ ଦିଆଯାଉଛି/ ଏହି କଳାକର୍ମକୁ ଦରକାର ବେଳେ ସେହି ସେହି ସମ୍ମାନିତ ବ୍ୟକ୍ତିଙ୍କଠାରୁ ବ୍ୟକ୍ତିଗତ କାର୍ଯ୍ୟ ହାସଲ ପାଇଁ ବ୍ୟବହାର କରାଯାଉଛି । ଆଉ କେତେକ ପଦପଦବୀଧାରୀ ବ୍ୟକ୍ତି ବଡ଼ ସାହିତ୍ୟିକ ବୋଲାଇବା ପାଇଁ ଅନ୍ୟଦ୍ୱାରା ସ୍ତୁତି ଲେଖାଇ, ନିଜର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କରାଇ କିମ୍ବା ନିଜେ ଅର୍ଥ ବ୍ୟୟ କରି, ଫୁଲମାଳ କୁଣ୍ଡଳ ଆୟୋଜନ କରି ବୃହତ୍ତର ସମାଜ ମଣିଷଙ୍କ ଆଗରେ ପ୍ରତିଷ୍ଠିତ ହୋଇ ଚାଲିଛନ୍ତି ।

ଏହାଦ୍ୱାରା କାହାର କ'ଣ ଅବା କ୍ଷତି ହେଇଯାଉଛି ? ଯେଉଁ କେତେଜଣ ନେଇ ଆଣି ଥୋଇପାରୁଛନ୍ତି ତାଙ୍କର ଲାଭ ହିଁ ଲାଭ । ତେଣୁ ବହି କିଣିବା, ପଢ଼ିବା ଦିନର ଚାହିଦା କ୍ରମଶଃ କମି କମି ଯାଉଛି । ଏଥିପାଇଁ ଇଲେକ୍‌ଟ୍ରୋନିକ୍ ମିଡ଼ିଆ ଉପରେ ଦୋଷ ଲଦିଦେଇ କେତେକ ଦାୟିତ୍ୱ ମୁକ୍ତହେଇ ବସି ପଡୁଛନ୍ତି । ସେମାନେ ତୁଳନା କରିବାକୁ ଭୁଲି ଯାଉଛନ୍ତି ଯେ ଆମେରିକା ଭଳି ଦେଶରେ ଯେଉଁଠି ଇଲେକ୍‌ଟ୍ରୋନିକ୍ ମିଡ଼ିଆ ସବୁଠୁଁ ବେଶି କାୟା ବିସ୍ତାର କରିଛି, ସେଠି ସାଧାରଣ ଜୀବନୀ ବହିଟିଏ ବାହାରିଲେ ଦିନକ ଭିତରେ ଦୁଇ ଲକ୍ଷ କପି ବିକ୍ରି ହୋଇଯାଉଛି; ଅଥଚ ଆମେ ଏଠି ସାହିତ୍ୟ ବଜାରକୁ ଏକଦମ୍ ଭେଜାଲ୍ ଓ ଆବିଳ କରି ଦେଇଥିବାରୁ ଆମର ଏ ଅବସ୍ଥାକୁ ଦାୟୀ କରି ଯେତେ ଯାହା କହିଲେ ବି, ସେ କଥାକୁ ସମସ୍ତେ ଅସ୍ୱୀକାର କରିଚାଲିଛୁ ।

ଦିନେ ଗୋଟିଏ ଚାଲେଞ୍ଜର ସମ୍ମୁଖୀନ ହୋଇ ସାହିତ୍ୟ ସଂଗଠନରେ ପଶିଥିଲି । 'ସରକାରୀ ଚାକିରିଆ କିଛି କାମ କରିପାରିବେ ନାହିଁ; କେବଳ ପଦପଦବୀ ମଣ୍ଡନ କରି ବସିବେ ।' ଏକଥା ଥିଲା ମୋ ପାଇଁ ଏକ ଆହ୍ୱାନ । ଏ କାର୍ଯ୍ୟରେ ମୁଁ ସଫଳ କି ବିଫଳ ହେଇଚି, ତାହା ଲୋକେ କହିବେ । ମୋର କିନ୍ତୁ ଏବେ ମନେହେଉଚି, ସେଦିନ ସେ ଚାଲେଞ୍ଜକୁ ପିଠିକରି ଚାଲି ଆସିଥିଲେ ଭଲ ହେଇଥାଆନ୍ତା । ନିଜ ପାଇଁ ଏହା ମୋର ଏକ ମସ୍ତବଡ଼ ଭୁଲ ଥିଲା । ନ୍ୟସ୍ତସ୍ୱାର୍ଥରେ

ବାଧା ଦେଇ ମତେ ବହୁ ଯନ୍ତ୍ରଣାର ଶିକାର ହେବାକୁ ପଡ଼ିଲା । ମାନସିକ ଅଶାନ୍ତି ବଢ଼ିଲା । ଛଟପଟ ହେଲି । କିନ୍ତୁ ସେଥିରୁ ମୁକ୍ତିର ବାଟ କେଉଁଠି ?

ଏବେ ପ୍ରତିଦିନ ନୂଆ ନୂଆ ଅନୁଷ୍ଠାନ ଗଢ଼ି ନିଜକୁ ତାହାର ମୁଖିଆ ସଜାଇବାରେ ଅନେକେ ବ୍ୟସ୍ତ । ପୁରୁଣା ଜାତୀୟ ଅନୁଷ୍ଠାନକୁ ବଳିଷ୍ଠ କରିବାରେ କାହାରି ଆଗ୍ରହ ନାହିଁ । ସେକ୍ରେଟାରୀଏଟ୍ କିରାଣିଠାରୁ ଷ୍ଟେସନାରୀ ଦୋକାନୀ ଯାଏ ପ୍ରକାଶକ ଓ ଲେଖକ ପାଲଟିବାର ପ୍ରୟାସ ଅବ୍ୟାହତ । ଏଣେ ବଡ଼ ବଡ଼ ବହି ଦୋକାନୀ ବହି ବିକ୍ରି ବାଟମାରଣା ହେଇଯାଉଥିବା ଯୋଗୁଁ ହତାଶ । ଭଲ ଲେଖା ପ୍ରକାଶ ପାଇପାରୁନି; ଭେଲ ଲେଖା ଅର୍ଥ ବ୍ୟୟରେ ପ୍ରକାଶିତ ହୋଇ ବଜାରରେ ଧସେଇ ପଶୁଛି- 'ମାଆ ବାକ୍‌ଦେବୀ ! ତୁ ନିଜେ ତୋର ମର୍ଯ୍ୟାଦା ରକ୍ଷା କର !'

ଦିନ ଥିଲା, 'ଇଏ ଜଣେ ସାହିତ୍ୟିକ' ବୋଲି କେହି ପରିଚୟ ଦେଲେ ଗର୍ବ ଲାଗୁଥିଲା । ଯେତେବେଳେ ରାଜନେତାମାନେ ପ୍ରତିଭାକୁ ଅବଜ୍ଞା କରି ଚାଲିଲେ, ଅମଲାତନ୍ତ୍ରୀମାନେ 'ଆମ କଲମ ମୁନରେ ତମ ଭାଗ୍ୟଡୋରୀ ଝୁଲୁଚି' ବୋଲି କହି ଧମକ ଦେଲେ; ସାଧାରଣ ଲୋକେ ଜଣେ ସାହିତ୍ୟିକ ଓ ତାଙ୍କ ଭିତରେ ବିଶେଷ କିଛି ତଫାତ୍ ନାହିଁ ବୋଲି ଭାବିନେଲେ ଏବଂ ସତ୍ ଓ ଅସତ୍ ଯେତେବେଳେ ଏକାକାର ହୋଇଗଲା-

ସେତିକିବେଳେ ତ ଏ ଆତ୍ମଧ୍ୱନି !

ଆଉ ଗୋଟିଏ କଥା ମନେପଡୁଚି ।

ସାହିତ୍ୟ ସେବା କରିବା ବେଳେ ସାହିତ୍ୟ ଅନୁଷ୍ଠାନ ପ୍ରସଙ୍ଗ ଆପଣାଛାଏଁ ଆସିଯାଏ । ସାହିତ୍ୟାନୁଷ୍ଠାନ ନିର୍ଦ୍ଦିଷ୍ଟ ଭାଷାଭାଷୀ ଅଞ୍ଚଳର ଜାତୀୟ ଚେତନା ଜାଗରଣର ଏନ୍ତୁଡ଼ିଶାଳ । କୁଳବୃଦ୍ଧ ମଧୁସୂଦନ ଦାସ ଓ ଭକ୍ତକବି ମଧୁସୂଦନ ରାଓ ଏକଥା ମର୍ମେ ମର୍ମେ ଅନୁଭବ କରିଥିଲେ । ଭକ୍ତକବି ମଧୁସୂଦନ କଟକ ଟ୍ରେନିଂ ସ୍କୁଲରେ 'ସାହିତ୍ୟ ଆଲୋଚନା ସଭା' ବହୁ ପୂର୍ବରୁ ଆରମ୍ଭ କରିଥିଲେ ସୁଦ୍ଧା କୁଳବୃଦ୍ଧଙ୍କ ନେତୃତ୍ୱରେ ତାହା ୧୯୦୩ ମସିହାରେ ଆନୁଷ୍ଠାନିକ ରୂପ ନେଲା । ଉତ୍କଳୀୟ ଭାବଭାବନାର ସାମାଜିକ ଓ ରାଜନୀତିକ ଚେତନା ପ୍ରକାଶ କଲା 'ଉତ୍କଳ ସମ୍ମିଳନୀ' ଏବଂ ସାହିତ୍ୟ ଓ ସଂସ୍କୃତିର ମଞ୍ଚ ହେଲା 'ଉତ୍କଳ ସାହିତ୍ୟ ସମାଜ' ।

ମୁଁ 'ଉତ୍କଳ ସାହିତ୍ୟ ସମାଜ' ସହ ଯୋଡ଼ି ହୋଇଯାଇଥିଲି ।

ସେ ସ୍ମୃତିର ପାଦଚିହ୍ନ ଏବେବି ମନରେ ସଜଳ ।

ଅନାଦି ସାହୁ, ବ୍ରଜମୋହନ ମହାନ୍ତି ଓ ବିଜୟାନନ୍ଦ ସିଂହ ସେ ଆନୁଷ୍ଠାନିକ ସ୍ମୃତିର ଗୋଟିଏ ଗୋଟିଏ ଦର୍ପୀୟାନ ସ୍ମୃତିମୟ ।

ମୁଁ ସ୍ଥିର କରି ନେଇଥିଲି– ସେସବୁ ପୁରୁଣା କଥା ସମୟର ଛାତିରେ ଛାପିହେଇ ରହିଯାଉ । ଲୋକେ ଭୁଲିଯାଆନ୍ତୁ, କିଏ କେବେ କେଉଁ କଥା ଆରମ୍ଭ କରି ଘଟଣା ପ୍ରବାହର ଧାରା କିଭଳି ବଦଳାଇ ଥିଲା । କାରଣ ମୁଁ ଏବେବି ବିଶ୍ୱାସ କରେ– ଅନୁଷ୍ଠାନ ବଡ଼; ଯେଉଁ ଗୁଣ୍ଡୁଚିମୂଷାମାନେ ଟିକେ ଟିକେ ବାଲି ପକାଇବା କାମ କରି ସେତୁବନ୍ଧ ତିଆରି ହେଲାବେଳେ ବାହାବା ନେବାର ପ୍ରୟାସ କରିଛନ୍ତି, ସେମାନେ କସ୍ମିନ୍ କାଳେ ବଡ଼ ନୁହଁନ୍ତି । 'ଉତ୍କଳ ସାହିତ୍ୟ ସମାଜ' ଏକ ମହାନ୍ ଜାତୀୟ ଅନୁଷ୍ଠାନ । ଏହାର ଉତ୍ଥାନ ବା ପତନର ସୂତ୍ରଧର ହୋଇଥିବା ଗୁଣ୍ଡୁଚିମୂଷାମାନେ କିମ୍ବା କଳାପାହାଡ଼ମାନେ କେବେ ବଡ଼ ନୁହନ୍ତି । ସମୟର ରଥଚକ ତଳେ ସବୁ ପେଷିହୋଇ ଧୂଳି ହୋଇଯିବେ । ତାଙ୍କୁ କେହି ମନେ ରଖିବେନି । କେବଳ, ମନେରହିବ ଏଇ ପବିତ୍ର ଅନୁଷ୍ଠାନ– 'ଉତ୍କଳ ସାହିତ୍ୟ ସମାଜ' ।

ଅନ୍ନଦାବାବୁଙ୍କୁ ଧନ୍ୟବାଦ ଦେବି, କି ବିରକ୍ତି ପ୍ରକାଶ କରିବି, ମୁଁ ଜାଣିପାରୁନି । ସାହିତ୍ୟ ସମାଜ ସହିତ ସଂପୃକ୍ତ ହୋଇ ମୁଁ ଯାହା ଯାହା ପଦକ୍ଷେପ ନେଇଚି ତାହାର ଏକ ସଂକ୍ଷିପ୍ତ ଆକଳନ କରିବା ପାଇଁ ସେ ମତେ ବାଧ କଲେ । ତାଙ୍କ ଅନୁରୋଧରେ କିମିଆଁ ଥିଲା । ମୁଁ ମୋର ପୂର୍ବ ନିଷ୍ପତ୍ତି ବଦଳାଇଲି । ମୋର ଅନେକ ନାସ୍ତିବଚନ ପରେ ସେ ନଛୋଡ଼ବନ୍ଧା । ଶେଷରେ ରାଜି ହେଲି । ସେକଥା କଲମ ଧରି ଲେଖିବାକୁ ଯିବାବେଳେ ସ୍ମୃତିମାନେ ଘନ ବରଫ ତରଳିଲା ଭଳି ମୋ ଆଗରେ ବିଗଳିତ ହୋଇ ଉଠୁଛନ୍ତି । ଲେଖିବି କୋଉ କଥା, ପୁଣି କୋଉଠୁ ଆରମ୍ଭ କରିବି !

କଲେଜରେ ପାଠ ପଢ଼ିଲାବେଳେ ବହୁବାର 'ଉତ୍କଳ ସାହିତ୍ୟ ସମାଜ'ର ଆଲୋଚନା ସଭାରେ ଯୋଗ ଦେଇଛି । ପୂର୍ବ ପିଢ଼ିର ମହାନ୍ ସାହିତ୍ୟ ସାଧକମାନଙ୍କର ଚମତ୍କାର ଅଭିଭାଷଣମାନ ଶୁଣିଚି । ସେମାନଙ୍କ ସହିତ ମିଶି, ଆଲୋଚନା କରି ନିଜକୁ ଧନ୍ୟ ମନେକରିଚି । କାଳିନ୍ଦୀଚରଣ ପାଣିଗ୍ରାହୀ, ରାଧାମୋହନ ଗଡ଼ନାୟକ, ଉଦୟନାଥ ଷଡ଼ଙ୍ଗୀ, ଅନନ୍ତ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜୀ, ହରିହର ମହାପାତ୍ର, ସଦାଶିବ ମିଶ୍ର, କୁଞ୍ଜବିହାରୀ ଦାଶ, ଲକ୍ଷ୍ମୀଧର

ନାୟକ, ନବକୁମାର ଦାସ ଆଦି ଅନେକ ସାରସ୍ୱତ ପ୍ରତିଭାଙ୍କ ମିଳନ ପୀଠ ଇଏ । ଅନେକ ଥର ଭାବିଚି– ଏମାନେ ହେଲେ ସରସ୍ୱତୀଙ୍କ ବରପୁତ୍ର; ବହୁ ଜ୍ଞାନ ଗୁଣରେ ଗରୀୟାନ୍ । ପୂର୍ବଜନ୍ମର ସୁକୃତ ଥିଲେ ଏମାନଙ୍କ ସଂସ୍ପର୍ଶରେ ଆସିହେବ ।

ସେ ସୁଯୋଗ ଜୁଟିଲା । ଡଃ କୁଞ୍ଜବିହାରୀ ଦାଶଙ୍କ ପ୍ରସ୍ତାବକ୍ରମେ ମତେ ସାହିତ୍ୟ ସମାଜର ଆଜୀବନ ସଭ୍ୟ କରି ନିଆଗଲା ୧୯୬୮ ମସିହାରେ । ସଭାସମିତିରେ ଯୋଗ ଦେବା ପାଇଁ ନୈତିକ ଅଧିକାର ଆସିଗଲା । ମନରେ ପ୍ରଚୁର ଆନନ୍ଦ । ମାତ୍ର ୧୯୬୯ ମସିହାର ଶେଷ ଭାଗରେ ଅଧାପକ ଭାବେ ଯୋଗ ଦେଲି ରାଜେନ୍ଦ୍ର କଲେଜ, ବଲାଙ୍ଗିରରେ । ଓଡ଼ିଶାର ବିଭିନ୍ନ କଲେଜରେ ଅଧାପନା କରି ପ୍ରାୟ ଦଶ ବର୍ଷ ପରେ ମୋର ପ୍ରିୟ କଟକ ସହରକୁ ଫେରିଆସିଲା ପରେ ମୁଁ ଦିନେ ଜାଣିବାକୁ ପାଇଲି– ମୁଁ ଆଉ ସାହିତ୍ୟ ସମାଜର ସଭ୍ୟ ନାହିଁ । ମତେ ପୁଣି ଥରେ ସଭ୍ୟ ହେବାକୁ ପଡ଼ିଲା । କାରଣ ସେତେବେଳେ ସଭ୍ୟ ପଞ୍ଜୀକରଣର ବିଧିବଦ୍ଧ ରେକର୍ଡ କିଛି ରହୁ ନ ଥିଲା । କିଛି ବର୍ଷ ପରେ ମୁଁ ଏକାଧିକବାର କାର୍ଯ୍ୟ ନିର୍ବାହିକା ସମିତିର ସଦସ୍ୟ ହେଲି । ସଭ୍ୟ ତାଲିକାର ବିଧିବଦ୍ଧ ପଞ୍ଜୀକରଣ ପାଇଁ ପ୍ରସ୍ତାବ ଦେଲି । ପ୍ରସ୍ତାବ ଗୃହୀତ ହେଲା; କିନ୍ତୁ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ଯୋଗ ବାଟ କଢ଼େଇ ନିଏ । ଡଃ ବ୍ରଜମୋହନ ମହାନ୍ତିଙ୍କ ପ୍ରେରଣାରେ ଶ୍ରୀ ଅନାଦି ସାହୁ ସଭାପତି ହେଲେ ଏବଂ ମୁଁ ସାଧାରଣ ସଂପାଦକ ହେଲି । ବ୍ରଜବାବୁ ଉପସଭାପତି ହେଲେ । ସେତେବେଳେ ଭାରି ସମାଲୋଚନା ହେଲା– ଏଗୁଡ଼ାକ ସରକାରୀ ଚାକିରିଆ । ଖାଲି ଗାଦି ମାଡ଼ି ବସିବେ । କାମ ଘରେ ଶୂନ । ଆମେ ଏହାକୁ ଏକ ଚାଲେଞ୍ଜ ଭାବିଲୁ । କିଛି କରି ଦେଖାଇବାର ହନୁମାନ ଆମ ମନ ଭିତରେ ଡିଆଁ ମାରିଲା । ଆରମ୍ଭ ହେଲା ନବୀକରଣର ପର୍ବ । ପୁରୁଣା ଚଉକି ମରାମତି ଓ ରଙ୍ଗକରା କାମ; ବୃକ୍ଷରୋପଣ; ବରପୁତ୍ରମାନଙ୍କର ପ୍ରତିମୂର୍ତ୍ତି ଉପରେ ଛାତ ଓ ଆଲୋକ ସଜ୍ଜା; ଏହାରି ଭିତରେ ତିନି ବର୍ଷ ଚାଲିଗଲା । ଅନାଦିବାବୁ ସଭାପତି ପଦରୁ ବିଦାୟ ନେଲେ । ପରେ ପରେ ବ୍ରଜମୋହନ ମହାନ୍ତି ସଭାପତି ହେଲେ । ବିକାଶ କାମ ସେଇଭଳି ଅବ୍ୟାହତ ରହିଲା । ସଭ୍ୟ ପଞ୍ଜୀକରଣ କାମ ବିଧିବଦ୍ଧ ଭାବେ କରାଗଲା । ସଭ୍ୟମାନଙ୍କର ଏକ ସ୍ଥାୟୀ ସଦସ୍ୟ ସଂଖ୍ୟା ଓ ତା'ର କ୍ରମ ଅନୁସରଣ କରାଗଲା । ତୈଳଚିତ୍ରମାନଙ୍କର ଦାନକାରୀ ବ୍ୟକ୍ତି,

ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାନିତ ହେବା ତାରିଖ ଓ କ୍ରମାଙ୍କ ମଧ୍ୟ ଅନୁସୃତ ହେଲା । ପ୍ରତି ତିନି ବର୍ଷରେ ନିର୍ବାଚନ କରାଗଲା । ପ୍ରାର୍ଥୀପତ୍ର ଦାଖଲ, ବାଲଟ୍ ପେପର୍ ପ୍ରସ୍ତୁତି ସହିତ ନୂତନ ନିର୍ବାଚନ ଧାରା ଅନୁସୃତ ହେଲା । ସମ୍ବିଧାନ ପ୍ରତି ବଶମ୍ବଦତା ପ୍ରକାଶ ପାଇଲା ।

ଅନୁଷ୍ଠାନର ଆରମ୍ଭରୁ ଆଜିଯାଏ ପଦାଧିକାରୀମାନଙ୍କର ନାମଫଳକ କ୍ରମ ପ୍ରସ୍ତୁତ କରାଯାଇ କାର୍ଯ୍ୟାଳୟରେ ସ୍ଥାନିତ କରାଗଲା । ଅନାଦିବାବୁ ସଭାପତି ଥିବାବେଳେ ଆମେ ଏକ ସାରସ୍ୱତ ସମ୍ମାନ ପରଂପରା ଆରମ୍ଭ କରିଥିଲୁ । ଉତ୍କଳ ରତ୍ନ, ଗଙ୍ଗାଧର କବିତା ସମ୍ମାନ, ଫକୀରମୋହନ ଗଳ୍ପ ସମ୍ମାନ, ରାମଚନ୍ଦ୍ର ମିଶ୍ର ନାଟ୍ୟସମ୍ମାନ ଆଦି ମର୍ଯ୍ୟାଦାଜନକ ସମ୍ମାନ ଓଡ଼ିଶାର ସାଂସ୍କୃତିକ ଦିଗ୍‌ବଳୟକୁ ଉଦ୍‌ଭାସିତ କଲା । ମେ ମାସ ସାତ ତାରିଖକୁ 'ପ୍ରତିଷ୍ଠା ଦିବସ' ରୂପେ ପାଳନ କରାଯିବାର ଧାରା ପ୍ରଚଳିତ ହେଲା । ଅନୁଷ୍ଠାନର ପୁରାତନ ରେକର୍ଡରୁ ଏହା ସଂଗ୍ରହ କରାଯାଇ ପାଳିତ ହେବାକୁ ଲାଗିଲା । ବିଶିଷ୍ଟ ଲେଖକ ଶ୍ରୀଧର ଦାସଙ୍କ ପରିବାର ତରଫରୁ ଯୋଗାଇ ଦିଆଯାଇଥିବା ପାଣ୍ଠିରେ ନିର୍ମିତ ହେଲା 'ଶ୍ରୀଧର ପାଠଘର' । ଗୋବିନ୍ଦ ଚନ୍ଦ୍ର ପାତ୍ରଙ୍କ ଅନୁଦାନ ତରଫରୁ 'ମଧୁସୂଦନ ପାଠାଗାର' ଅପର ପାର୍ଶ୍ୱରେ ତିଆରି କରାଗଲା କେତୋଟି ଦୋକାନ ଘର । ପୁରୁଣା କାଠ ଚଉକି ସହିତ କିଛି ପ୍ଲାଷ୍ଟିକ ଚୌକି ଶ୍ରୀରାମଚନ୍ଦ୍ର ଭବନର ଶୋଭାବର୍ଦ୍ଧନ କଲା । ଏସବୁ ସତ୍ତ୍ୱେ ଶ୍ରୀରାମଚନ୍ଦ୍ର ଭବନର କେତୋଟି ସଂଲଗ୍ନ କୋଠରି ଜବର ଦଖଲରେ ଥିଲା । ତାକୁ ମୁକ୍ତ କରିବା ଆମ ପାଇଁ କାଠିକର ପାଠ ହୋଇପଡ଼ିଥିଲା । ତାହା ବି ସମ୍ଭବ ହେଲା ।

ପ୍ରତିବର୍ଷ ଡିସେମ୍ବର ଓ ଜାନୁୟାରୀ ମାସ ବେଳକୁ ଆମେ ତିନି ଦିନ ବ୍ୟାପୀ ପାଲା ପରିବେଷଣ କରି ସ୍ଥାନୀୟ ଲୋକଙ୍କର ପ୍ରୀତିଭାଜନ ହୋଇପାରିଥିଲୁ । ପାଲାକାରମାନଙ୍କୁ ପ୍ରୋତ୍ସାହନ ପ୍ରଦାନର ବ୍ୟବସ୍ଥା କରିପାରିଥିଲୁ । ଓଡ଼ିଶାର ଉପାନ୍ତ ଅଞ୍ଚଳରେ କେତୋଟି ସାରସ୍ୱତ ସମ୍ମେଳନ କରି ସ୍ଥାନୀୟ ଜନସାଧାରଣଙ୍କ ଅନୁଷ୍ଠାନ ପ୍ରତି ମନୋଭାବ ଜାଣିପାରିଥିଲୁ । ଦୁଇଥର ସାଧାରଣ ସଂପାଦକର କାର୍ଯ୍ୟକାଳ ପରେ ମୁଁ ଦାୟିତ୍ୱରୁ ଅବ୍ୟାହତି ନେଲି । ଅବଶ୍ୟ ମୁଁ ଜାଣି ନ ଥିଲି, ମୋର ଏ ଅବ୍ୟାହତି ଥିଲା ମାତ୍ର ତିନି ବର୍ଷ ପାଇଁ । ଭିନ୍ନ ଦାୟିତ୍ୱରେ ରହି ଅନୁଷ୍ଠାନର ଶତବାର୍ଷିକୀ ଉତ୍ସବ ପାଳନ କରିବା ଏକପ୍ରକାର ସ୍ଥିର ନିର୍ଦ୍ଦିଷ୍ଟ ହୋଇଥିଲା ।

ବ୍ରଜମୋହନ ମହାନ୍ତି ପୁଣିଥରେ ସଭାପତି ଦାୟିତ୍ୱ ନେଇ ଏ କାର୍ଯ୍ୟ ସଂପାଦନ କରିବା ପ୍ରାୟତଃ ସ୍ଥିର ହୋଇସାରିଥିଲା । ମାତ୍ର ତାଙ୍କ ସ୍ୱାସ୍ଥ୍ୟଗତ କାରଣରୁ ସେ ଓହରିଗଲେ ଏବଂ ମତେ ସଭାପତି ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିଲା । ତୀବ୍ର ପ୍ରତିଯୋଗିତାରେ ବିପୁଳ ଭୋଟରେ ସଭାପତି ନିର୍ବାଚିତ ହେଲି ।

ମୋର ମନେହେଉଛି– 'ସାହିତ୍ୟ ସମାଜ' ଇତିହାସରେ ଏହି ସମୟ ଖଣ୍ଡ ସବୁଠାରୁ ଘଟଣାବହୁଳ ଏବଂ ସଂଘର୍ଷ ପୂର୍ଣ୍ଣ ଥିଲା । ଶତାବ୍ଦୀ ଭବନ ନିର୍ମିତ ଓ ଉଦ୍‌ଘାଟିତ ହେଲା । ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାନିତ ତୈଳଚିତ୍ରଗୁଡ଼ିକ ବିଷୟରେ ଏକ ଉଲ୍ଲେଖନୀୟ ଗ୍ରନ୍ଥ 'ଚିତ୍ର ଚରିତ' ପ୍ରକାଶିତ ହେଲା । ବହୁ ଆୟାସସାଧ୍ୟ ଏହି କାର୍ଯ୍ୟ ସଂପାଦନା ମୁଁ କରିଥିଲେ ମଧ୍ୟ ଏହାର ପିତୃତ୍ୱକୁ ନେଇ ଅଯଥା ଦ୍ୱନ୍ଦ୍ୱ ଉଠାଇଥିଲେ କେଇଟି ଲୋକ । ନିଜର ପ୍ରାଧାନ୍ୟ ଜାହିର କରିବା ପାଇଁ କେଇଜଣ କୋର୍ଟ କଚେରିକୁ ଗଲେ । ଅଥଚ ସୁଦକ୍ଷ ସାଧାରଣ ସଂପାଦକ ଡଃ ବିଜୟାନନ୍ଦ ସିଂହ ଓ କାର୍ଯ୍ୟ ନିର୍ବାହିକା ସମିତିର ବରିଷ୍ଠ ସଦସ୍ୟମାନଙ୍କ ସହଯୋଗରେ 'ଶତାବ୍ଦୀ ଭବନ' ମୁଣ୍ଡ ଟେକିଲା । ଓଡ଼ିଶାର ଅଧିକାଂଶ ଜିଲାରେ, କଲିକତାରେ, ଶାନ୍ତି ନିକେତନରେ, ଝାଡ଼ଖଣ୍ଡରେ ଖୁବ୍ ସଫଳ ସାରସ୍ୱତ ସଭାମାନ ଅନୁଷ୍ଠିତ ହେଲା । 'ଶତାବ୍ଦୀ ସ୍ୱାକ୍ଷର', 'ଶତାବ୍ଦୀର ସପ୍ତସାରଥୀ' ଓ 'ଆତ୍ମଜୀବନୀ ପ୍ରସଙ୍ଗ' ଆଦି କେତୋଟି ଉଚ୍ଚକୋଟୀର ଉପାଦେୟ ଗ୍ରନ୍ଥ ପ୍ରକାଶିତ ହେଲା । 'ବୈକୁଣ୍ଠନାଥ ଗ୍ରନ୍ଥାବଳୀ'ର ସାମଗ୍ରିକ ରୂପ ନବକଳେବର ହୋଇ ଆତ୍ମପ୍ରକାଶ କଲା । ଆମଦ୍ୱାରା ପ୍ରଥମ କରି ସଭ୍ୟ–ସଭ୍ୟାମାନଙ୍କର ଫଟୋ ପରିଚୟ ପତ୍ର ପ୍ରଚଳନ ହେଲା । 'କେନ୍ଦ୍ର ସାହିତ୍ୟ ଏକାଡ଼େମୀ' ଓ ଏନ୍.ବି.ଟି.ର କାର୍ଯ୍ୟଧାରା ସହିତ ଏହି ଅନୁଷ୍ଠାନ ଅନୁବନ୍ଧିତ ହେଲା । 'କାଳିନ୍ଦୀ ପାଣିଗ୍ରାହୀ ଜନ୍ମ ଶତବାର୍ଷିକୀ' ଉତ୍ସବ ବର୍ଣ୍ଣାଢ଼୍ୟ ରୀତିରେ ଏଠି ପାଳିତ ହେଲା– ବହୁ ସର୍ବଭାରତୀୟ ବିଶିଷ୍ଟ ସାହିତ୍ୟିକଙ୍କ ଯୋଗଦାନରେ । ବର୍ଣ୍ଣିଳ ସମାରୋହରେ ସରସ୍ୱତୀ ପୁତ୍ର ସଚ୍ଚିଦାନନ୍ଦ ରାଉତରାୟଙ୍କୁ ଶଙ୍ଖ ହୁଳହୁଳି ହରିବୋଲ ନାଦରେ ଶ୍ରୀରାମଚନ୍ଦ୍ର ଭବନରୁ ପାଲିଙ୍କିରେ ଶତାବ୍ଦୀ ଭବନ ଯାଏ ସାହିତ୍ୟିକମାନେ କାନ୍ଧେଇ ନେଇଥିଲେ । ଉତ୍‌ଫୁଲ୍ଲିତ ହୋଇ ଉଠିଥିଲା ସେଦିନ ଓଡ଼ିଆ ଜାତି । ଭାବବିଭୋର ହୋଇଯାଇ ସଚ୍ଚିବାବୁ କହି ଉଠିଥିଲେ– 'ମୋ ଜୀବନରେ ଏହା ସବୁଠାରୁ ଶ୍ରେଷ୍ଠ ସମ୍ମାନ ।'

ଏମିତି ସ୍ମୃତି ତ ଅନେକ । ଗୋଟିଏ କଥା ମତେ ଭାରି ଭଲ ଲାଗିଥିଲା । ମଣିପୁର-ନାଗାଲାଣ୍ଡର ଗୋଟିଏ ସାହିତ୍ୟିକ ଦଳକୁ ଶ୍ରୀରାମଚନ୍ଦ୍ର ଭବନରେ ଆମେ ସ୍ୱାଗତ ଜଣାଇଥିଲୁ । ସେମାନଙ୍କର ବିଦାୟକାଳୀନ ବକ୍ତବ୍ୟ ଆମକୁ ଅଭିଭୂତ କରିଥିଲା । ସେମାନେ କହିଥିଲେ- 'ସାରା ଭାରତବର୍ଷରେ ବୁଲି ବୁଲି ଆମେ ଅନେକ ମନ୍ଦିର ଦେଖିଲୁ, ଅନେକ ଗୀର୍ଜା ଓ ମସ୍‌ଜିଦ୍ ଦେଖିଲୁ । ସେଠି ସବୁଠାରେ ଠାକୁର । କିନ୍ତୁ ଓଡ଼ିଶାରେ ଇଏ ଏଭଳି ଏକ ମନ୍ଦିର ଦେଖିଲୁ, ଯେଉଁଠି ଠାକୁର ନୁହନ୍ତି- ସାହିତ୍ୟିକମାନେ ପୂଜା ପାଉଛନ୍ତି ଦିବ୍ୟ ଭାବନାରେ । ଏଠି ମଣିଷ ଦେବତା ପାଲଟିଛନ୍ତି ।'

ମୁଁ ଏସବୁ କଥା ସ୍ମରଣ କଲାବେଳେ ଏଇ ସ୍ମୃତିସଜଳ ପୁଣ୍ୟପୀଠକୁ ପ୍ରଣାମ ଜଣାଉଛି ବାରମ୍ବାର ।

ସାହିତ୍ୟ ସମାଜରେ କର୍ମମୁଖର ବର୍ଷ ତିନୋଟି ବିତାଇ ସାରିଲା ପରେ ଅନୁଷ୍ଠାନର ଉଜ୍ଜ୍ୱଳ ସମ୍ଭାବନାକୁ ଆଗରେ ରଖି ଆମେ ଦାୟିତ୍ୱରୁ ଅବ୍ୟାହତି ନେଲୁ । ଶ୍ରୀରାମଚନ୍ଦ୍ର ଭବନ ହଲ୍ ଭଡ଼ାରୁ ଆମେ ଅନୁଷ୍ଠାନ ପରିଚାଳନା କରୁଥିଲୁ । ଆମ ଉତ୍ତରପିଢ଼ି ପାଇଁ ଆମେ ଆଉ ଗୋଟିଏ ଭବ୍ୟ ହଲ୍ 'ଶତାବ୍ଦୀ ଭବନ'ର ଭଡ଼ା ବନ୍ଦୋବସ୍ତ କରି ଦେଇଗଲୁ । ବାର୍ଷିକ କର୍ମ ତାଲିକା ଓ ଅଡିଟ୍ ରିପୋର୍ଟ ପଠାଇ ସଂସ୍କୃତି ବିଭାଗ ତରଫରୁ ଆନୁଷ୍ଠାନିକ ଅନୁଦାନ ପାଇବାର ବ୍ୟବସ୍ଥା କରିଗଲୁ । ଆଶ୍ୱସ୍ତ ହେଲୁ, ଅନ୍ତତଃ ଏଣିକି ଦୁର୍ଦ୍ଦିନ ଆଉ ଆସିବ ନାହିଁ ।

କିନ୍ତୁ ଏ ଅନୁଷ୍ଠାନ ପାଇଁ ଦୁର୍ଦ୍ଦିନ ଥିଲା ପୂର୍ବ ନିର୍ଦ୍ଧାରିତ ।

ପୁଣି ଛ'ବର୍ଷ ଧରି କୁପରିଚାଳନାର ରାହୁଗ୍ରାସ ହେଲା ।

ଭଲ ଲୋକ ବୋଲି ବାଛି ନୂଆ କର୍ମକର୍ତ୍ତାଙ୍କୁ ଦାୟିତ୍ୱ ଦିଆଗଲା । ତିନି ବର୍ଷ ପାଇଁ ଗୋଟାଏ ଟର୍ମ । ମାତ୍ର ତିନି ବର୍ଷରେ ସନ୍ତୁଷ୍ଟ ହେଲେ ନାହିଁ ସେମାନେ । ଚଉକି ମୋହ ପ୍ରବଳ ହେଲା । ଆଉ ତିନି ବର୍ଷ ସେମାନେ ରହିଗଲେ । ସଚେତନଶୀଳ ସାହିତ୍ୟିକ ଓ ସଭ୍ୟମାନେ ଚିନ୍ତା ପ୍ରକଟ କଲେ । ସେତେବେଳକୁ ଅନୁଷ୍ଠାନ ଉପରେ ବିଦ୍ୟୁତ ଦେୟ ବାକି ଲକ୍ଷେ ବତିଶି ହଜାର ଟଙ୍କା । ପାଣି ଦେୟ ବାକି ଅଠର ହଜାର ଟଙ୍କା । ରାଜ୍ୟ ସଂସ୍କୃତି ବିଭାଗକୁ ବାର୍ଷିକ ବିବରଣୀ ଓ ଅଡିଟ୍ ରିପୋର୍ଟ ଦିଆ ନ ଯିବାରୁ ଯାହା ଅନୁଦାନ ଆସୁଥିଲା ତାହା ବନ୍ଦ

ହୋଇଗଲା । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ଏନ୍.ବି.ଟି.ର ଅନୁବନ୍ଧନ କଟିଗଲା, ବିବରଣୀ ପ୍ରଦାନ ନ ହେବାରୁ ।

ଏଣୁ ସମସ୍ତଙ୍କ ମନରେ ଦୁଃଖ ଦେଖାଦେଲା ।

ପୁଣିଥରେ ଦାୟିତ୍ୱ ନେବାପାଇଁ ମତେ ଅନେକ ସଭ୍ୟ ଅନୁରୋଧ କଲେ । ଅନାଦିବାବୁ, ପଠାଣି ସାର୍ ଓ ବିଜୟାନନ୍ଦ ମତେ ବାଧ୍ୟ କଲେ । ଅନୁଷ୍ଠାନର ସୁରକ୍ଷା ଓ ତାହାର ମମତା ମତେ ଦ୍ୱିଧାରେ ପକାଇଲା । ଶେଷକୁ ମନସ୍ଥ କଲି ଆଉ ଥରେ ନିର୍ବାଚନରେ ଠିଆ ହେବି । ମାତ୍ର ସେମାନେ ଆଉ ଗୋଟେ ଚକ୍ରାନ୍ତ କଲେ । ମୋର ଅନ୍ୟତମ ଘନିଷ୍ଠ ବନ୍ଧୁ ବୈଷ୍ଣବ ଚରଣ ସାମଲଙ୍କୁ ସେମାନେ ପ୍ରାର୍ଥୀ କରି ଠିଆ କରାଇଲେ ମୋ ବିରୋଧରେ । ମୁଁ ବୈଷ୍ଣବବାବୁଙ୍କୁ ଯୋଗାଯୋଗ କରି କହିଲି– ଆପଣ ଓ ମୋ ଭିତରୁ ଜଣେ କେହି ଠିଆ ହେବା ଭଲ । ସେ କହିଲେ– ମୁଁ କାଲି ପ୍ରତ୍ୟାହାର କରିଆଣିବି ମୋ ନାମ ।

ମାତ୍ର ଚାପରେ ପଡ଼ି ସେ ପ୍ରତ୍ୟାହାର କଲେ ନାହିଁ ।

ନିର୍ବାଚନ ହେଲା ।

ମୁଁ ମୋ ସପକ୍ଷରେ ଭୋଟ ଦେବାପାଇଁ ଜଣକୁ ବି କହି ନ ଥିଲି । ଏକାଧିକ ବ୍ୟକ୍ତି ପ୍ରାର୍ଥୀ ହୋଇଥିଲେ ଏଥର । ମତେ ପୁଣିଥରେ ନିର୍ବାଚିତ କରାଗଲା । ସାଧାରଣ ସଂପାଦକ ହେଲେ ଶିଶୁ ସାହିତ୍ୟିକ ଡଃ ଗୋବିନ୍ଦ ଚନ୍ଦ୍ର ଚାନ୍ଦ । ସେ ମୋର ଛାତ୍ର । ଖୁବ୍ ପରିଶ୍ରମୀ ଓ ସରଳ ମଣିଷ । ଆମର ଲକ୍ଷ୍ୟ ହେଲା– ଅନୁଷ୍ଠାନକୁ ଋଣମୁକ୍ତ କରିଯିବୁ । ଆୟବ୍ୟୟ ସମୀକ୍ଷା ବିଧିବଦ୍ଧ ଭାବରେ କରାଇ ଅଡିଟ୍ ରିପୋର୍ଟ ପ୍ରତି ବର୍ଷ ପଠାଇବୁ । ପରେ ପରେ ବର୍ଷ ସାରାର କାର୍ଯ୍ୟଧାରା ପ୍ରସ୍ତୁତ ହେଲା । ସାଂସ୍କୃତିକ ଭାବ ବିନିମୟ ପରଂପରା ପୁନଃ ପ୍ରଚଳନ ହେଲା ।

ଆସାମ ସାହିତ୍ୟ ପରିଷଦର ବତିଶି ଜଣିଆ ଦଳ ଏଠିକି ଆସିଲେ । ସେମାନଙ୍କ ନିମନ୍ତ୍ରଣ କ୍ରମେ ଆମର ଗୋଟେ ପଚିଶି ଜଣିଆ ଦଳ ଆସାମ ଯାଇଥିଲେ । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତାହାର ସାହିତ୍ୟିକ ଜନ୍ମ ଶତବାର୍ଷିକୀ କାର୍ଯ୍ୟକ୍ରମର ସଂଯୋଗ ସୂତ୍ର ଏ ଅନୁଷ୍ଠାନ ସହ ପୁଣି ଯୋଡ଼ିଲା । ଆମ କାର୍ଯ୍ୟକାଳର ଶେଷବର୍ଷ ଆରମ୍ଭ ବେଳକୁ ଆମର ଶତାୟୁ ଅନୁଷ୍ଠାନ ଋଣମୁକ୍ତ ହେଲା । ବିଜୁଳି ଓ ପାଣି ଦେୟ ସମସ୍ତ ଜମା ହୋଇଗଲା ।

ଅନୁଷ୍ଠାନର ଭବିଷ୍ୟତ ସୁରକ୍ଷା କଥା ଚିନ୍ତା କଲୁ ।

ସନ୍ନିଧାନ ସଂଶୋଧନର ପ୍ରସ୍ତାବ ଆସିଲା ।

ସାହିତ୍ୟ ସମାଜର ସନ୍ନିଧାନରେ ଥିଲା– କୌଣସି ସଭ୍ୟ କୌଣସି ଏକ ପଦବୀରେ କ୍ରମାଗତ ଭାବେ ଦୁଇଥରରୁ ଅଧିକ ଥର ଠିଆ ହୋଇପାରିବେ ନାହିଁ । ଫଳରେ ଦୁଇଥର ପରେ ମଝିରେ ଗୋଟିଏ ଥର ଚୁପ୍ ରହି ତା'ପରେ ଆଉ ଦୁଇଥର ଠିଆ ହେବା ସମ୍ଭାବନା ଥିଲା । ଏହାର ସଂଶୋଧନ ହେଲା– କୌଣସି ସଭ୍ୟ କୌଣସି ଏକ ପଦବୀରେ ଦୁଇଥରରୁ ଅଧିକ ନିର୍ବାଚିତ ହୋଇପାରିବେ ନାହିଁ । ଏହାର ସୁଫଳ ମିଳିଲା । ଲୋକଙ୍କ ଚଉକି ମୋହରେ ବାଧା ଆସିଲା । ଗୋଟେ କର୍ମନିଷ୍ଠ ନୂଆ ଯୁବଦଳ ଏ ଅନୁଷ୍ଠାନର କର୍ମକର୍ତ୍ତା ହେଲେ ।

ଡକ୍ଟର ବିଜୟାନନ୍ଦ ସିଂହ ହେଲେ ସଭାପତି; ଶ୍ରୀ ଦେବସ୍ନାନ ଦାସ ହେଲେ ଉପସଭାପତି । ମନୋଜ ପଟ୍ଟନାୟକ– ସାଧାରଣ ସଂପାଦକ ଓ ଜୀବନାନନ୍ଦ ଅଧିକାରୀ ହେଲେ ସଂଗଠନ ସଂପାଦକ । ଏହାହିଁ ଥିଲା ମୋର ସ୍ୱପ୍ନ ।

।। ଛବିଶି ।।

# ଭିନ୍ନ ସେବାର ପର୍ବ

ଅଧ୍ୟାପନା ସହ ରେଭେନ୍ସାରେ ବହୁ ବର୍ଷ ମତେ ପ୍ରଶାସନିକ ବର୍ସାର ଦାୟିତ୍ୱ ବହନ କରିବାକୁ ପଡ଼ିଥିଲା । ସେଥିପାଇଁ ସକାଳ ସାଢ଼େ ନ'ଟାରୁ ସନ୍ଧ୍ୟା ଛ'ଟା ଯାଏ ରହିବାକୁ ପଡୁଥିଲା । ବଡ଼ ଦାୟିତ୍ୱପୂର୍ଣ୍ଣ କାମ । ଲାଭ ଭିତରେ ଗୋଟାଏ ସରକାରୀ କ୍ୱାର୍ଟର ଅଗ୍ରାଧିକାର ସୂତ୍ରରେ ପାଇବା ହିଁ ସୁବିଧା ଥିଲା । ପିଲାଙ୍କ ନାମଲେଖା, କ୍ଲାସ ପରୀକ୍ଷା ତଦାରଖ, ବିଶ୍ୱବିଦ୍ୟାଳୟର ପରୀକ୍ଷାରୁ ଉତ୍ତୀର୍ଣ୍ଣ ପରେ ସେମାନଙ୍କ ଟି.ସି. ଓ କଣ୍ଡକ୍ଟ ସାର୍ଟିଫିକେଟ୍ ଦସ୍ତଖତ କରି ଦେବା ଆଦି ଅନେକ କାମ କରିବାକୁ ହେଉଥିଲା ।

କିଛି ବର୍ଷ ପରେ ରେଭେନ୍ସାକୁ ସ୍ୱୟଂଶାସିତ କଲେଜ ଘୋଷଣା କରାଗଲା । ଏହାର ପ୍ରଥମ ପରୀକ୍ଷା ନିୟନ୍ତ୍ରକ ହେଲେ ଡଃ ପ୍ରଭାତ କୁମାର ମିଶ୍ର (ଡଃ ସଦାଶିବ ମିଶ୍ରଙ୍କ ପୁଅ) । ବର୍ଷକ ଭିତରେ ସେ ରେଭେନ୍ସା ସ୍ୱୟଂଶାସିତ କଲେଜର ପ୍ରିନ୍‌ସିପାଲ ହୋଇଗଲେ । ତେଣୁ ସେ କେମିଷ୍ଟ୍ରି ପ୍ରାଧ୍ୟାପକ ବି.ଏନ୍. ଭୂୟାଁଙ୍କୁ ପରୀକ୍ଷା ନିୟନ୍ତ୍ରକ ଦାୟିତ୍ୱ ଦେଇଥିଲେ । ବର୍ଷେ ଦେଢ଼ ବର୍ଷ ଭିତରେ ସେ କାର୍ଯ୍ୟାଳୟ ସଂପୂର୍ଣ୍ଣ ଅସଜଡ଼ା ହୋଇପଡ଼ିଲା ।  ଫଳରେ ତୃତୀୟ ପରୀକ୍ଷା ନିୟନ୍ତ୍ରକ ଭାବେ ମତେ ଦାୟିତ୍ୱ ଦିଆହେଲା । ନୂଆ ଢାଞ୍ଚାରେ କାମ ଆରମ୍ଭ କରାଗଲା । ତାହା ଥିଲା ଏହାର ନବକଳେବର ପର୍ବ–

ଅଫିସ ସଂଲଗ୍ନ ବଡ଼ ହଲ୍‌କୁ ପାର୍ଟିସନ୍ କରାଇ ପରୀକ୍ଷା ନିୟନ୍ତ୍ରକ କକ୍ଷ, ମୂଲ୍ୟାୟନ କକ୍ଷ, ଅର୍ଥ ପ୍ରଦାନ ଓ ହିସାବ ରକ୍ଷଣ ବିଭାଗ, ମୂଲ୍ୟାଙ୍କିତ ପରୀକ୍ଷା ଖାତା ସୁରକ୍ଷା କକ୍ଷ ଆଦି ବ୍ୟବସ୍ଥା କରାଇଲି । ପରୀକ୍ଷା ସରିବାର ୪୫ ଦିନ ଭିତରେ ପରୀକ୍ଷା ଫଳ ପ୍ରକାଶ ପାଇଲା । ଖାତା ମୂଲ୍ୟାଙ୍କନ ପ୍ରାପ୍ୟ ତତ୍‌କ୍ଷଣାତ୍ ପ୍ରଦାନ ଏବଂ ପ୍ରଶ୍ନପତ୍ର ତିଆରିର ଦେୟ ଚେକ୍ ମାଧ୍ୟମରେ ତୁରନ୍ତ ଦେବାର ବ୍ୟବସ୍ଥା

କରାଗଲା । ପରୀକ୍ଷା ନିର୍ଦ୍ଧାରିତ ତାରିଖରେ ହେଲା । ତିନି ବର୍ଷ ଭିତରେ ସବୁ କିଛି ସୁବ୍ୟବସ୍ଥିତ ହୋଇଗଲା । ସବୁ କିଛି ଶୃଙ୍ଖଳାରେ ପଡ଼ିଗଲା ।

ଏଥିପାଇଁ ରାଜ୍ୟ ଶିକ୍ଷା ବିଭାଗ ଓ କଲେଜ ଅଧ୍ୟକ୍ଷମାନେ ସନ୍ତୋଷ ପ୍ରକାଶ କଲେ । ମାତ୍ର କଲେଜ ପାଠପଢ଼ା, ପରୀକ୍ଷା ନିୟନ୍ତ୍ରଣ କାମ ଓ ଉତ୍କଳ ସାହିତ୍ୟ ସମାଜର ସାଧାରଣ ସଂପାଦକ ଦାୟିତ୍ୱ ଏକାବେଳକେ କରିବା ମତେ ବୁଝେଇ ପଡ଼ିଲା । ପାଠପଢ଼ା ଓ ସାହିତ୍ୟ ସମାଜ କାମ ତ ଅଣଦେଖା କରିପାରିବି ନାହିଁ । ତେଣୁ ପରୀକ୍ଷା ନିୟନ୍ତ୍ରକ କାମରୁ ଅବ୍ୟାହତି ନେବାକୁ ଇଚ୍ଛା କଲି । ଯୋଗକୁ ସେ ବାଟ ଫିଟିଗଲା । ମୋର ବଦଳି ହେଲା ଖଲ୍ଲିକୋଟ ସ୍ୱୟଂଚାଳିତ କଲେଜକୁ ।

ପରୀକ୍ଷା ନିୟନ୍ତ୍ରକ ଥିଲାବେଳେ ସେଠି ଏକ ଟେଲିଫୋନ୍ ଥିଲା । ସେତେବେଳେ ମୋବାଇଲ ଫୋନ୍ ସେବାର ଏତେ ପ୍ରସାର ହୋଇ ନ ଥିଲା । ତେଣୁ କେହି ମତେ ଯୋଗାଯୋଗ କରିବାକୁ ଚାହିଁଲେ ଏଇ ନମ୍ବରରେ ହିଁ ସଂଯୋଗ କରୁଥିଲେ । ଏଇ ନମ୍ବର ଥିଲା– ୬୧୦୩୬୫ । ମୋ ଝିଅ ଅମୃତା ଏଇ ନମ୍ବରକୁ ମନେ ରଖିବାର ସହଜ ଫର୍ମୁଲାଟିଏ ସମସ୍ତଙ୍କୁ ବତେଇ ଦେଉଥିଲା । ସେ କହୁଥିଲା– ବାପାଙ୍କ ନମ୍ବର, ସକାଳ '୬'ରୁ ରାତି '୧୦'ଟା '୩୬୫' ଦିନ । ମୋ ବ୍ୟସ୍ତବହୁଳ ସମୟ ସଂପର୍କରେ ମୋ ପିଲାମାନଙ୍କର ପ୍ରତିକ୍ରିୟା ଏଥିରୁ ସ୍ପଷ୍ଟ ହେଉଥିଲା । ତେଣୁ ବଦଳିକୁ ମୁଁ ସ୍ୱାଗତ କଲି ଏବଂ ଖଲ୍ଲିକୋଟ କଲେଜରେ ଯାଇ ଜଏନ୍ କଲି ।

ମୁଁ ଗଡିରାଉତ ପାଟଣାରେ ଥିବା ଆବାସିକ ସରସ୍ୱତୀ ବିଦ୍ୟାମନ୍ଦିରର କେତେ ବର୍ଷ ପାଇଁ ସଭାପତି ଦାୟିତ୍ୱ ନେଇଥିଲି । ୧୯୯୯ର ମହାବାତ୍ୟାରେ ଏହି ବିଦ୍ୟାଳୟର ଘରଦ୍ୱାର ଓ ପରିସର ସଂପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା । ବିଦ୍ୟାଳୟରେ ନୈତିକ ଶିକ୍ଷା ଓ ଆଦର୍ଶ ଶିକ୍ଷା ବ୍ୟବସ୍ଥା ଯୋଗୁଁ ପିଲାମାନେ ହାଇସ୍କୁଲ ପରୀକ୍ଷାରେ ଖୁବ୍ ଭଲ କରୁଥିଲେ । ସେମାନଙ୍କ ଆଚରଣ ଓ ଉଚ୍ଚାରଣ ଭାରତୀୟ ସଂସ୍କୃତିର ଅନୁକୂଳ ଥିଲା । ବାତ୍ୟା ପ୍ରପୀଡ଼ିତଙ୍କୁ ସହାୟତା ପ୍ରଦାନ ପାଇଁ ଆଗେଇ ଆସିଥିବା ପ୍ରତିନିଧି ଦଳଙ୍କ ମଧ୍ୟରୁ ଜୈନଧର୍ମୀ ତେରାପନ୍ଥୀ ମହିଳା ମଣ୍ଡଳଙ୍କ ପ୍ରଥମ ଦୃଷ୍ଟି ଆକର୍ଷଣ କରିଥିଲା ଏଇ ବିଦ୍ୟାଳୟ । ସେମାନେ ପ୍ରଥମେ ଚାରୋଟି ଶ୍ରେଣୀଗୃହ ନିର୍ମାଣ ଓ ଆବଶ୍ୟକ ସରଞ୍ଜାମ ଯୋଗାଇ ଦେଲେ । ତା'ପରେ ଏକ ଭବ୍ୟ ଭବନ ଓ ବିରାଟ ଛାତ୍ରାବାସ ନିର୍ମାଣ କରାଇ ଦେଲେ 'ଉତ୍କଳ ବିପନ୍ନ ସହାୟତା ସମିତି' ।

ଏଠିକାର ବିଶାଳ ପରିସର ଓ ଉତ୍ତମ ଶିକ୍ଷା ବ୍ୟବସ୍ଥା ସମସ୍ତଙ୍କ ଦୃଷ୍ଟିରେ ପଡ଼ିଲା । ଏହା ପଛରେ ଆରଏସ୍ଏସ୍ ଓ ବିଜେପିର ପ୍ରଚ୍ଛନ୍ନ ସହାୟତା ଥିଲା । ବଡ଼ ବଡ଼ ବିଜେପି ନେତା ଏଠିକି ଆସୁଥିଲେ । ତତ୍‌କାଳର ଉଚ୍ଚଶିକ୍ଷା ମନ୍ତ୍ରୀ ଥିଲେ ବିଜେପିର ପ୍ରଶାନ୍ତ ନନ୍ଦ । ତାଙ୍କୁ କିଛି କର୍ମକର୍ତ୍ତା ମୋ ବଦଳି ଖଲ୍ଲିକୋଟରୁ କଟକ କରି ଆଣିବା ଦରକାର ବୋଲି ଦାବି କରିବାରୁ ସେ ସାତ ଦିନ ଭିତରେ କରିଦେବାକୁ ନିର୍ଭର ପ୍ରତିଶ୍ରୁତି ଦେଲେ । ବରିଷ୍ଠ ବିଜେପି ନେତା ବିଶ୍ୱଭୂଷଣ ହରିଚନ୍ଦନ ମଧ୍ୟ ଏଥିପାଇଁ ତାଙ୍କୁ ଅନୁରୋଧ କରିଥିଲେ । ମାତ୍ର ସେ ମନ୍ତ୍ରୀପଦରୁ ତଡ଼ାଖାଇ ବିଦା ହେଲାଯାଏ ବି ବଦଳି କଲେ ନାହିଁ । ଦୁଇ ବର୍ଷ କେଇ ମାସ ବ୍ରହ୍ମପୁରରେ କଟିଲା । ଏଠିକା ପିଲା ଓ ଶିକ୍ଷକ ସମାଜ ମତେ ଆପଣେଇ ନେଲେ । ବ୍ରହ୍ମପୁର ଜୀବନ ମତେ ଭଲ ଲାଗିଥିଲା । କେବଳ ଲଙ୍ଗ ରୁଟ୍ ବସ୍‌ରେ ଯା'ଆସ କରିବା ଯୋଗୁଁ ମୋର ସ୍ପଣ୍ଡିଲାଇଟସ୍ ବେମାରି ବାହାରି ପଡ଼ିଲା ।

ଚାକିରି କାଳ ଆଉ ଦେଢ଼ବର୍ଷ ଥାଏ ।

କାହାର ବୋଧେ ଦୟା ହେଲା ମୋ ଅବସ୍ଥା ପ୍ରତି ।

ମୋର ଶେଷ ବଦଳି ହେଲା ଶୈଳବାଳା ମହିଳା କଲେଜକୁ ।

ଏଠି ମଧ୍ୟ ନିସ୍ତାର ମିଳିଲାନି ଦାୟିତ୍ୱ ବୋଝରୁ । ବିଭାଗୀୟ ମୁଖ୍ୟ ପ୍ରାଧ୍ୟାପକ ଓ ବର୍ସାର ବୋଝ ମୁଣ୍ଡାଇଲି । ଅଧ୍ୟାପିକାମାନଙ୍କର ଦରମା ମାସ ଶେଷକୁ ଠିକ୍ ସମୟରେ ମିଳୁ ନ ଥିଲା । ବକେୟା ପ୍ରାପ୍ୟ ମାସ ମାସ ଧରି ଡ୍ର ହୋଇପାରୁ ନ ଥିଲା । ତାକୁ ରେଗୁଲାର୍ କରାଇଲି । ସବୁଠୁଁ ଗୋଟେ ବଡ଼ ସମସ୍ୟା ମୁଣ୍ଡ ଟେକିଲା ସରକାରଙ୍କ ତରଫରୁ । ଏ କଲେଜର ଝିଅମାନଙ୍କୁ ନେବା-ଆଣିବା କରିବା ପାଇଁ ପୂର୍ବେ ସରକାର ଏକ ବସ୍ ଯୋଗାଇ ଦେଇଥିଲେ । କାଳକ୍ରମେ ଏହାର ଆଉ ଆବଶ୍ୟକତା ପଡ଼ିଲା ନାହିଁ । ଝିଅମାନେ ନିଜ ସୁବିଧାରେ ଯା'ଆସ କଲେ । ଫଳରେ ବସ୍‌ଟି ଅକାମୀ ହୋଇ ଖତ ଖାଇଲା ।

ହଠାତ୍ ଦିନେ ସରକାରୀ ଫାଇଲ୍‌ରେ ବସ୍ କଥା ବଞ୍ଚି ଉଠିଲା । ଚିଠି ଆସିଲା, ବସ୍ ବିକି ଟଙ୍କା ସରକାରୀ ପାଣ୍ଠିରେ ଜମା କର । କଲେଜ ତରଫରୁ ଏ ଦିଗରେ ପ୍ରଚେଷ୍ଟା ଚାଲିଲା । ସର୍ବନିମ୍ନ ବାର ହଜାର ଟଙ୍କାରେ ବିକ୍ରି ପାଇଁ ଜିଲ୍ଲା ଏମ୍.ଭି.ଆଇ. ଦର ଧାର୍ଯ୍ୟ କଲେ । ତଥାପି ତାହା ବିକ୍ରି ନ ହୋଇ ପଡ଼ିରହିଲା । ଏମିତିରେ ତିନି ଚାରି ବର୍ଷ ବିତିଗଲା । ପୁଣି ଗୋଟିଏ ଚିଠି ଆସିଲା- ତିନି ମାସ

ଭିତରେ ପୁରୁଣା ବସ୍ ବିକି ଟଙ୍କା ପଇଠ ନ କଲେ, ପ୍ରିନ୍ସିପାଲ ସହିତ ସମସ୍ତଙ୍କ ଦରମା ବନ୍ଦ । ଏହା ଏକାନ୍ତ ଜରୁରୀ ଆଦେଶ ।

ସମସ୍ତଙ୍କ ମନରେ ଛାନିଆ ପଶିଲା ।

କ'ଣ କରାଯିବ ? ବିକ୍ରି ହବ କେମିତି ?

ମୁଁ ସେତିକିବେଳକୁ ଏ କଲେଜରେ ଭାଲୁ ଧରିଥାଏ ।

ଚତୁର୍ଥ ଶ୍ରେଣୀ କର୍ମଚାରୀମାନେ ମୋ ପାଖରେ ଆସି କାନ୍ଦିଲେ ।

କିଛି ଗୋଟାଏ ଉପାୟ କରିବାକୁ ଅନୁରୋଧ କଲେ ।

ମୁଁ ଫାଇଲ୍‌ଟିକୁ ମଗାଇ ଆମୂଳଚୂଳ ପଢ଼ିଲି ।

ଜଣେ ଦି'ଜଣଙ୍କ ସାଙ୍ଗରେ ଏ ବିଷୟରେ ଆଲୋଚନା କଲି । ସେମାନଙ୍କ ଭିତରୁ ଜଣେ କଟକର ଗୋଟେ ପ୍ରତିଷ୍ଠିତ ପରିବାରର ଲୋକ ଥିଲେ । ସେ କହିଲେ, ମୁଁ କୋଡ଼ିଏ ହଜାର ଟଙ୍କାରେ କିଣିନେବି । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି– ଏହା ଅନୁକଂପା ନା କିଛି ବ୍ୟାବସାୟିକ ଚାଲ୍ ?

– ନାଇଁ, ଖାଣ୍ଟି ବେପାର ।

ସେ କହିଲେ, ମୁଁ ପାଞ୍ଚହଜାର ଟଙ୍କାର ଫାଇଦା ରଖି ଏ ମୂଲଚାଲ କରିଚି । ତମେ ଆଉ କାହାକୁ କିଛି କହିବା ଦରକାର ନାହିଁ । କାଲି ଏଗାରଟା ବେଳକୁ ତମ ପାଖରେ କୋଡ଼ିଏ ହଜାର ଟଙ୍କା ପହଞ୍ଚିଯିବ । ତମେ ସେ ଟଙ୍କା ଟ୍ରେଜେରୀରେ ଡିପୋଜିଟ୍ କରି ଚାଲାନ୍ କାଟି ଦେବ । ବସ୍ ଉଠାଇ ନେବାର ଚିଠି ସହ ଚାଲାନ୍‌ର ଗୋଟେ କପି ସନ୍ଧ୍ୟା ସୁଦ୍ଧା ତୁମେ ମତେ ଧରାଇଦେବ । ମୁଁ କବାଡ଼ିବାଲାକୁ ସେ କାଗଜପତ୍ର ଦେଇ ତା'ଠୁ ମୋର ଫାଇଦା ପାଞ୍ଚ ହଜାର ଟଙ୍କା ଅସୁଲ କରିନେବି । ପଅରଦିନ ସକାଳୁ ସେ ଅଳିଆ ତମର ସେଠି ଆଉ ନ ଥିବ । ହେଲା ?

ପ୍ରକୃତରେ ତାହାହିଁ ହେଲା।

ସମସ୍ତେ ଖୁସି ହେଲେ । କବାଡ଼ିବାଲା ଲୁହା ଦରରେ ବିକି ତା'ର ଫାଇଦା ଉଠାଇଲା । ବହୁ ଦିନର ଆବର୍ଜନା ହଟିଥିବାରୁ ସରକାରୀ କଳ ସନ୍ତୋଷ ପ୍ରକାଶ କଲା । ଏମିତିରେ ଶେଷ ଦେଢ଼ବର୍ଷ ସମୟ ସୁରୁଖୁରୁରେ କଟିଗଲା । ଅଗଷ୍ଟ ୩୧ ତାରିଖ ୨୦୦୩ ମସିହାରେ ମୁଁ ମୋର କର୍ମମୟ ଜୀବନରୁ ଅବସର ଗ୍ରହଣ କଲି ଏଇ କଲେଜରୁ । ଭାବବିଭୋର ପରିବେଶରେ ମତେ ବିଦାୟ ସମ୍ବର୍ଦ୍ଧନା ଦିଆଗଲା । ଚାହୁଁ ଚାହୁଁ ଚଉତିରିଶ ବର୍ଷର ସରକାରୀ କର୍ମଚାରୀ ବୋଲାଇବାର ଜୀବନ

ସରିଗଲା । ଭାରି ଭଲ ଲାଗିଲା ଏ ବନ୍ଧନମୁକ୍ତ ସମୟ । ପିଞ୍ଜରାରୁ ବାହାରି ଖୋଲା ଆକାଶରେ ଉଡ଼ି ବୁଲିବାର ନିଶା ଲାଗିଲା ମନରେ ।

ଏହାର କିଛି ବର୍ଷ ପୂର୍ବରୁ ଏକ ସର୍ବଭାରତୀୟ ସଂସ୍ଥା 'ସଂସ୍କାର ଭାରତୀ'ର ମୁଁ ଉତ୍କଳ ପ୍ରାନ୍ତର ସଭାପତି ନିର୍ବାଚିତ ହୋଇଥିଲି । ଏହା ଏକ ସାଂସ୍କୃତିକ ଭାବ ବିନିମୟ ସଂସ୍ଥା । ସଙ୍ଗୀତ, ନାଟକ ଓ ଚିତ୍ରକଳା ଆଦି କ୍ଷେତ୍ରରେ ନାମୀ-ଦାମୀ ବ୍ୟକ୍ତି ଏହାର ସଦସ୍ୟ ମନୋନୀତ ହୁଅନ୍ତି । କାଶ୍ମୀରରୁ କନ୍ୟାକୁମାରୀ ଯାଏ ଭାରତର ପ୍ରତ୍ୟେକ ପ୍ରଦେଶର ଶିଳ୍ପୀ, କଳାକାର ଓ ସାହିତ୍ୟିକ ଏହାର ସଦସ୍ୟ ନିର୍ବାଚିତ ହୋଇଥାନ୍ତି । ପ୍ରାଦେଶିକ କାର୍ଯ୍ୟକ୍ରମ ସହିତ ପ୍ରତିବର୍ଷ ରାଷ୍ଟ୍ରୀୟ ସ୍ତରରେ ଏକ ମହାମିଳନ ଦେଶର ଭିନ୍ନ ଭିନ୍ନ ସ୍ଥାନରେ ଅନୁଷ୍ଠିତ ହୁଏ । ଏହାଛଡ଼ା ଭିନ୍ନ ଭିନ୍ନ ବିଭାଗରେ ସର୍ବଭାରତୀୟ ସମ୍ମେଳନ ମଧ୍ୟ ଆୟୋଜିତ ହୁଏ ।

ମୋ ପାଇଁ ଏହା ସୁବର୍ଣ୍ଣ ସୁଯୋଗ ସୃଷ୍ଟି କଲା ।

ଉତ୍କଳ ପ୍ରାନ୍ତର ଅନ୍ୟ ସଦସ୍ୟଙ୍କ ସହିତ ମୁଁ ବନାରସ, ଅମରାବତୀ, ଇନ୍ଦୋର ଓ ନାଗପୁର ଆଦି ଅଧିବେଶନରେ ଯୋଗ ଦେଇ ପ୍ରଚୁର ଉପଲବ୍ଧି ପାଇଲି । ଇଏ ଏକ ଅଦ୍‌ଭୁତ ଅନୁଭବ । ନିଜକୁ ସମଗ୍ର ଭାରତର ଅଧିବାସୀ ବୋଲାଇବାର ଅପୂର୍ବ ସଂପ୍ରୀତି । ଏ କାର୍ଯ୍ୟରୁ ମତେ ପ୍ରଚୁର ଆନନ୍ଦ ମିଳିଲା ।

ଏହାରି ଭିତରେ ମୁଁ ଆଉ ଏକ ଘଟଣା ସହିତ ଯୋଡ଼ି ହୋଇଗଲି ।

ପ୍ରକୃତରେ ଏହା ଘଟଣା ନୁହେଁ- ଗୋଟେ ତ୍ୟାଗୀ ମଣିଷର ଜୀବନ ବୃତ୍ତର ପରିଧି ।

ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କ ଚର୍ଯ୍ୟାପଦ ।

ସେ ବ୍ୟକ୍ତି ନ ଥିଲେ, ଥିଲେ ଏକ ଅନୁଷ୍ଠାନ ।

ଓଡ଼ିଶା ସରକାରଙ୍କ ଉଦାସୀନତା ଓ ସଂଖ୍ୟାଲଘୁ ପ୍ରୀତି ଏକ ନାରକୀୟ ହତ୍ୟାକାଣ୍ଡରେ ପରିଣତ ହେଲା । ପ୍ରତିହିଂସା ପରାୟଣ ହୋଇ ଉଠିଲେ ଫୁଲବାଣୀର ସ୍ଥାନୀୟ ଜନଜାତି । ସଂଖ୍ୟାଲଘୁଙ୍କ ସହିତ ହେଲା ହିଂସ୍ର ସଂଘର୍ଷ । ତାହା ଦଙ୍ଗା ରୂପ ନେଲା । ଏକ ଯୁଗାନ୍ତକାରୀ ଜନଜାଗରଣ ଦେଖାଦେଲା । ଗଢ଼ା ହେଲା 'ସ୍ୱାମୀ ଲକ୍ଷ୍ମଣାନନ୍ଦ ଶ୍ରଦ୍ଧାଞ୍ଜଳି ସମିତି' । ମତେ ଏହାର ସଭାପତି ମନୋନୀତ କରାଗଲା ।

ସମଗ୍ର ଘଟଣାକ୍ରମ ଓଡ଼ିଶା ଇତିହାସ ଆତ୍ମସ୍ଥ କରି ରଖିଚି ।

ଏଥିପାଇଁ ଏକ 'ଅନୁସନ୍ଧାନ କମିଶନ' ଗଠିତ ହେଲା ।

ଜଣେ ଅନୁଭବୀ ଓଡ଼ିଆ ଭାବେ ମୁଁ ସତ୍ୟ ପାଠ ଦାଖଲ କରିଥିଲି ଓ ସାକ୍ଷୀ ଦେଇଥିଲି କମିଶନରଙ୍କ ପାଖରେ ।

ତାହା ଥିଲା ଏହିପରି-

**ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କ ହତ୍ୟାକାଣ୍ଡ ଏବଂ ତା' ପରବର୍ତ୍ତୀ ହିଂସାକାଣ୍ଡର ବିଚାର ବିଭାଗୀୟ ତଦନ୍ତ ଦାୟିତ୍ୱରେ ଥିବା ମାନ୍ୟବର ବିଚାରପତି (ଅବସରପ୍ରାପ୍ତ) ଶ୍ରୀ ଶରତ ଚନ୍ଦ୍ର ମହାପାତ୍ର !**

ମହୋଦୟ.............................................ସମୀପେଷୁ ।

**ଶପଥ ପାଠ**

ମୁଁ ଡକ୍ଟର ରତ୍ନାକର ଚଇନି, ବୟସ ୬୫ ବର୍ଷ, ପିତା ୰ ବ୍ରଜବନ୍ଧୁ ଚଇନି (ଅବସରପ୍ରାପ୍ତ ପ୍ରାଧାପକ) ସଭାପତି 'ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଶ୍ରଦ୍ଧାଞ୍ଜଳି ସମିତି', ବାଦାମବାଡ଼ି, କଟକ-୧୨।

ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ମୋ ପାଇଁ ଏକ ସ୍ୱର୍ଦ୍ଧିତ ଉଚ୍ଚାରଣ । ସେ ଯେତେବେଳେ ଗୋ-ବଧ ନିରୋଧ ଆନ୍ଦୋଳନରେ ନେତୃତ୍ୱ ନେଉଥିଲେ ସେକାଳରୁ ତାଙ୍କ ସହିତ ମୁଁ ପରିଚିତ । ପ୍ରାୟ ପଚିଶି ବର୍ଷ ତଳର କଥା । ଗୋଟିଏ ସାଂସ୍କୃତିକ ସଭାରେ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ୍ । ଭାଷଣ ପ୍ରସଙ୍ଗରେ ସେ କହିଥିଲେ 'ଯୋଉ କାମ କରି ସମାଜ- ମଣିଷଙ୍କ ମଙ୍ଗଳ କରି ହୁଏ ନାହିଁ, ସେ କାମ ପାଇଁ ଗର୍ବ କର ନାହିଁ । ସେ କାମ ହୁଏତ ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି କରିପାରେ କିମ୍ବା ନିଜ ଗୌରବ ବଢ଼ାଇପାରେ; ମାତ୍ର ସେଥିରେ ସାଧାରଣ ମଣିଷ କିଛି ଉପକୃତ ହୋଇପାରନ୍ତି ନାହିଁ । ଏହା ମଣିଷ ଜୀବନରେ ସାର୍ଥକତା ଦେଇପାରେ ନାହିଁ ।'

ମୋର ମନେଅଛି, ସେହି ଦିନଠାରୁ ସ୍ୱାମିଜୀ ମୋ ସ୍ମୃତିରେ ଗଭୀର ରେଖାପାତ କରି ରହିଯାଇଥିଲେ । ପରେ ସାହିତ୍ୟ ସଭା ଓ ସାଂସ୍କୃତିକ ସମ୍ମେଳନ ପାଇଁ ମୁଁ ଯେତେଥର ଫୁଲବାଣୀ ଯାଇଛି, ସ୍ୱାମିଜୀଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଚେଷ୍ଟା କରିଛି । ମାତ୍ର କେବଳ ଥରେ ଚକାପାଦ ଆଶ୍ରମରେ ତାଙ୍କ ସାନ୍ନିଧ ଲାଭ କରିଥିଲି ୨୦୦୦ ମସିହାରେ । ଅନ୍ୟ ସବୁଥର ତାଙ୍କ ସାମାଜିକ ସେବା କର୍ମର ମହକ ମୋତେ ମୁଗ୍ଧ କରୁଥିଲା ଏବଂ ସେସବୁ ସ୍ମୃତିକୁ ସାଉଁଟି ମୁଁ

ଫେରିଆସୁଥିଲି । ମୁଁ ଯେତେଥର ଫୁଲବାଣୀ ଯାଇଛି, ମୋର ଧାରଣା ହୋଇଛି, ଆମ ଗଣତାନ୍ତ୍ରିକ ଶାସନ ପଦ୍ଧତି ଓ ଜନସେବା ଆଦି ବିକାଶଧାରାର ଇଏ ଏକ ଅପହଞ୍ଚ ଇଲାକା । ଅନୁସୂଚିତ ଜନଜାତିର ଉନ୍ନତି ଏଠି ଏମାନଙ୍କ ପାଇଁ ଖାଲି ଗୋଟାଏ ସ୍ଲୋଗାନ । ଲୋକଙ୍କ ପାଖରେ ନିଃସ୍ୱାର୍ଥପର ସେବା ଓ ସୁଶିକ୍ଷା ପହଞ୍ଚାଇବା ପାଇଁ ଆମ ସାମାଜିକ ଜୀବନରେ ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କ ଭଳି ବ୍ୟକ୍ତିଙ୍କର ଆବଶ୍ୟକତା ଅଛି । ତାଙ୍କର ଯାଦୁକରୀ ବ୍ୟକ୍ତିତ୍ୱ ଓ ବ୍ୟକ୍ତିଗତ ଲାଭବିହୀନ କାର୍ଯ୍ୟ ସ୍ଥାନୀୟ ଜନଜାତିଙ୍କ ଉପରେ ପ୍ରଚଣ୍ଡ ପ୍ରଭାବ ପକାଇ ପାରିଥିଲା ।

ସେ କନ୍ଧମାଳର ଲୋକଙ୍କ ଜୀବନଧାରାରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବା ପାଇଁ ନିଷ୍ଠାପର ପ୍ରୟାସ କରିଥିଲେ । ସେ ଚକାପାଦଠାରେ ପ୍ରଥମେ ଆଶ୍ରମଟିଏ କଲେ, ଯାହା ତାଙ୍କ ସାମାଜିକ କାର୍ଯ୍ୟଧାରାର କେନ୍ଦ୍ରବିନ୍ଦୁ ପାଲଟିଥିଲା । ଜଳେସପଟ୍ଟାଠାରେ ସେ ଆବାସିକ କନ୍ୟାଶ୍ରମ ସ୍ଥାପନ କରି ଗରିବ ଅନୁନ୍ନତ ଝିଅମାନଙ୍କୁ ଶିକ୍ଷାର ଆଲୋକରେ ଆଲୋକିତ କଲେ । ସ୍ୱାମିଜୀ ପରେ ପରେ ମଦ ବିରୋଧୀ ଆନ୍ଦୋଳନ ଏ ଅଞ୍ଚଳରେ ଆରମ୍ଭ କଲେ ଏବଂ ମଦ୍ୟପାନ ନ କରିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇଥିଲେ ।

ଆଜି ଓଡ଼ିଶାର ଆଦିବାସୀବହୁଳ ଅଞ୍ଚଳରେ ଯେଉଁ ମଦ ବିରୋଧୀ ଆନ୍ଦୋଳନମାନ ଦେଖାଯାଉଛି ତାହା ସ୍ୱାମିଜୀଙ୍କ ସମାଜ ଜାଗରୁକତାର ସୁଫଳ । ୨୦୦୨-୦୩ ମସିହାରୁ ଗଣମାଧ୍ୟମର ବିଭିନ୍ନ ବିଭାଗରେ ସ୍ୱାମିଜୀଙ୍କ ସାମାଜିକ ସଂସ୍କାର କାର୍ଯ୍ୟକଳାପ ଛାଇ ହୋଇ ଯାଉଥିବାର ଲକ୍ଷ୍ୟ କରିଛି । ସେହି କାଳରୁ ମୁଁ ଭାବିଛି, ସ୍ୱାମିଜୀ ଜଣେ ଦୂରଦ୍ରଷ୍ଟା ସମାଜ ସୁଧାରକ । ସେ ଯାହା କଥାରେ କହନ୍ତି, ତାହାକୁ କାର୍ଯ୍ୟରେ ପରିଣତ କରନ୍ତି । ସେଦିନର ଭାଷଣ ଆଜି କାର୍ଯ୍ୟରେ ରୂପାନ୍ତରିତ ହେଉଛି । କେତେବେଳେ ସାଧାରଣ ଜନତାଙ୍କୁ ସାଙ୍ଗରେ ଧରି ସରକାରୀ ନିଷ୍କ୍ରିୟତାକୁ ଭଙ୍ଗକରି ସକ୍ରିୟ କରାଉଛନ୍ତି ତ, କେତେବେଳେ ରାତ୍ରି ପାଠଶାଳା କରି ବୟସ୍କ ପୁରୁଷ ମହିଳାଙ୍କୁ ଶିକ୍ଷା ଦେଉଛନ୍ତି । କହୁଛନ୍ତି, ଅଶିକ୍ଷା ହିଁ ଅଜ୍ଞତାର ମାତା ।

ବାସ୍, ଏହାପରେ ଦୃଶ୍ୟପଟକୁ ଆସିଗଲା ପ୍ରତିରୋଧ । ଏଭଳି ସାମାଜିକ କର୍ମଦ୍ୱାରା ଯେଉଁମାନଙ୍କର ସ୍ୱାର୍ଥ ସାଧନାରେ ବାଧା ଆସିଲା ସେମାନେ

ସମାଲୋଚନା କଲେ; ଏଭଳି କାମ ନ କରି କନ୍ଧମାଳରୁ ଫେରିଯିବାକୁ ଧମକ ଦେଲେ; ଆଠଥରରୁ ଅଧିକା ତାଙ୍କୁ ମରଣାନ୍ତକ ଆକ୍ରମଣ କଲେ । ମୃତ୍ୟୁକୁ ଭୟ ନ କରି ଜନସେବା ଓ ଜନ ସଚେତନତାକୁ ଜୀବନର ବ୍ରତ କରିଥିବା ସେ ଜଣେ ନିଆରା ତପସ୍ୱୀ ଥିଲେ । ସ୍ୱାମିଜୀଙ୍କ ହତ୍ୟା ପୂର୍ବରୁ ୨୦୦୭ ମସିହା ଡିସେମ୍ବର ୨୪ ତାରିଖରେ ସ୍ୱାମିଜୀ ବ୍ରାହ୍ମଣୀ ଗାଁ ଯିବା ବାଟରେ ତାଙ୍କ ଉପରେ ମରଣାନ୍ତକ ଆକ୍ରମଣ ହୋଇଥିଲା । ସେ ଗଭୀର କ୍ଷତବିକ୍ଷତ ହୋଇ ବହୁ ଦିନ ଡାକ୍ତରଖାନାରେ ଚିକିତ୍ସିତ ହୋଇଥିଲେ । ତାଙ୍କ ସହ ତାଙ୍କର ଡ୍ରାଇଭର ଓ କିଶୋର ବାବା ଆହତ ଓ କ୍ଷତାକ୍ତ ହୋଇଥିଲେ । ସ୍ୱାମିଜୀଙ୍କ ସୁରକ୍ଷା ଓ କନ୍ଧମାଳର ସ୍ଥାୟୀ ଶାନ୍ତି ଫେରାଇ ଆଣିବା ପାଇଁ ଆମେ ଏକ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ସଚିବାଳୟର ମିଟିଂ ହଲ୍‌ରେ ଭେଟିଥିଲୁ । ପ୍ରତିନିଧି ଦଳରେ ଅବସରପ୍ରାପ୍ତ ଜଷ୍ଟିସ ପାପାନ୍ନା, ବରିଷ୍ଠ ଆଇନଜୀବୀ ବିପିନବିହାରୀ ରଥ ଓ ମୁଁ ଥିଲୁ । ମୁଖ୍ୟମନ୍ତ୍ରୀଙ୍କ ସହ ତତ୍‌କାଳୀନ ଗୃହସଚିବ ତରୁଣକାନ୍ତି ମିଶ୍ର ଥିଲେ । ଆମର ଦାବି ଥିଲା–

୧. ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କର ଯଥେଷ୍ଟ ସୁରକ୍ଷା ବନ୍ଦୋବସ୍ତ କରାଯାଉ ।

୨. ଜାଲ ଜାତିଗତ ପ୍ରମାଣପତ୍ର ଦେଇ ଚାକିରି କରିଥିବା ବ୍ୟକ୍ତିଙ୍କର ପ୍ରମାଣ ଅନୁସନ୍ଧାନ କରି ଜାଲିଆତିଙ୍କୁ ବାହାର କରାଯାଉ ।

୩. ଜାଲିଆତି ଦ୍ୱାରା ଆଦିବାସୀଙ୍କ ଜମିଜମା ହସ୍ତାନ୍ତରିତ ହୋଇଥିବା ଘଟଣାକୁ ସମୀକ୍ଷା କରି ସେମାନଙ୍କୁ ତାଙ୍କ ଭୂମି ଅଧିକାର ଫେରାଇ ଦିଆଯାଉ ।

୪. Enforcement of Odisha freedom of Religion Act-1967 ପ୍ରୟୋଗର ସମୀକ୍ଷା ହେଉ ।

୫. ଏନ୍‌ଜିଓମାନଙ୍କୁ ମିଳୁଥିବା ବିଦେଶୀ ଧନର ସୁବିନିଯୋଗ ରିପୋର୍ଟର ସରକାରୀ ସମୀକ୍ଷା ହେଉ ।

ମୁଖ୍ୟମନ୍ତ୍ରୀ ଓ ଗୃହସଚିବଙ୍କଠାରୁ ବିହିତ କାର୍ଯ୍ୟାନୁଷ୍ଠାନର ଦୃଢ଼ ପ୍ରତିଶ୍ରୁତି ପାଇ ଆମେ ଫେରିଆସିଲୁ । ମାତ୍ର ଏହାର ପରିଣତି ଯାହା ହେଲା, ତାହା ସୂର୍ଯ୍ୟାଲୋକ ପରି ସ୍ପଷ୍ଟ । ୨୦୦୮ ମସିହା ଅଗଷ୍ଟ ୨୩ ତାରିଖ ସମୟ ସନ୍ଧ୍ୟା ସାଢ଼େ ସାତଟା । ସେଦିନ ଥିଲା ପବିତ୍ର କୃଷ୍ଣ ଜନ୍ମାଷ୍ଟମୀ । ଜଳେସପଙ୍ଗା କନ୍ୟାଶ୍ରମରେ ସ୍ୱାମିଜୀ ଅନ୍ୟମାନଙ୍କ ଗହଣରେ ପୂଜାର୍ଚ୍ଚନା କରୁଥିଲେ । ଦୁର୍ଦ୍ଦାନ୍ତ ଆତତାୟୀମାନେ ପୈଶାଚିକ କାଣ୍ଡ ଭିଆଇଲେ । ସ୍ୱାମିଜୀଙ୍କ ସହିତ ଅନ୍ୟ

ଚାରିଜଣଙ୍କୁ ଗୁଳିବଦ୍ଧ କରି ଚିର ନିଦ୍ରାରେ ଶୁଆଇ ଦେଲେ । ୮୪ ବର୍ଷର ଜଣେ ସମାଜସେବୀ ସନ୍ଥପୁରୁଷଙ୍କୁ ଅମାନବିକ ଭାବେ ହତ୍ୟା କରାଗଲା ।

ସାରା ରାଜ୍ୟ ସ୍ତବ୍ଧ ହୋଇଗଲା । ଲକ୍ଷ ଲକ୍ଷ ହିନ୍ଦୁଙ୍କ ଆଖିରେ ଅଶ୍ରୁଳ ବେଦନା । ସ୍ଥାନୀୟ ଲୋକଙ୍କ ମନରେ ଅଧିକ ପ୍ରତିକ୍ରିୟା ଦେଖାଯିବା ସ୍ୱାଭାବିକ । କନ୍ଧ ଜନଜାତି ତାଙ୍କୁ ଧରଣୀ ପେନୁଙ୍କ ସଚ୍ଚା ସନ୍ତାନ ଭାବୁଥିଲେ । ତାଙ୍କ ସୁଖ ଦୁଃଖରେ ସେ ସାଥୀ ବୋଲି ଜାଣିଥିଲେ । ସେମାନଙ୍କ ପ୍ରତିକ୍ରିୟାକୁ ରାଜ୍ୟ ପ୍ରଶାସନ ଯେଭଳି ପରିଚାଳନା କଲା ତା'ର ପରିଣତି ଭୟାବହ ହୋଇ ଉଠିଲା । ସରକାରୀ କଳର ସଂଖ୍ୟାଲଘୁ ତାରଣ ଓ ହିନ୍ଦୁ ମାରଣ ନୀତି କ୍ରମଶଃ ମହଙ୍ଗା ହୋଇପଡ଼ିଲା । ରାଜ୍ୟରେ ଜନ ଜାଗରଣ ଦେଖାଗଲା । ସେଇ ନିଆଁରେ ଘିଅ ଢାଳିଲା ତା.୩୦.୦୯.୨୦୦୮ରେ ବିଶପ ରାଫେଲ ଚିନ୍ନାଥ ସୁପ୍ରିମ କୋର୍ଟରେ ଦାଖଲ କରିଥିବା ଏକ ପିଟିସିନ । ଏଇ ପିଟିସନ ଦେଇ ସେ ଦାବି କଲେ– ରାଜ୍ୟ ସରକାର ହିନ୍ଦୁ ସଂଗଠନକୁ କୌଣସି ଯାତ୍ରା ବା ସମ୍ମେଳନ କରିବାକୁ ଅନୁମତି ନ ଦିଅନ୍ତୁ ।

ଏହାର ପ୍ରତିକ୍ରିୟାରେ ସଚେତନଶୀଳ ଓଡ଼ିଆ ବୁଦ୍ଧିଜୀବୀମାନେ ଏକତ୍ର ହୋଇ 'ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଶ୍ରଦ୍ଧାଞ୍ଜଳି ସମିତି' ଗଢ଼ିଲେ । ସେଥିରେ ଡ. ରତ୍ନାକର ଚଇନି ସଭାପତି ଓ ଡ. ଲକ୍ଷ୍ମୀକାନ୍ତ ଦାଶ ସାଧାରଣ ସଂପାଦକ ରହିଲେ । ରାଜ୍ୟବ୍ୟାପୀ ବିଭିନ୍ନ ସ୍ଥାନରେ ସ୍ୱାମିଜୀଙ୍କ ଉଦ୍ଦେଶ୍ୟରେ ଦୀପଦାନ ଓ ଶ୍ରଦ୍ଧାଞ୍ଜଳି ସଭା ଅନୁଷ୍ଠିତ ହେଲା । ତୁରନ୍ତ ହତ୍ୟାକାରୀଙ୍କୁ ଗିରଫ କରିବା ପାଇଁ ସରକାରଙ୍କୁ ଜଣାଇ ଦିଆଗଲା । ସରକାର କେବଳ ଆଶ୍ୱାସନା ଦେଇ ଚାଲିଲେ । ଅପେକ୍ଷାର ବାଲିବନ୍ଧ ଭାଙ୍ଗିଗଲା । ୭ ନଭେମ୍ବର ୨୦୦୮ ତାରିଖରେ ଭୁବନେଶ୍ୱରଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ୧୫.୧୧.୦୮ ତାରିଖ ଦିନ ଏକ ବିଶାଳ 'ଶ୍ରଦ୍ଧାଞ୍ଜଳି ସଭା' କରାଯିବା ପାଇଁ ଘୋଷଣା କରାଗଲା ।

୧୫.୧୧.୨୦୦୮ ତାରିଖରେ ମୋ ସଭାପତିତ୍ୱରେ ଭୁବନେଶ୍ୱରଠାରେ ବହୁ ସାଧୁସନ୍ଥଙ୍କ ଉପସ୍ଥିତିରେ ତିନି ଲକ୍ଷରୁ ଉର୍ଦ୍ଧ୍ୱ ଲୋକଙ୍କ ସମାବେଶରେ ଐତିହାସିକ ଶ୍ରଦ୍ଧାଞ୍ଜଳି ସଭା ହେଲା । ହତ୍ୟାକାରୀଙ୍କୁ ଧରିବା ପାଇଁ ଆଉ କାଳବିଳମ୍ବ ନ କରି ଡିସେମ୍ବର ୧୫ ତାରିଖ ସୁଦ୍ଧା ଦୃଢ଼ ପଦକ୍ଷେପ ନେବାକୁ ପ୍ରସ୍ତାବ ଦିଆଗଲା । ଏହି ସମୟ ସୀମା ଅତିକ୍ରମ କରିଗଲେ ସଚେତନଶୀଳ ହିନ୍ଦୁ ଓଡ଼ିଆମାନେ ପୁଣି ଆନ୍ଦୋଳନକୁ ଓହ୍ଲାଇବେ ।

ତାହାହିଁ ହେଲା । ସ୍ୱାମିଜୀଙ୍କ ଉପରେ ହୋଇଥିବା ମରଣାନ୍ତକ ଆକ୍ରମଣର ବର୍ଷ ପୂର୍ତ୍ତି ଉପଲକ୍ଷେ ଡିସେମ୍ବର ୨୫ ତାରିଖରେ 'ଓଡ଼ିଶା ବନ୍ଦ' ଆହ୍ୱାନ ଦିଆଗଲା । ଓଡ଼ିଶା ସରକାର ଶ୍ରଦ୍ଧାଞ୍ଜଳି ସଭାରେ ବିପୁଳ ଜନସମାବେଶ ଦେଖି ଓ ଡିସେମ୍ବର ୨୫ ବନ୍ଦକୁ ପ୍ରବଳ ଜନ ସମର୍ଥନ ମିଳୁଥିବା ପୋଲିସ ସୂତ୍ରରୁ ଜାଣି ବାରମ୍ବାର ଆଲୋଚନା ପାଇଁ ବାର୍ତ୍ତା ପଠାଇଲେ । ଶେଷରେ ଆଲୋଚନାର ଯେଉଁ ସିଦ୍ଧାନ୍ତ ହେଲା, ଦୁଇ ପକ୍ଷର ଲିଖିତ ପ୍ରତିଶ୍ରୁତି ଆକାରରେ ତାହା ପ୍ରକାଶିତ ହେଲା ।

ମୋର ଏବେବି ବିଶ୍ୱାସ, ସରକାର 'ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଶ୍ରଦ୍ଧାଞ୍ଜଳି ସମିତି'କୁ କେବଳ ପ୍ରତାରଣା କରି ନାହାନ୍ତି, ଦୀର୍ଘକାଳ ନିର୍ଦ୍ଦୟ ଭାବେ ବୃହତ୍ତର ଓଡ଼ିଶାର ଜନସାଧାରଣଙ୍କ ଧର୍ମଧାରଣା ଓ ମାନସିକତାକୁ ଅତ୍ୟାଚାର କରିଚାଲିଛନ୍ତି । ଏହାପରେ ଯେତେ ଥର ସାକ୍ଷାତ୍ ଆଲୋଚନା କରିବାକୁ ଯାଇଛୁ, କେହି ଧରାଛୁଆଁ ଦେଇ ନାହାନ୍ତି । ଜଣେ ଶୁଦ୍ଧପ୍ରାଣ ଦେଶପ୍ରେମୀ ସନ୍ଥର ଆତ୍ମା ସ୍ୱର୍ଗରେ ଥାଇ ଏହାର ସୁବିଚାର ପାଇଁ ଅପେକ୍ଷା କରିଥିବ ନିଶ୍ଚୟ ।

ଏତଦ୍ୱାରା ମୁଁ ଘୋଷଣା କରୁଛି ଯେ ଉପରୋକ୍ତ ପ୍ରଦତ୍ତ ସମସ୍ତ ବିଷୟ ମୋ ଦ୍ୱାରା ଲିଖିତ ଏବଂ ସତ୍ୟ ଅଟେ । ଏହା ମୁଁ ମୋର ସୁସ୍ଥ ମନରେ ଘୋଷଣା କରୁଅଛି ।

ଜଷ୍ଟିସ୍ ଶରତ ଚନ୍ଦ୍ର ମହାପାତ୍ର ଶୁଣାଣି କରିଥିଲେ ସହୃଦୟତାର ସହିତ । ଇତିମଧ୍ୟରେ ତାଙ୍କର ଦେହାନ୍ତ ହୋଇଗଲାଣି । ଜଷ୍ଟିସ୍ ନାଇଡୁ ତାଙ୍କ ଅଧା କାମ ପୂରା କରିବାର ଦାୟିତ୍ୱ ଗ୍ରହଣ କରିଛନ୍ତି । ମୁଁ ଯାହା ଜାଣିଚି, ସେ ବି ଜଣେ ବିଚାରବନ୍ତ ଭଲ ମଣିଷ । ତେବେ ସବୁ କଥା ନିର୍ଭର କରେ ସରକାରଙ୍କ ମନୋଭାବ ଉପରେ । ସରକାରୀ ନିରୁତ୍ସାହ ଯୋଗୁଁ ଗଣ୍ଡା ଗଣ୍ଡା କମିଶନ ରିପୋର୍ଟ ଫାଇଲ ଗଦା ଭିତରେ ପଡ଼ି ରହୁଚି । ତାହାହିଁ ଏ ଦେଶର ଦୁର୍ଭାଗ୍ୟ ।

ସ୍ୱାମୀ ଲକ୍ଷ୍ମଣାନନ୍ଦଙ୍କ ପରିଣତି ସହିତ ଦେଶ ପାଇଁ କିଛି କରିବାର ମୋହ ଓ ଦୁର୍ବାର ଲାଳସାର ଅପମୃତ୍ୟୁ ଘଟିଲା । ପ୍ରତାରଣା ଓ ପ୍ରବଞ୍ଚନାର ମହାସମର ଭୂମିରେ ନିକ୍ଷେପିତ ହୋଇଗଲା ସତ୍ୟ ଓ ବାସ୍ତବତାର କୋମଳ କଳିକା । ଏଇ ତ ମୋର ଜୀବନ ।

।। ସତେଇଶି ।।

# କମାର ଭାତିରେ ଅବଶିଷ୍ଟ ଆୟୁଷ

ନିଷ୍ଠୁର ସମୟ !

ଗୋଟିଏ ଦମ୍ଭିଲା ପ୍ରାଣର ତୁମ ଉଦ୍ଦେଶ୍ୟରେ ସହସ୍ର ପ୍ରଣାମ । ଜୀବନରେ ଏଭଳି ଏକ ଦୁର୍ଦ୍ଦିନ ଆସିବ, ତାହା କେବେ କଳ୍ପନା କରିପାରି ନ ଥିଲି ମୁଁ । ସ୍ୱଭାବରେ ପ୍ରଚଣ୍ଡ ଈଶ୍ୱର ବିଶ୍ୱାସୀ । ଜାଣତରେ କେବେ କାହାରି ଅନିଷ୍ଟ କରିବା କଥା ମୁଁ ଭାବିପାରି ନାହିଁ । ତଥାପି ମୋ ହସଖୁସିର ସଂସାର ଉପରେ ଏପରି ବଜ୍ରପାତ ହେବାର ସାମାନ୍ୟତମ କାରଣ ଖୋଜି ପାଉ ନାହିଁ ଏଯାଏ । ମୋର ଅବଶିଷ୍ଟ ଜୀବନ ବୋଧେ ମାନସିକ ଓ ଶାରୀରିକ ଯନ୍ତ୍ରଣାର ଅବରୁଦ୍ଧ କୋଠରିଟିଏ ହେଇ ରହିଯିବ । ସମୟ, ତୁମେ କେବଳ ନିରପେକ୍ଷ ଦର୍ଶକ ହୁଅ ।

ଜୀବନର ଦୁଃଖ ଯନ୍ତ୍ରଣାରୁ ନାନାବାୟା ଗୀତ ଗାଇ ସାମ୍ନା କରି ଚାଲିଥିଲି । ସମ୍ମାନର ସହ ବଞ୍ଚିବାର ଦମ୍ଭ ନେଇ ଅପ୍ରତିହତ ଭାବେ ଆଗେଇ ଥିଲି । ଶାରୀରିକ ପୀଡ଼ାକୁ ମହାଦ୍ରୁମ ବୋଲି କେବେ ଭାବି ନ ଥିଲି । ୨୦୦୪ ମସିହା ଡିସେମ୍ବର ୧୫ ତାରିଖ– ଏମିତି ଗୋଟିଏ ଅଘଟଣର କଳା ବାଦଲ ଘୋଟି ଆସିଥିଲା ମୋ ଜୀବନରେ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ଏମ୍.ଫିଲ୍. ମୌଖିକ ପରୀକ୍ଷା କରିବାକୁ ଯାଇଥିଲି ବୁର୍ଲା । ଭୋର ପାଞ୍ଚଟା ସମୟ । ଦ୍ରୁତଗାମୀ ବସ୍‌ରୁ ଓହ୍ଲାଇ ଚାଲି ଚାଲି ପାହାଡ଼ ଉପର ଗେଷ୍ଟହାଉସ୍‌କୁ ଉଠିଯାଇଥିଲି ହାତରେ ବ୍ୟାଗଧରି । ଡିସେମ୍ବର ମାସ ସକାଳୁଆ ମଞ୍ଜଥରା ଶୀତ । ଗେଷ୍ଟହାଉସ୍‌ରେ ପହଞ୍ଚିଲା ବେଳକୁ ଦେହରୁ ଗମ୍‌ଗମ୍ ଝାଳ ବୋହୁଥିଲା । ଛାତି ଥରୁଥିଲା ଦମ୍‌ଦମ୍ ହେଇ ।

ସକାଳୁ ମତେ ସେଠି ଅପେକ୍ଷା କରିଥିଲା ମୋର ପ୍ରିୟ ଛାତ୍ର ପ୍ରଫେସର କୁମୁଦରଂଜନ ପାଣିଗ୍ରାହୀ । ଦେଖୁ ଦେଖୁ ସେ ମତେ ପଚାରିଲା– ସାର୍ ! ଦେହ

ଭଲ ଲାଗୁନି କି ? ମୋର ଯାହା ହେଉଥିଲା ମୁଁ କହିବାରୁ ସେ ବୁର୍ଲା ମେଡ଼ିକାଲ ଡାକ୍ତରଙ୍କ ସହିତ ପରାମର୍ଶ କଲା । ଡାକ୍ତର ସାହୁ କହିଲେ, ତାଙ୍କୁ ମେଡ଼ିକାଲ ନେଇ ଆସନ୍ତୁ । ସେହି ଅନୁସାରେ ମତେ ସେଠିକି ସ୍ଥାନାନ୍ତର କରାଗଲା ଏବଂ ହାର୍ଟ ପ୍ରବ୍ଲେମ୍ ଦେଖା ଦେଇଚି ସ୍ଥିର କରି ଆଡ଼ମିଶନ କରି ଦିଆଗଲା ।

ବାସ୍, ଆରମ୍ଭ ହେଇଗଲା ଯନ୍ତ୍ରଣାର ନୂତନ ପର୍ବ । ଏଣେ କଟକ ଘରେ ଆମର କାନ୍ଦବୋବାଳି । ପୁଅ ସତ୍ୟକାମ ଆଉ କି ଥୟ ହୋଇ ରହିପାରିଲା ! ସେ ଆମ ଗାଁର ଜଣେ ପିଲା (କପିଳା)କୁ ସାଙ୍ଗରେ ଧରି ଗାଡ଼ି ଡ୍ରାଇଭ୍ କରିଯାଇ ବୁର୍ଲାରେ ହାଜର । ମୁଁ ଯେତେବେଳେ ତାକୁ ସେଠି ଦେଖିଲି, ନିଜକୁ ବିଶ୍ୱାସ କରିପାରିଲି ନାହିଁ । କି ଦୁଃସାହସ ଏ ପିଲାର । ଦିନେ କାଳେ ସେ ଏ ରାସ୍ତାରେ ଗାଡ଼ି ଚଳାଇଯାଇ ନ ଥିଲା । ବାପାକୁ ରୋଗ ହାତରୁ ମୁକୁଳାଇ ନେବାର ସାହସ । କେଡ଼େ ସାନ ପିଲାଟେ । ଏମ୍.ବି.ଏ. ପଢୁଥିଲା । ଆଖି ଆଗରେ ତାକୁ ଦେଖି ଲୁହ ସମ୍ଭାଳି ରଖିପାରିଲି ନାହିଁ । ସେ ମତେ ଆଶ୍ୱାସନା ଦେଇ କହିଲା, ତୁମେ ଏଥର ବ୍ୟସ୍ତ ହୁଅନି ବାବା; ମୁଁ ପରା ଆସିଗଲିଣି । ମୁଁ ସେଇ ଗେଷ୍ଟ ହାଉସରେ ରହିଚି । ମୋ ପାଇଁ କିଛି ଚିନ୍ତା କରନି ।

ମୋ ଅସୁସ୍ଥତା କଥା ସମ୍ବାଦପତ୍ରରେ ବାହାରିଗଲା ।

ବହୁ ମାନ୍ୟଗଣ୍ୟ ବ୍ୟକ୍ତି ବୁର୍ଲା ମେଡ଼ିକାଲ ପ୍ରିନ୍ସିପାଲଙ୍କୁ ଫୋନ୍ କରି ମତେ କଟକ ମେଡ଼ିକାଲକୁ ଅଧିକ ସୁବିଧା ପାଇଁ ପଠାଇ ଦେବାକୁ ସୁପାରିଶ କଲେ । ସେତେବେଳେ ବୁର୍ଲା ମେଡ଼ିକାଲର ବାତାନୁକୁଳିତ ଆମ୍ବୁଲାନ୍ସ ଅଚଳ ଥିଲା । ସାଂସଦ ଅନାଦି ସାହୁଙ୍କ ଅନୁରୋଧ କ୍ରମେ ମନ୍ତ୍ରୀ ଜୟନାରାୟଣ ମିଶ୍ର ଏକ ଘରୋଇ ଆମ୍ବୁଲାନ୍ସ ଯୋଗାଡ଼ କରିଦେଲେ । ମୁହଁରେ ଭେଣ୍ଟିଲେଟର୍ ଲଗାଇ ଜଣେ ଡାକ୍ତରଙ୍କ ତତ୍ତ୍ୱାବଧାନରେ ମତେ କଟକ ଅଣା ହେଲା । ମୁଁ କଟକମୁହାଁ ହେଲାବେଳକୁ ବୋଧେ ସୁସ୍ଥ ହେଇସାରିଥିଲି । କାରଣ ଡାକ୍ତରଙ୍କୁ କହି ଭେଣ୍ଟିଲେଟରଟି କାଢ଼ି ଦେବାରୁ ମୋର ଫେରିବା ଯାତ୍ରା ସ୍ୱାଭାବିକ ହେଲା ।

ମୁଁ କଟକରେ ପହଞ୍ଚି ଭେଟିଲି ମୋର ପରିଚିତ ମୁହଁମାନଙ୍କୁ । ହୃଦରୋଗ ପ୍ରଫେସର ଡାକ୍ତର ହୃଦାନନ୍ଦ ମିଶ୍ର ମୋର ବହୁ ଜଣାଶୁଣା । ମୋ ଦାୟିତ୍ୱ ନେବାକୁ ତାଙ୍କୁ ପୂର୍ବରୁ ଅନୁରୋଧ କରିଥିଲେ ସାଂସଦ ବ୍ରହ୍ମାନନ୍ଦ ପଣ୍ଡା ଓ ଅନାଦି ସାହୁ । ହୃଦାନନ୍ଦ ବାବୁ ତାଙ୍କ ବିଭାଗର ଆଇ.ସି.ୟୁ.ରେ ଗୋଟାଏ ସିଟ୍ ବନ୍ଦୋବସ୍ତ କରି

ସେମାନଙ୍କୁ କହିଥିଲେ, ଆପଣମାନେ ଜମା ବ୍ୟସ୍ତ ହୁଅନ୍ତୁନି; ସେ ଏସ୍.ସି.ବି.ରେ ପହଞ୍ଚିଲେ ମୋର ସର୍ବୋଚ୍ଚ କେୟାର୍‌ରେ ରହିବେ । ତେଣିକି ସେ ମୋ ଲୋକ ।

କଟକରେ ପୁଣିଥରେ ସବୁ ପରୀକ୍ଷା ହେଲା ।

ବୁର୍ଲା ରିପୋର୍ଟ ଅନୁସାରେ ଆଂଜିଓଗ୍ରାମ ବା ଆଂଜିଓପେଷ୍ଟ ହେବା କଥା । ହୃଦାନନ୍ଦ ବାବୁଙ୍କ ସହ ଏକ ଡାକ୍ତର ଦଳ ସାତଦିନ କାଳ ସ୍ପେଶାଲ କ୍ୟାବିନ୍‌ରେ ରଖି ବାରମ୍ବାର ପରୀକ୍ଷା ଚଳାଇଲେ । ଥରେ ମେଡ଼ିକାଲରେ ଏବଂ ଆଉ ଥରେ ବାହାର ଲାବରଟୋରୀରେ ଟେଷ୍ଟ କରାଇଲେ । ଶେଷକୁ ନିଷ୍ପତ୍ତି ନେଇ କହିଲେ- 'ଆପଣ ଏବେ ଘରକୁ ଯାଆନ୍ତୁ । ଆମେ ଏବେ କିଛି ବ୍ଲକେଜ୍ ପାଇଲୁ ନାହିଁ । ପନ୍ଦର ଦିନ ପରେ ଏଠିକି ଆସିବେ । ପୁଣି ପରୀକ୍ଷା କରିବା । ତା'ପରେ ଦେଖିବା ।'

ଘରକୁ ଆସି ମୁଁ ସ୍ୱାଭାବିକ ଜୀବନ ବିତାଇଲି ।

କିଛି ଗୋଟାଏ ହୋଇଥିଲା, ମନକୁ ହେଜ ଆସିଲାନି ।

ପନ୍ଦର ଦିନ ପରେ ପୁଣି ମେଡ଼ିକାଲ ଗଲି ।

ରୁଟିନ୍‌ବନ୍ଧା ଧାରାରେ ସବୁ ପ୍ରକାର ଟେଷ୍ଟ କରା ହେଲା । କିଛି ତ୍ରୁଟି ବାହାରିଲା ନାହିଁ । ମାତ୍ର କେତୋଟି ମେଡ଼ିସିନ୍ ମୋର ଜୀବନ ସହଚର ହେଇଗଲା । ଏଇ ଅନୁଭୂତିକୁ କେନ୍ଦ୍ର କରି ଗୋଟିଏ ଗଳ୍ପ ଲେଖିଥିଲି । 'ପ୍ରଥମ ନରକ ଦର୍ଶନ'- ମେଡ଼ିକାଲ ରହଣିର ଅନୁଭୂତି ।

ଭୁଲିଗଲି ଏସବୁ ଯନ୍ତ୍ରଣା-

ପୁଣି ସାହିତ୍ୟ ଓ ଅନୁଷ୍ଠାନ କାମରେ ମାତିଲି ।

ସଭା ସମିତିରେ ଯୋଗ ଦେଲି ।

ସାମାଜିକ ଓ ସାଂସ୍କୃତିକ ଜୀବନ ପ୍ରବାହରେ ଭୁଲିଗଲି ଦୁଃଖ ଯନ୍ତ୍ରଣାର ଏମିତି ଏକ ସମୟ ଆସିଥିଲା ବୋଲି । କିଛି ମାସ ପରେ ଏଭଳି ଯନ୍ତ୍ରଣାର ଦିନସବୁ ଆସିଲା ଯାହାକୁ ଭୁଲି ହେବାର ରାହା ପାଇଲିନି । ଭାତି ଭିତରର ତାତି ସହି ସହି ଅକର୍ମଣିଳା ଭଳି ପଡ଼ିରହିଲି । କୁଆଡ଼କୁ ଖସିଯିବାର ବାଟଖୋଜି ପାଇଲିନି । କେବଳ ଈଶ୍ୱରଙ୍କୁ ଡାକିଲି ଆର୍ତ୍ତ କଣ୍ଠରେ ।

ମୋର ଏକକ ପରିବାରଟି ନିହାତି ଛୋଟ । ଆମେ ସ୍ୱାମୀ-ସ୍ତ୍ରୀ, ଆମର ପୁଅଟିଏ ସତ୍ୟକାମ ଏବଂ ଝିଅଟିଏ ଅମୃତା । ପୁଅ ଅର୍ଥନୀତିର ସ୍ନାତକ ଓ ଏମ୍.ବି.ଏ. । କ୍ୟାରିଅର୍ ସାରା ଫାଷ୍ଟକ୍ଲାସ । ବାପ-ମାଆଙ୍କ ଆଖି ଆଗରେ ରହିବ

ଏବଂ ତାଙ୍କର ଭଲମନ୍ଦକୁ ଦେଖିବ ବୋଲି ତାକୁ ରାଜ୍ୟ ବାହାରକୁ ଚାକିରି ପାଇଁ ପଠାଇଲୁ ନାହିଁ । ଓଡ଼ିଶା ଭିତରେ ସେ ବ୍ୟାଙ୍କ୍ ଓ କଂପାନୀ ଚାକିରି କଲା । ଗୋଟିଏ ଚାକିରିରୁ ଆଉ ଗୋଟାକୁ ଡିଆଁ ମାରିଲା । ଏହାହିଁ କୁଆଡ଼େ ଏହି ସମୟର କର୍ମଧାରା ।

ଅମୃତା ବିଜ୍ଞାନ ପଢ଼ିଲା । ତା'ପରେ ଇଂଜିନିୟରିଂ ଲାଇନ୍ ଧଇଲା । ସେ କମ୍ପ୍ୟୁଟର ଇଂଜିନିୟର ହେଲା । ଅତି ଗେହ୍ଲାରେ ବଢ଼ିଥିଲା ସେ । ଜିଦି କଲା ଚାକିରି କରିବ । ଆମର ସର୍ତ୍ତ ହେଲା ଚାକିରି କର: ଆପତ୍ତି ନାହିଁ । କିନ୍ତୁ ତୋ ବାହାଘର ପରେ ତୋ ଶାଶୁଘର ଲୋକେ ଯୋଉ ନିଷ୍ପତ୍ତି ନେବେ ତତେ ତାହା ମାନିବାକୁ ପଡ଼ିବ ।

– 'ସେତେବେଳେ ଦେଖିବା ।' ଏହା ସେ ଉତ୍ତର ଦେଲା ।

ଯୋଗକୁ ତା'ର ଗୋଟେ ଚାକିରି ଜୁଟିଗଲା । ତିନି ଚାରି ମାସ ସେ କାମ କରିଚି, ହଠାତ୍ ବାହାଘର ସ୍ଥିର ହେଇଗଲା । ଫିଲୋସଫି ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ନାତି, ତାଙ୍କ ଦ୍ୱିତୀୟ ପୁଅ ଡାକ୍ତର ଦେବରଂଜନ ମିଶ୍ରଙ୍କର ଏକମାତ୍ର ପୁଅ ଇଂଜିନିୟର ପିନାକୀ ମିଶ୍ର । ଆମେ ଚାହୁଁଥିଲୁ ଆଉ ବର୍ଷେ ଛ'ମାସ ପରେ ବାହାଘର କରିବାକୁ । ମାତ୍ର ସେମାନେ ତରତର ଥିଲେ । କାରଣ ପୁଅର ଆମେରିକା ଯିବାର ଥିଲା । ଅମୃତାକୁ ରାଜି କରାଇ ବାହାଘର କରାଇ ଦେଲୁ । ବାହାଘରର ପନ୍ଦର ଦିନ ପରେ ଦୁହେଁ ପୁନେ ଗଲେ; ସେଠି ପନ୍ଦର କୋଡ଼ିଏ ଦିନ ରହି ଆମେରିକା ଗଲେ, ପିନାକୀଙ୍କ ଆଇ.ଟି. କଂପାନୀ ତରଫରୁ ।

ଏମିତିରେ ଅମୃତାର ଚାକିରି ମୋହ ତୁଟିଗଲା । ସ୍ୱାମୀ ସହିତ ସେ ଉଡ଼ା ଚଢ଼େଇ ହେଇ ଉଡ଼ିଗଲା ଆମେରିକାକୁ । ପରିବାରରେ ତା'ର ଜଞ୍ଜାଳ ନ ଥିଲା । ଥିଲାବାଲା ଘର । ଶାଶୁ ଶ୍ୱଶୁର ବି କେତେ ମାସ ଯାଇ ପୁଅବୋହୂ ପାଖରେ ରହି ବିଦେଶ ବୁଲି ଆସିଲେ । ସେଠିକା କାମ ସାରି ପିନାକୀ-ଅମୃତା ପୁନେ ଫେରି ଆସିଲେ ପ୍ରାୟ ବର୍ଷକ ପରେ । ଝିଅ ଆମର ଖୁସି । ବାପ-ମାଆ ସେତିକି ଆଶା କରନ୍ତି । ତାହାହିଁ ଈଶ୍ୱରଙ୍କ ପାଖରେ କାମନା ଥିଲା ।

ଝିଅ ବାହା ହେବାର ଅଢ଼େଇ ବର୍ଷ ପରେ ସତ୍ୟକାମର ବାହାଘର ସ୍ଥିର କଲି । ଘରୁ ଝିଅ ଗଲାପରେ ଘର ଖାଲି ଖାଲି ଲାଗୁଥିଲା । ବୋହୂଟିଏ ଆସିଲେ ଝିଅ ଜାଗା ନେବ । ବୋହୂ ଖୋଜା ଚାଲିଲା । ବଡ଼ବଡ଼ିଆଙ୍କ କୁହା-କଥା ମନକୁ

ଆସିଲା । ସେମାନେ କହନ୍ତି– ଝିଅ ଦେବ ବଡ଼ଘରେ; ଆଣିବ ଛୋଟ ଘରୁ । ମାତ୍ର ବହୁ ପ୍ରସ୍ତାବ ବଡ଼ ଘରୁ ହିଁ ଆସିଲା । ଝିଅ ବି ମନକୁ ଆସୁ ନ ଥିଲା । ଶେଷକୁ ଝିଅଟିଏ ବାଛିଲୁ । ଯୋଗବାଟ କଢ଼େଇ ନେଲା ସେଠିକି । ଦୁର୍ଦ୍ଦିନର ଘୂର୍ଣ୍ଣିବଳୟ ଭିତରକୁ ଆମେ ଟାଣି ହେଇଗଲୁ ।

ଏବେ ମନେପଡୁଚି ବୁର୍ଲାରେ ସତ୍ୟକାମ କହିଥିବା କଥା ।

'ତମେ ବ୍ୟସ୍ତ ହୁଅନି ବାବା; ମୁଁ ଆସିଗଲିଣି ।'

ରୋଗ ସାଙ୍ଗରେ ଲଢ଼େଇ କରି ଘରକୁ ଫେରାଇ ନେବାର ମନରେ ଅମାପ ସାହସ ତା'ର । ହେଲେ ମୁଁ ତା' ପାଇଁ କଲି କ'ଣ ? ସମସ୍ତେ ଯାଇ ଦେଖିଲୁ; ମିଛର ନାନାବାୟା ଗୀତ ଶୁଣି ଭଳିଲୁ । କିନ୍ତୁ ଏବେ ମୋ ମନକୁ ଦୋଷ ଛୁଉଁଚି । ସୁନାମୁଣ୍ଡା ଭଳି ପିଲାକୁ ଆବର୍ଜନା ଗଦାରେ ବସେଇ ଦେଲି ! ସମୁଦି–ସମୁଦୁଣୀ, ସାନଭାଇ ଶରତ ଓ ବଡ଼ଭାଇର ପୁଅ ବୁଟୁ ଏବଂ ଆମେ ଦୁହେଁ ଦେଖି ମନୋନୀତ କରିଥିଲେ ବି ସବୁଯାକ ଦୋଷ ମୋର । ମୁଁ ବୋହୂଟିଏ ଘରକୁ ଆଣିବାକୁ ପାଗଳ ହୋଇ ପଡ଼ିଥିଲି । ତେଣୁ ସବୁ ବିଭ୍ରାଟ ହେଇଗଲା ।

ତା.୨୯.୦୬.୨୦୧୧ରିଖ; ବାହାଘର ତିଥି ସ୍ଥିର ହେଲା ।

ତା'ପରେ ଜ୍ୟେଷ୍ଠ ମାସ; ପୁଅ ବଡ଼ ।

ଆଉ ତିଥି ନାହିଁ । ତେଣୁ ମୁଦି ପିନ୍ଧାଇ ମହାପ୍ରସାଦ ଥାଳି ଟେକି ସେଇ ଯିବା ଦିନ ସତ୍ୟପାଠ କରି ଫେରିଲୁ । ଅବଶ୍ୟ ଜଗନ୍ନାଥ ମହାପ୍ରୁ ଓହରି ଆସିବାକୁ ଅନେକ ସଙ୍କେତ ଦେଇଥିଲେ । ଝିଅର ବାପ ପାରାଦୀପ ପୋର୍ଟ ୟାର୍ଡରେ ଏୟାର ମାର୍ଶାଲ ଅଛନ୍ତି ବୋଲି କହିଥିଲେ । ମୁଁ ଭ୍ରମ ସଂଶୋଧନ ପାଇଁ ପଚାରିଥିଲି– ଏୟାର ମାର୍ଶାଲ ତ ଆର୍ମିର ଆକାଶବାହିନୀ ପଦ; ଆପଣ ୟାର୍ଡ ମାଷ୍ଟର ପଦବୀରେ ଅଛନ୍ତି ବୋଧେ ?

ସେ କହିଲେ– ହଁ, ହଁ, ସେଇୟା ।

ଲିଲି ଏବଂ ସମୁଦୁଣୀ ପଚାରିଲେ– ଏଡ଼େ ବଡ଼ ପୋଷ୍ଟରେ ରହି, ଏ ପିଅନ କ୍ୱାଟରରେ ଅଛନ୍ତି କାହିଁକି ?

ଝିଅର ମା' କହିଲେ, ତିନିଟା ଝିଅକୁ ନେଇ ବଡ଼ ଘରେ ରହିବାକୁ ସାହସ ପାଇଲାନି । ଇଏ ଛୋଟ ଘର ହେଲେ ବି ତିନି ମହଲା ଉପରେ । ନିରାପଦ । ସବୁ ଆଡ଼କୁ ତ ପୁଣି ଦେଖିବାକୁ ପଡ଼ିବ ।

ତାଙ୍କ କଥାକୁ ଏମାନେ ସତ ମଣିଲେ ।

ବାହାଘର ଦିନ ପାଖେଇ ଆସିଲା ।

ତାଙ୍କ ମିଛର ଗୋଟି ଗୋଟି ସତ ରୂପ ପଦାକୁ ଆସିଲା । ସେ ତଳିଆ ଚାକିରି କରିଛନ୍ତି । ସେଇ ମୁତାବକ କ୍ୱାଟର ମିଳିଛି । ୟାର୍ଡ ମାଷ୍ଟର ଆଉ ଜଣେ ପଣ୍ଡାବାବୁ ଥିଲେ । ସେ ନିକଟରେ ଅବସର ନେଇଛନ୍ତି । ଇଏ ତାଙ୍କ ପରିଚୟକୁ ନିଜର କରି ଚଳେଇଛନ୍ତି । ତାଙ୍କର ଅସଲ ସ୍ୱରୂପ ଜଣାପଡ଼ିଲା ବାହା-ମଣ୍ଡପ ସ୍ଥିର କଲାବେଳେ । ପାରାଦୀପରେ ସେ ବିବାହ କରାଇବାକୁ ରାଜି ହେଲେ ନାହିଁ । ଏଠି ତାଙ୍କର ନିଜ ଲୋକ କେହି ନାହାନ୍ତି ବୋଲି କହିଲେ । ସେ କଟକରେ କରିବାକୁ ଚାହୁଁଛନ୍ତି; କିନ୍ତୁ ତାଙ୍କୁ ମଣ୍ଡପ ମିଳୁ ନାହିଁ ।

ମୁଁ ଏଥର ତାଙ୍କ ଅବସ୍ଥା ଜାଣିପାରି ଖୋଲା ହେଲି । ସେ ଜଣେ ଲୋକ (ମହାନ୍ତି ବାବୁ)ଙ୍କୁ ସାଙ୍ଗରେ ଧରି ଆସି ଆମ ଘରେ ପହଞ୍ଚିଲେ । ସେଦିନ ମୋ ସାନଭାଇ ଶରତ ଆସିଥିଲା । ସେମାନେ ମଣ୍ଡପ କଥା କହିଲେ ଓ ଦବା-ନବା କଥା ଉଠାଇଲେ । ମୁଁ ତାଙ୍କୁ କହିଲି- ଆମ ଘର ଭିତର ବୁଲିଯାଆନ୍ତୁ । ଗୋଟାଏ ପୁଅର ଚଳିବା ପାଇଁ ଯାହା ଯାହା ଦରକାର ଠାକୁରେ ଏ ଘରକୁ ଜୁଟେଇ ଦେଇଛନ୍ତି । କେବଳ ବିଧିରକ୍ଷା ପାଇଁ ଗୋଟେ ନୂଆ ଖଟବିଛଣା ଦେବେ । ବାସ୍, ଏତିକି ।

ଏକଥା ଶୁଣି ସେମାନେ ଖୁସି ହେଇଗଲେ ।

– 'ଆଉ ମଣ୍ଡପ କଥା ।'

'ଆମର ପ୍ରୀତିଭୋଜନ ପହିଲା ଦିନ ଦ୍ୱାରକା ହୋଟେଲରେ କରିବାର ସ୍ଥିର ହୋଇଛି । ୨୯ ତାରିଖ ଦିନରେ ଆପଣଙ୍କର କେତେ ଲୋକ ହେବେ ବନ୍ଧୁବାନ୍ଧବ ସହିତେ ?' – ମୁଁ ପଚାରିଲି ।

ସେ କହିଲେ, ପଚିଶିରୁ ତିରିଶ ।

ମୁଁ କହିଲି, ଆମ ବରଯାତ୍ରୀ ସେତିକିରୁ ବେଶି ଯିବୁନି, ହେଲା– ?

ତା'ପରେ ମୁଁ ଦ୍ୱାରକା ହୋଟେଲ ସାଙ୍ଗରେ କଥା ହେଲି । ସେଦିନ ରାତିରେ ତାଙ୍କର ସେଠି ଗୋଟେ ବାହାଘର ଭୋଜି ଥିଲା । ମୋ ଅନୁରୋଧରେ, ଆମ ଅସୁବିଧାକୁ ବିଚାର କରି ଦିନବେଳ ପାଇଁ ସେ ମଣ୍ଡପ ଦେବାକୁ ରାଜି ହେଲେ । ହଲ୍ ଭଡ଼ା ନେଲେ ନାହିଁ । କେବଳ ବିଦ୍ୟୁତ୍ ଖର୍ଚ୍ଚ ନେଲେ । ବାହାଘର ହେଲା ।

ପ୍ରୀତିଭୋଜନ ଯାକଜମକରେ ସଇଲା ।

ମୋ ଝିଅ ଜ୍ୱାଇଁ ଚାହିଁଲେ, ତାଙ୍କ ଭାଇନା ଭାଉଜଙ୍କୁ ସାଙ୍ଗରେ ପୁନା, ଶିରିଡ଼ି ଆଦି ବୁଲିବା ପାଇଁ ନେଇଯିବାକୁ । ମୁଁ ବୋହୂର ବାପକୁ ପଚାରିଲି– ଅଷ୍ଟମଙ୍ଗଳା ପରେ ସେ ବାପଘରକୁ ଯିବା କଥା । ମୋ ଝିଅ ଜ୍ୱାଇଁ ଚାହୁଁଚନ୍ତି ଏମାନଙ୍କୁ ସାଙ୍ଗରେ ପୁନେ ନେଇ ଯିବାପାଇଁ । କ'ଣ କରିବା ?

ସେ କହିଲେ, ସେମାନେ ଯାଆନ୍ତୁ ପୁନେ । କଟକ ଫେରିଲା ପରେ ସତ୍ୟକାମଙ୍କ ଛୁଟି ଦେଖି ଏଠିକି ଆସିବେ । ଆସନ୍ତୁ, ତରତର କିଛି ନାହିଁ ।

ସେମାନେ ଫ୍ଲାଇଟ୍‌ରେ ପୁନେ ଗଲେ । ଯିବାଆସିବା ଦି'ଦିନ ଛାଡ଼ି ଛ'ଦିନ ପାଇଁ ବୁଲାବୁଲିର ପ୍ରୋଗ୍ରାମ୍ କଲେ । ମାତ୍ର ଗୋଟାଏ ଦିନ ଆଗରୁ ସେମାନେ ଫେରି ଆସିଲେ କଟକ । ଆମ ମନରେ ସନ୍ଦେହ ହେଲା । ଝିଅ ଅମୃତାକୁ ଫୋନ୍ କରି ପଚାରିଲୁ । ସେ ଏକ ଚାଞ୍ଚଲ୍ୟକର ଖବର ଦେଲା । ଭାଉଜ ତାଙ୍କ ପୁରୁଣା ପ୍ରେମିକ ସହିତ କମ୍ପ୍ୟୁଟରରେ ଚାଟିଂ କରୁଥିଲେ । ଭାଇନା ସେଗୁଡ଼ାକ ପଢ଼ି ଦେଲା । ତା'ପରେ ମନ ଫଟାଫଟି । ବୁଲାବୁଲି ବନ୍ଦ କରି ସେମାନେ ଫେରିଗଲେ ।

ମୋ ସ୍ତ୍ରୀ ଲିଲି ପୁଅକୁ ଏ ଘଟଣା ସଂପର୍କରେ ପଚାରି ବୁଝିଲେ । ସେ ସବୁକଥା ମାଆକୁ ଖୋଲି କହିଲା । ଆହୁରି ମଧ୍ୟ କହିଲା– ମୁଁ ତାକୁ ଶୁଣେଇ ଦେଇଚି; ତମ ଅତୀତକୁ ମୁଁ ଭୁଲିଯିବି, ଯଦି ଏଣିକି ସେ କଥା ରିପିଟ୍ ନ ହୁଏ । ଦେଖାଯାଉ, ସେ କେତେ ରକ୍ଷା କରୁଚି ତା' କଥା ।

ସତ୍ୟକାମ ଅଫିସ କାମରେ ଜଏନ୍ କଲା ।

ସେ ଏସ୍, ଚାନ୍ଦ ହାର୍‌କୋର୍ଟରେ ଇ-ଲର୍ଣ୍ଣି ମ୍ୟାନେଜର ଭାବେ କାମ କରୁଥିଲା । ମଝିରେ ମଝିରେ ଟୁର୍ ପଡୁଥିଲା । ବୋହୂ ଘରେ ବସି ବସି କୁଟାଖଣ୍ଡକ ଦି'ଖଣ୍ଡ କରୁ ନ ଥିଲା । ଅନବରତ ଫୋନ୍, ନ ହେଲେ ଟିଭି ଦେଖା । ରାତି ଦିଇଟା ତିନିଟା ବେଳେ ବି ବାହାରୁ ଫୋନ୍ କଲ୍ ଆସୁଥିଲା । ପୁଅ ଟୁର୍‌ରେ ଥିଲେ ତାକୁ କେବେ ସେ ଫୋନ୍ କରି କହେ– ମୁଁ ଏ ବୁଢ଼ାବୁଢ଼ୀ ଦି'ଟାଙ୍କ ପାଖରେ ବୋଅର୍ ହେଇଯାଉଚି । ମତେ ନେଇ ପାରାଦୀପରେ ଛାଡ଼ିଦେଇ ଆସ ।

ପୁଅ କହିଲା– ''ଏମିତିଆ କଥା କ'ଣ କହୁଚ ? ସେମାନେ ପରା ଆମ ବାପା-ମା' ।''

ବୋହୂ ତାକୁ ଉତ୍ତର ଦେଲା– ''ଏମାନେ ମୋ ବାପା-ମାଆ ନୁହଁନ୍ତି; ମୋ ବାପା-ମା' ତ ପାରାଦୀପରେ ।''

କଥା ଏତିକିରେ ସୀମିତ ରହିଲା ନାହିଁ । ସତ୍ୟ ସାଙ୍ଗରେ ବଚସା କରି ମୁଣ୍ଡବାଳକୁ ବାରମ୍ବାର ଟାଣିବା, ଟିକେ କଥାରେ ରାଗିଯାଇ ମୋବାଇଲକୁ ତଳେ ଫୋପାଡ଼ି ଭାଙ୍ଗିବା, ରାତି ଅଧରେ ସ୍ୱାମୀ ସହିତ କଳିକରି ଫିନାଇଲ ବୋତଲ ଧରି ପିଇବାର ଚେଷ୍ଟା କରିବା ଭଳି କାର୍ଯ୍ୟ ଲାଗି ରହିଲା । ବନ୍ଧୁବାନ୍ଧବ କେହି ଆସିଲେ, ଚା' କପେ ନେଇ ଦେଇ ଆସିବାକୁ କହିଲେ- କହେ, ମୁଁ କୋଉ ବାଷ୍ଟାର୍ଡର ଚାକରାଣୀ ନୁହଁ; ନିଜେ ଯାଇ ଦିଅ ।

ଆମେ କେହି କାହା ସାଙ୍ଗରେ ଫୋନ୍‌ରେ କଥା ହେଉଥିଲେ, ସେ ଭାବେ ଆମେ ତା' ବାପାକୁ ତା' ନାଁରେ କଂପ୍ଲେନ୍ କରୁଚୁ । ତା' ବାପା ଆସିଲେ ତାଙ୍କୁ ଫୋନ୍ କଥା ସିଏ ପଚାରେ । ସେ ମନା କଲେ ଇଏ କହେ, ତମେ ମିଛ କହୁଚ ।

ସବୁ ଘଟଣାର ଚରମ ସୀମା ଆସିଲା ।

ଦଶହରା ବେଳକୁ ଘରକୁ ଆଉଥରେ ଯିବ । ଏଥର ବାପ ଆସି ସାଙ୍ଗରେ ନେବ । ଆମେ ମନା କଲୁନି । ଯାଉ, ବୁଲାବୁଲି କରି ଆସିଲେ ମୁଣ୍ଡ ଥଣ୍ଡା ହେଇଯିବ । ମୁଁ ବାପକୁ ପଚାରିଥିଲି- ଝିଅର ମୁଣ୍ଡ ଦୋଷ ଥିଲା କି ? ସେ ମନା କଲେ । କହିଲେ, ତା'ର ମେଣ୍ଟାଲ୍ ଡିପ୍ରେସନ ଥିଲା । ସେ ଯାହା ପଢ଼ିବାକୁ ଚାହୁଁଥିଲା ତାହା ହେଇପାରି ନ ଥିଲା । ତେଣୁ ସେ ଏମିତି ହୁଏ । ସେ କିଛି ନୁହଁ ।

ଅକ୍ଟୋବର ତିନି ତାରିଖ ମହାସପ୍ତମୀ ।

ବାପା ସାଙ୍ଗରେ ସେ ଗଲା । ବାର ତାରିଖ ଦିନ ଫେରିବ ବୋଲି କହିଗଲା । ସେଦିନ ବାପା ଆଣି ଛାଡ଼ି ନ ପାରିଲେ ଗାଡ଼ି ନେଇ ସତ୍ୟକାମ ଯାଇ ନେଇ ଆସିବ । ଯିବାକୁ ବାହାରିଲା ବେଳେ ସବୁତକ ଅଳଙ୍କାର ଆଭୂଷଣ ଆଟାଚିରେ ନେଉଥିବା ଦେଖି ଲିଲି ପଚାରିଲେ- ଆଠ ଦଶ ଦିନ ପରେ ତ ଆସିବୁ, ଏସବୁ ଯାକ ଧରି କାହିଁକି ଯାଉଚୁ ?

ସେ କହିଲା, ଦଶହରାରେ ବଡ଼ ଭଉଣୀ ଓ ସାଙ୍ଗସାଥୀ ସବୁ ଆସିବେ । ସେମାନେ ଦେଖିବେ, ମୋ ଶାଶୂଘର ମତେ କ'ଣ ପିନ୍ଧେଇଛନ୍ତି ।

ଦଶହରା କୁଆଁର ପୁନେଇ ଗଲା । ଅକ୍ଟୋବର ବାର ତାରିଖରେ ସତ୍ୟ ଫୋନ୍ କରି ପଚାରିଲା, ତମେ ଆଜି ଆସୁଛ ନା ମତେ ଯିବାକୁ ପଡ଼ିବ ?

ସେ ଉତ୍ତର ଦେଲା- ମୋ ଯିବା କଥା ମୋ ଗାଡ଼ିଆନ୍ କହିବେ । ମୁଁ ନୁହେଁ-

ସତ୍ୟକାମ ତା' ବାପାଙ୍କୁ ପଚାରିବାରୁ ସେ କହିଲେ, ଏତେ ବ୍ୟସ୍ତ କାହିଁକି ? ମୁଁ ଆସନ୍ତା ରବିବାର ନେଇ ଛାଡ଼ି ଦେଇ ଆସିବି ।

ସତ୍ୟ କହିଲା, ମୁଁ ମୋଟେ ବ୍ୟସ୍ତ ନୁହେଁ । ମୋ ଅଫିସ୍ କାମ ପାଇଁ ମୁଁ ବ୍ୟସ୍ତ । ମୋ ହାତରେ ଏବେ ସମୟ ନାହିଁ । ଆପଣ ଯୋଉ ରବିବାର ଆଣି ଛାଡୁଛନ୍ତି ଛାଡ଼ନ୍ତୁ । ଏଣିକି ଆପଣଙ୍କ ଦାୟିତ୍ୱ ।

ଅକ୍ଟୋବର ଗଲା । ନଭେମ୍ବର ଗଲା, ଡିସେମ୍ବର ୨୦ ତାରିଖ ବେଳକୁ ମୁଁ ଫୋନ୍ କଲି ପୁଅର ଶ୍ୱଶୁର ପଣ୍ଡାବାବୁଙ୍କୁ । – 'ଆପଣ ଟିକେ କଟକ ଆସନ୍ତେନି, କଥା ହୁଅନ୍ତେ । ମୁଁ ଅସୁସ୍ଥ; ଯାଇପାରୁନି ।'

ସେ ଦି' ତିନି ଦିନ ଭିତରେ ଆସିବେ ବୋଲି କହିଲେ ।

ଆସିଲେ, ମହାନ୍ତି ବାବୁଙ୍କୁ ସାଙ୍ଗରେ ଧରି ୨୦୧୨ ଜାନୁୟାରୀ ଆଠ ତାରିଖରେ । ଗୁଡ଼ାଏ ଅଭିଯୋଗ ତାଙ୍କର । ସତ୍ୟକାମ ମଦ ପିଇ ସବୁଦିନ ରାତିରେ ପିଟୁଚି । ଶାଶୁ ଖାଇବାକୁ ଦଉ ନାହାନ୍ତି । ସମସ୍ତେ ତା' ଚରିତ୍ରକୁ ସନ୍ଦେହ କରୁଚନ୍ତି । ସେ ଦୁହିଁଙ୍କୁ ଅଲଗା ଘର ଭଡ଼ା ନେଇ ରହିବାକୁ ଛାଡ଼ି ଦିଅନ୍ତୁ । ସେମାନେ ହୋଟେଲରୁ କିଣି ଖାଇ ଚଳିବେ । ମଉଜ ମଜଲିସ କରି ରହିବେ ।

ଲିଲି ବିରକ୍ତ ହେଇ କହିଲେ, ଖାଇବାକୁ ଦଉ ନ ଥିଲି ଯଦି ଅଢ଼େଇ ମାସ ଭିତରେ ତା' ଓଜନ ବାର କେଜି ବଢ଼ିଲା କେମିତି ? ତା'ର ସବୁ ଡ୍ରେସ ଟାଇଟ୍ ହେଲା ବୋଲି ସିଲେଇ ଫିଟେଇ ଆଉ ଥରେ ସିଲେଇ କରିବାକୁ ସେ କହୁଥିଲା । ମୋ ପୁଅ ନାଁରେ ମିଛ କହୁଛି । ପାଟିରେ ପୋକ ପଡ଼ିଯିବ । ସକାଳ ସଂଜରେ ଦି' କପ୍ ଚା' ଛଡ଼ା ତିନି କପ୍ ବି ହୁଏନି ତା'ର । ସେ ପୁଣି ମଦ ପିଇ ପିଟିବ । ହେ ଭଗବାନ !

ମୁଁ ସମସ୍ତଙ୍କୁ ଚୁପ୍ ରହିବାକୁ କହି ତାଙ୍କୁ ପଚାରିଲି, ଆପଣ ଝିଅକୁ ଆଣି ଏଠି ଛାଡ଼ି ଏସବୁ କଥା କହିଥିଲେ, ଆମ ଘର କଥା ମୁଁ ବୁଝିଥାନ୍ତି । ଆପଣ ଆମ ଘରଭଙ୍ଗା କଥା କହିଲେ । ଠିକ୍ ଅଛି, ମୁଁ ଯାହା ନିଷ୍ପତ୍ତି ନେବି, ଆପଣ ପରେ ଜାଣିବେ ।

ସେମାନେ ଆଉ କିଛି ନ କହି ଚାଲିଗଲେ ।

ପୁଅକୁ ପଚାରିଲି । ସେ କହିଲା, ଏ ମେଣ୍ଟାଲ୍ ପେସେଣ୍ଟକୁ ଛାଡ଼ପତ୍ର ଦେବା ଉଚିତ୍ । ଆଡଭୋକେଟ୍ ଗଙ୍ଗାଧର ତ୍ରିପାଠୀ, ଧରଣୀଧର ନାୟକ ଓ ପୁତ୍ରପ୍ରତିମ

ଦେବସ୍ନାନ ଦାସଙ୍କଠୁଁ ଉପଦେଶ ଚାହିଁଲି । ସମସ୍ତେ ପୁଅର ମତ ସହିତ ଏକମତ ହେଲେ । ଆମେ ପରିବାର ଅଦାଲତରେ ଛାଡ଼ପତ୍ର ପାଇଁ ଆବେଦନ କଲୁ । ସେମାନେ ଯୌତୁକ ଧନ ଦାବି, ବଧୂ ନିର୍ଯାତନ-୪୯୮ (କ) ଦଫାରେ ମହିଳା ଥାନାରେ ଏଫାୟାର୍ ଦାଖଲ କଲେ- ଯାହା ମିଥ୍ୟା ଓ କପୋଳକଳ୍ପିତ । ସତ୍ୟକାମ ଓ ଲିଲି ନାଁରେ ଆରେଷ୍ଟ ପରୁଆନା ବୁଲିଲା । ଜଗନ୍ନାଥ ରଖିଲାବାଲା । ହାଇକୋର୍ଟରୁ ଦୁହେଁ ବେଲ୍ ପାଇଗଲେ । ତାଙ୍କ ଚକ୍ରାନ୍ତ ଫେଲ୍ ମାଇଲା । କେଶ ଚାଲିଲା । ସନ୍ତୁଳି ହେବାର ମନଗଢ଼ା କେଶ୍ ।

ଦୁଃଖ ଯନ୍ତ୍ରଣା ଭୋଗି ଚାଲିଲୁ ।

ସୁପ୍ରିମକୋର୍ଟ ଏବେ ଏଭଳି କେଶ୍ ପାଇଁ ସଚେତନ ହୋଇଛନ୍ତି । ବୋହୂମାନଙ୍କର ମିଥ୍ୟା ଆକ୍ରୋଶର ଶିକାର ହେଉଥିବା ପୁଅମାନଙ୍କ ସପକ୍ଷରେ ଆଇନ ପ୍ରଣୟନ ଲାଗି ନିର୍ଦ୍ଦେଶ ଦେଇଛନ୍ତି । କିନ୍ତୁ ଆଜିର ଆମ ଅବସ୍ଥା-

ମୁଁ ଅସୁସ୍ଥ ଥିଲି । ଏ ଦୁଶ୍ଚିନ୍ତାରୁ ଅସୁସ୍ଥତା ବଢ଼ିଗଲା ।

ଲିଲିଙ୍କର ଡାଇବେଟିସ୍ ଓ ରକ୍ତଚାପ ବାହାରି ପଡ଼ିଲା ।

ଦୁଇ ମାସର ଅଫିସ ଅନିୟମିତତା ଓ କାର୍ଯ୍ୟ ପ୍ରଗତି ଅଭାବରୁ ସତ୍ୟକାମର ଚାକିରି ଚାଲିଗଲା । ଧନହାନି ପ୍ରାଣ ପୀଡ଼ା । ସେ କେବଳ କଚେରୀ ଦୌଡୁଚି । ସହୁଚି; କିଛି କହୁ ନାହିଁ ।

ମୁଁ ଯନ୍ତ୍ରଣାର ଭାଟି ଭିତରେ ଦୈବ ଦଣ୍ଡରେ ସଢୁଚି ।

ତୁମେ ଭରସା ଜଗନ୍ନାଥ ! ତୁମେ-



ଏହି ଜୀବନାଲେଖ୍ୟ ତରୁଣ ପିଢ଼ିକୁ ସମର୍ପିତ ।

# ପରିଶିଷ୍ଟ

## ।। ସଂକ୍ଷିପ୍ତ ପରିଚୟ ।।

| | |
|---|---|
| ଜନ୍ମ | ତା.୨୫.୦୮.୧୯୪୫ (ଗଣେଶ ଚତୁର୍ଥୀ) |
| ପିତା | ବ୍ରଜବନ୍ଧୁ ଚଇନି |
| ମାତା | ଶ୍ରୀମତୀ ଦେବୀ |
| ଜନ୍ମସ୍ଥାନ | ପ୍ରାକୃତିକ ଶୋଭାମୟ ପଲ୍ଲୀଗ୍ରାମ- ଅରେଇ ପୋଷ୍ଟ- ସମିତଙ୍ଗା, ଭାୟା- କିଶୋରନଗର, ଜିଲ୍ଲା- କଟକ, (ଥାନା- ସାଲେପୁର) |
| ଶିକ୍ଷା | ନେମାଳ ହାଇସ୍କୁଲରୁ କୃତିତ୍ୱର ସହ ମାଟ୍ରିକ ପାଶ୍ । ଖ୍ରୀଷ୍ଟ କଲେଜରୁ ବି.ଏ. ଓ ରେଭେନ୍ସା କଲେଜରୁ ଏମ.ଏ. (ଓଡ଼ିଆ)ରେ ପ୍ରଥମ ଶ୍ରେଣୀ ପ୍ରାପ୍ତ (୧୯୬୯) । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପିଏଚ.ଡି ଉପାଧି ପ୍ରାପ୍ତ (୧୯୭୮) । |
| ବୃତ୍ତି | ମାଟ୍ରିକ ପରୀକ୍ଷା ପରେ ନିଜ ଶିଙ୍ଘରେ ମାଟି ତାଡ଼ି ବିଦ୍ୟାଧ୍ୟୟନ । ପାଠ ପଢ଼ିଲାବେଳେ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ରେ କର୍ମ ସଂସ୍ଥାନ (୧୯୬୩ ରୁ ୧୯୬୯) । ୧୯୬୯ ମସିହା ଡିସେମ୍ବର ପହିଲାରୁ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା ବୃତ୍ତି । (ରାଜେନ୍ଦ୍ର କଲେଜ, ବଲାଙ୍ଗୀର, ଢ଼େଙ୍କାନାଳ କଲେଜ, ରେଭେନ୍ସା କଲେଜ, ବି.ଜେ.ବି. କଲେଜ, ଭୁବନେଶ୍ୱର, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର, ଶେଷରେ ଶୈଳବାଳା ମହିଳା କଲେଜରୁ ବିଭାଗୀୟ ମୁଖ୍ୟ ଭାବେ ଅବସର ଗ୍ରହଣ ।) |
| | ଅଧ୍ୟାପକ ଭାବରେ ତାଙ୍କର ସୁନାମ ଖୁବ୍ ବେଶି । ଜଣେ ଛାତ୍ର-ବତ୍ସଳ, ଭଲ ଶିକ୍ଷକ ଭାବରେ ସୁପରିଚିତ । ଅଧ୍ୟାପନା କର୍ମ ସହ |

ଶିକ୍ଷା-ପ୍ରଶାସନରେ ନିବିଡ଼ ଭାବରେ ସଂପୃକ୍ତି । ରେଭେନ୍ସା ସ୍ୱୟଂଶାସିତ କଲେଜର ପରୀକ୍ଷା ନିୟନ୍ତ୍ରକ ଭାବରେ ତାଙ୍କର ଦକ୍ଷତା ଉଲ୍ଲେଖନୀୟ ।

ସ୍ଥାୟୀ ଠିକଣା  ‘ଶ୍ରୀ ନିକେତନ’
ବାଦାମବାଡ଼ି, କଟକ-୭୫୩ ୦୧୨
ଦୂରଭାଷ – (୦୬୭୧) ୨୩୧୨୦୨୯
ମୋ. : ୯୩୪୭୨୭୪୯୩୬

**କୃତି ଓ ସଂପୃକ୍ତି :**

(କ) ସାହିତ୍ୟ ସେବା :

ତାଙ୍କ ପାଇଁ ସାହିତ୍ୟ ହିଁ ଜୀବନ । ଜୀବନର ପ୍ରତ୍ୟେକ ପାହାଚରେ ସେ ସାହିତ୍ୟ ଓ ସଂସ୍କୃତିକୁ ନିବିଡ଼ ଭାବରେ ଆପଣେଇ ନେଇଛନ୍ତି । ବାରବର୍ଷ ବୟସରେ କବିତା ଲେଖାରୁ ଏବଂ ନାଟକ ଅଭିନୟରୁ ସାଂସ୍କୃତିକ ଜୀବନର ବଡ଼ଦାଣ୍ଡକୁ ଓହ୍ଲାଇଛନ୍ତି । ସେଇ ଦିନୁ ଆଉ ପଛକୁ ଫେରି ନାହାନ୍ତି ।

(ଖ) ସାହିତ୍ୟ ସଂଗଠନ :

୧. ଯୁବଲେଖକ ସମ୍ମେଳନ, ସଂପାଦକ (୧୯୭୪-୭୭)
୨. ଉତ୍କଳ ସାହିତ୍ୟ ସମାଜ, ସାଧାରଣ ସଂପାଦକ (୧୯୯୨-୯୫) ଓ (୧୯୯୫-୯୮)
୩. ଉତ୍କଳ ସାହିତ୍ୟ ସମାଜ, ସଭାପତି (୨୦୦୧-୦୪) ଓ (୨୦୧୦-୨୦୧୩)

ଗ) ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା (ସଭ୍ୟ- ଦୁଇ ପର୍ଯ୍ୟାୟରେ)
ଘ) ରାଜ୍ୟ ପାଠାଗାର କମିଟି, ଓଡ଼ିଶା (ସଭ୍ୟ- ଗୋଟିଏ ପର୍ଯ୍ୟାୟର)
ଙ) ରାଜା ରାମମୋହନ ପୁସ୍ତକ ନିର୍ବାଚନ କମିଟି (ସଭ୍ୟ- ତିନି ପର୍ଯ୍ୟାୟ)
ଚ) ଶ୍ରୀଜଗନ୍ନାଥ ସଂସ୍କୃତି ବିଶ୍ୱବିଦ୍ୟାଳୟ ସିନେଟ୍ ସଭ୍ୟ (ଖ୍ରୀ. ୨୦୦୫ରୁ...)
ଛ) ଏହା ବ୍ୟତୀତ ବହୁ ସାଂସ୍କୃତିକ ଓ ସାହିତ୍ୟିକ ଅନୁଷ୍ଠାନ ସହ ସଂପୃକ୍ତ ।

**ପୁରସ୍କାର ଓ ସମ୍ମାନ :**

କ) ଶ୍ରେଷ୍ଠ ନାଟ୍ୟକାର ସମ୍ମାନ, ଅହମଦାବାଦ ସର୍ବଭାରତୀୟ ନାଟ୍ୟ ପ୍ରତିଯୋଗିତା (୧୯୭୨)

ଖ) ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର (୧୯୭୫) ନାଟକ ପାଇଁ
ଗ) ଧରିତ୍ରୀ ସାହିତ୍ୟ ସମ୍ମାନ : ୧୯୮୦ (ସାମଗ୍ରିକ କୃତି)
ଘ) ପ୍ରଜାତନ୍ତ୍ର ବିଷୁବ ପୁରସ୍କାର : ୧୯୮୧ (କ୍ଷୁଦ୍ରଗଳ୍ପ)
ଙ) ୟୁରେକା ସମ୍ମାନ, କଟକ : ୧୯୮୩ (ସାମଗ୍ରିକ କୃତି)
ଚ) ଉନ୍ମେଘ ସମ୍ମାନ, କଟକ : ୧୯୮୩ (ସମାଲୋଚନା ସାହିତ୍ୟ)
ଛ) ସମ୍ମାନଜନକ ଆଦି-ନାଟ୍ୟକାର ସମ୍ମାନ : ୧୯୯୩ (ନାଟକ)
ଜ) ବିଷୁବ-ପ୍ରଥମ ହରିହର ମହାପାତ୍ର ସମ୍ମାନ : ୧୯୯୪ (ସାମଗ୍ରିକ କୃତି)
ଝ) ରାମଚନ୍ଦ୍ର ମିଶ୍ର ନାଟ୍ୟ-ସମ୍ମାନ, ଦଶପଲ୍ଲା : ୧୯୯୫
ଞ) ତୁଳସୀ ସାହିତ୍ୟ ସଂସଦ, ନାଟ୍ୟଶ୍ରୀ ସମ୍ମାନ : ୧୯୯୭
ଟ) ଶ୍ରେଷ୍ଠ ନାଟ୍ୟକାର ସମ୍ମାନ, ଉତ୍କଳ ସାହିତ୍ୟ ସମାଜ : ୧୯୯୯
ଠ) ଗଣକବି ବୈଷ୍ଣବପାଣି ସମ୍ମାନ, ଭୁବନେଶ୍ୱର : ୧୯୯୯
ଡ) ପୁନର୍ନବା ସାହିତ୍ୟ ପୁରସ୍କାର, କେନ୍ଦ୍ରାପଡ଼ା : ୨୦୦୨
ଢ) ରାଜୀବ ଗାନ୍ଧି ସଦ୍‌ଭାବନା ସମ୍ମାନ, ରାଜୀବ ଗାନ୍ଧି ଫୋରମ୍, ଓଡ଼ିଶା : ୨୦୦୩
ଣ) ନାଟ୍ୟଭୂଷଣ ସମ୍ମାନ-ଇଣ୍ଟରନେସ୍‌ନାଲ୍ ଥିଏଟର ଫେଷ୍ଟିଭାଲ : ୨୦୦୩
ତ) ପଞ୍ଚସଖା ସାହିତ୍ୟ ସମ୍ମାନ, ଧାନକୁଦ : ୨୦୦୪
ଥ) ରାଷ୍ଟ୍ରଦୀପ ସାହିତ୍ୟ ସମ୍ମାନ, କଟକ : ୨୦୦୪
ଦ) ଅଚ୍ୟୁତାନନ୍ଦ ମହାମର୍ଯ୍ୟାଦା ସମ୍ମାନ : ୨୦୦୫
ଧ) ଜନସୁଧା କଥା ସମ୍ମାନ : ୨୦୦୫
ନ) ଅନନ୍ତ ପଣ୍ଡା ଶତବାର୍ଷିକ ସମ୍ମାନ : ୨୦୦୬
ପ) ଗୋଦାବରୀଶ (ସାହିତ୍ୟ ସଂସଦ) ସମ୍ମାନ : ୨୦୦୬
ଫ) ଶତାବ୍ଦୀର କଳାକାର ସମ୍ମାନ : ୨୦୦୭
ବ) ଉତ୍କଳ କଳା ପରିଷଦ ସମ୍ମାନ : ୨୦୦୮
ଭ) ସାରସ୍ୱତ ସମାରୋହ ସମ୍ମାନ, ସାଲେପୁର : ୨୦୦୯
ମ) ବୈକୁଣ୍ଠନାଥ ସ୍ମୃତି ସମ୍ମାନ, ଛପକୁଦ : ୨୦୧୦
ଯ) ସି-ସୋର ପ୍ରତିଷ୍ଠାତା ସମ୍ମାନ : ୨୦୧୦
ର) ଗଣକବି ସମ୍ମାନ, ସାଲେପୁର : ୨୦୧୦
ଳ) ଗବେଷଣା ପରିଷଦ କ୍ଷେତ୍ରବାସୀ ସମ୍ମାନ : ୨୦୧୧
ଶ) ସୁଲେଖା ସମ୍ମାନ, ପୁରୀ : ୨୦୧୧
ଷ) ଚିତ୍ରୋତ୍ପଳା ସମ୍ମାନ : ୨୦୧୪

**ସାହିତ୍ୟ କୃତି :**

ହାଇସ୍କୁଲ ଜୀବନରୁ ମୀନାବଜାର ଓ ସାମୟିକ ପତ୍ରପତ୍ରିକାରେ ଲେଖାଲେଖି ଆରମ୍ଭ । ନାଟକ, ଗଳ୍ପ, ଉପନ୍ୟାସ ଓ ଆଲୋଚନାତ୍ମକ ଗ୍ରନ୍ଥ ବ୍ୟତୀତ ବହୁ ଅପ୍ରକାଶିତ ଦୁଷ୍ପ୍ରାପ୍ୟ ପୋଥିକୁ ସଂପାଦନା ଓ ପ୍ରକାଶ କରିବାରେ ପ୍ରୟାସୀ । ପଞ୍ଚସଖା ଯୁଗର ବିଶିଷ୍ଟ କବି ଅଚ୍ୟୁତାନନ୍ଦ ଦାସଙ୍କ ରଚନାବଳୀକୁ ସାମଗ୍ରିକ ଭାବେ ଲୋକଲୋଚନକୁ ଆଣିବା ପାଇଁ ସେ ସଂକଳ୍ପବଦ୍ଧ । ତାଙ୍କର ପ୍ରକାଶିତ ପୁସ୍ତକ ଗୁଡ଼ିକ ହେଲା-

**କ) ନାଟକ :**

୧. ଶେଷଅଶ୍ରୁ (୧୯୬୬)
୨. ଅସ୍ତରାଗର ଚନ୍ଦ୍ର (୧୯୬୭)
୩. ମଞ୍ଚ ନାୟିକା (୧୯୬୮)
୪. ରାଜହଂସ (୧୯୭୦)
(ସର୍ବଭାରତୀୟ ପ୍ରତିଯୋଗିତା, ଅହମ୍ମଦାବାଦରେ ପ୍ରଥମ-୧୯୭୨)
୫. ରଙ୍ଗତରଙ୍ଗ (୧୯୭୧)
୬. ପୁନଶ୍ଚ ପୃଥିବୀ (୧୯୭୧)
୭. ଅପଦେବତା (୧୯୭୩)
୮. କଳଙ୍କିତ ସୂର୍ଯ୍ୟ (୧୯୭୪)
(ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ)
୯. ଅନେକ କାକ୍‌ଟସ୍ (୧୯୭୬)
୧୦. ନାଗଫେଣୀ ରତ୍ନ (୧୯୭୭)
୧୧. ନଚିକେତା ଉବାଚ (୧୯୭୮)
୧୨. ଅନ୍ଧାରର ସୂର୍ଯ୍ୟମୁଖୀ (୧୯୭୯)
୧୩. ମୁଖା (୧୯୮୦)
୧୪. ଅସ୍ଥିର ଉପତ୍ୟକା (୧୯୮୧)
୧୫. ଅଥଚ ଚାଣକ୍ୟ (୧୯୮୨)
୧୬. ଆଶା ବୃନ୍ଦାବନ (୧୯୮୬)
୧୭. ଯକ୍ଷ ଚରିତ (୧୯୮୭)
୧୮. ଅନେକ ନିଶ୍ୱାସର ଆକାଶ (୧୯୮୮)

୧୯. ନିଜ ନିଜ କୁରୁକ୍ଷେତ୍ର (୧୯୯୫)
୨୦. ଆହେ ଆପଣେ (୧୯୯୭)
୨୧. ସୁନା କଳସ (୧୯୯୮)
୨୨. କେତେ ପ୍ରତିଶ୍ରୁତି (୨୦୦୩)
୨୩. ତ୍ରିଧାରା (୨୦୦୬)
୨୪. ନାଟ୍ୟ ରତ୍ନାକର (୨୦୦୭)

**ଖ) କ୍ଷୁଦ୍ରଗଳ୍ପ :**

୧. ଗପ (୧୯୭୨)
୨. ମୁଠାଏ ଶୂନ୍ୟତା (୧୯୭୩)
୩. କହ ଲଳିତା (୧୯୭୭)
୪. ସୂର୍ଯ୍ୟାସ୍ତର ଉପବନ (୧୯୭୯)
୫. ରକ୍ତର ନାମ ପିପାସା (୧୯୮୩)
୬. ନିଷିଦ୍ଧ ଶୃଙ୍ଗାର (୧୯୮୪)
୭. ତଥାପି ରାବଣ (୧୯୮୯)
୮. ତଳ ପାହାଚର ଯୀଶୁ (୧୯୯୨)
୯. ଜୀବନ୍ତ ଅନନ୍ତ (୧୯୯୯)
୧୦. କାଚ ଟ୍ରେନ୍ (୨୦୦୧)
୧୧. ସ୍ନାୟୁ ସନ୍ୟାସୀ ଓ ଅନ୍ୟମାନେ (୨୦୦୨)
୧୨. ନୀରବ କୋଳାହଳ (୨୦୦୭)
୧୩. କଥା ନିର୍ବାଚିତ (୨୦୦୮)
୧୪. କଥା ରତ୍ନାକର (୨୦୧୨)

**ଗ) ଉପନ୍ୟାସ :**

୧. ରାତ୍ରିର ରଜନୀଗନ୍ଧା (୧୯୬୫)
୨. ଅବ୍ୟକ୍ତ ଗୋଧୂଳି (୧୯୬୭)
୩. ଲୁହ ଲହରୀ (୧୯୬୩)
୪. ବିଷ ବଳୟ (୧୯୬୬)
୫. ଫୁଲର ଫଗୁଣ (୧୯୬୮)

ଘ) ଆଲୋଚନା ଓ ସମାଲୋଚନା :

୧. ମୋ ଆଖିର ମୂଲ (୧୯୬୮)
୨. କବି ଗୋପାଳକୃଷ୍ଣ (୧୯୭୦)
୩. ଉଭଟ ନାଟ୍ୟ ପରଂପରା (୧୯୭୧)
୪. ଓଡ଼ିଆ ନାଟକର ଉଦ୍ଭବ ବିକାଶ (୧୯୭୮) (ପିଏଚ୍.ଡି. ଉପାଧି ସନ୍ଦର୍ଭ)
୫. ସନ୍ଥକବି ଅଚ୍ୟୁତାନନ୍ଦ (୧୯୯୮)
୬. ଆଧୁନିକ ଓଡ଼ିଆ ନାଟକ : ଏକ ତୁଳନାତ୍ମକ ଅଧ୍ୟୟନ (୨୦୦୧)
୭. ଓଡ଼ିଆ ସାହିତ୍ୟର ଇତିହାସ (୧୯୯୧)
୮. ଓଡ଼ିଆ ସାହିତ୍ୟର ଧାରା ଓ ଧରା (୧୯୯୯)
୯. ଅସମାପ୍ତ ରତ୍ନାକର (୧୯୯୧)
୧୦. ସନ୍ଥ ସାହିତ୍ୟ କୋଷ (୧୯୯୩) *ବୈଷ୍ଣବ ସାହିତ୍ୟ ଅଭିଧାନ*
୧୧. ଚିତ୍ର ଚରିତ (୨୦୦୨)
୧୨. ଚିନ୍ତାମଣି ଚିନ୍ତାମାନସ (୨୦୦୬)
୧୩. ଅମୃତ ଚେତନା (୨୦୧୦)

ଙ) ସଂପାଦନା :

୧. ଓଡ଼ିଆ ଏକାଙ୍କିକା (ଏନ୍.ବି.ଟି. ନୂଆଦିଲ୍ଲୀ ପ୍ରକାଶନ)
୨. ଅଚ୍ୟୁତାନନ୍ଦ ରଚନାବଳୀ (ରାହାସ ଖଣ୍ଡ)
୩. ଅଚ୍ୟୁତାନନ୍ଦ ରଚନାବଳୀ (କବିତା ଖଣ୍ଡ)
୪. ଅଚ୍ୟୁତାନନ୍ଦ ରଚନାବଳୀ (ତତ୍ତ୍ୱ-ସାହିତ୍ୟ ଖଣ୍ଡ)
୫. ଅଚ୍ୟୁତାନନ୍ଦ ରଚନାବଳୀ (ସଂହିତା ଖଣ୍ଡ)
୬. ଅଚ୍ୟୁତାନନ୍ଦ ରଚନାବଳୀ (ଗୀତା ଖଣ୍ଡ-୧ମ)
୭. ଅଚ୍ୟୁତାନନ୍ଦ ରଚନାବଳୀ (ମାଳିକା ଖଣ୍ଡ)
୮. ଅଚ୍ୟୁତାନନ୍ଦ ରଚନାବଳୀ (ଓଗାଳ ଖଣ୍ଡ)
୯. ଅଚ୍ୟୁତାନନ୍ଦ ରଚନାବଳୀ (ଗୀତା ଖଣ୍ଡ-୨ୟ)
୧୦. କବି ବନମାଳୀ ଓ ତାଙ୍କ ପଦ୍ୟାବଳୀ
୧୧. ଆଜିର ଗଳ୍ପ (ବିଭିନ୍ନ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମ ଭୁକ୍ତ)
୧୨. ଆଜିର ପ୍ରବନ୍ଧ (ବିଭିନ୍ନ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମ ଭୁକ୍ତ)

୧୩. କାବ୍ୟ-କବିତା (ବିଭିନ୍ନ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମ ଭୁକ୍ତ)

୧୪. ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟ (ପ୍ରବନ୍ଧ ସଂକଳନ)

୧୫. 'ଓଡ଼ିଆ ଭାଷାକୋଷ' (୧ମ-୨ୟ-୩ୟ-୪ର୍ଥ-୫ମ-୬ଷ୍ଠ-୭ମ-୮ମ-୯ମ) ଖଣ୍ଡ ଓ ଶେଷ ଖଣ୍ଡ ସଂପାଦନା କର୍ମରେ ଜଡ଼ିତ ।

୧୬. ଗଳ୍ପ ବାରିଧି (+୨ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ)

### ଚ) ଅନୁବାଦ :

୧. ଭିରେଶ ଲିଙ୍ଗମ୍ (ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀ)

୨. ପଞ୍ଜାବୀ ଏକାଙ୍କୀ (ଏନ୍.ବି.ଟି., ନୂଆଦିଲ୍ଲୀ)

* ଏହା ବ୍ୟତୀତ୍ ଅନେକ ଗଳ୍ପ, ଏକାଙ୍କିକାକୁ ହିନ୍ଦୀ, ବଙ୍ଗଳା ଆଦି ଭାଷାରୁ ଅନୁବାଦ ।

### ଛ) ଇଂରାଜୀ :

1. Achyutananda Das (Sahitya Akademi, New Delhi)
2. Contirbution of 'Panchasakha' : The Five Saint-Poets of Orissa.

### ଜ) ଚଳଚ୍ଚିତ୍ର :

'ଶୂନ୍ୟ ସ୍ୱରୂପ'- (କାହାଣୀ ଓ ସଂଳାପ) : ଜାତୀୟ ପୁରସ୍କାର ପ୍ରାପ୍ତ ଆନ୍ତର୍ଜାତିକ ପାନୋରମାରେ ବର୍ଲିନ, ମସ୍କୋରେ ପ୍ରଦର୍ଶିତ ।

### ଝ) ଭାଷାନ୍ତରଣ :

ଏହି ଲେଖକଙ୍କ ଅନେକ ଗଳ୍ପ ହିନ୍ଦୀ, ବଙ୍ଗଳା, ଅସମୀୟା, ମାଲୟାଲମ, ଉର୍ଦ୍ଦୁ, ତେଲଗୁ ଆଦି ଭାଷାର ମର୍ଯ୍ୟାଦାଜନକ ପତ୍ରିକାରେ ପ୍ରକାଶିତ ।

'କଳଙ୍କିତ ସୂର୍ଯ୍ୟ' ଏନ୍.ବି.ଟି. ଦ୍ୱାରା ସମସ୍ତ ଭାରତୀୟ ଭାଷାରେ ଅନୂଦିତ ଓ ପ୍ରକାଶିତ ।

'ପୁନଶ୍ଚ ପୃଥିବୀ' ନାଟକ ଧନଞ୍ଜୟ ବର୍ମାଙ୍କ ଦ୍ୱାରା ଅନୂଦିତ ହୋଇ ହିନ୍ଦୀରେ ପ୍ରକାଶିତ ଓ ବହୁତ ଚର୍ଚ୍ଚିତ ।

### ୯. ଗବେଷଣା :

କ) ୧୯୭୮ ମସିହାରେ ଗବେଷଣା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧିପ୍ରାପ୍ତ । ସେହି କାଳରୁ ଗବେଷଣା କର୍ମରତ ।

ଖ) ଏଯାବତ୍ ଅଠର ଜଣ ଗବେଷକ/ ଗବେଷିକା ତାଙ୍କ ଅଧୀନରେ ଗବେଷଣା କରି ପିଏଚ.ଡି. / ଡି.ଲିଟ୍ ଉପାଧି ପାଇସାରିଛନ୍ତି ।

ଗ) ରତ୍ନାକର ଚଇନିଙ୍କ କୃତି ଉପରେ ଗବେଷଣା କରି ସାତଜଣ ଗବେଷକ ପିଏଚ୍.ଡି. ପାଇସାରିଛନ୍ତି ।

**୧୦. ସେମିନାର ଅଂଶଗ୍ରହଣ :**

୧. ଜାତୀୟ ସ୍ତରର ବହୁ ସେମିନାରରେ ଅଂଶଗ୍ରହଣ : ଉଦାହରଣତଃ-

କ) ସର୍ବ ଭାରତୀୟ ଅନୁବାଦ କର୍ମଶାଳା, ଭୁବନେଶ୍ୱର-୧୯୭୪

ଖ) ପୂର୍ବ ଭାରତୀୟ ନାଟ୍ୟ ସଂପାନ, ଶାନ୍ତିନିକେତନ-୧୯୮୧

ଗ) ସର୍ବ ଭାରତୀୟ ଦୂରଦର୍ଶନ ନାଟ୍ୟ-ଲେଖକ କ୍ୟାମ୍ପ, ନୂଆଦିଲ୍ଲୀ- ୧୯୮୩

ଘ) ସର୍ବ ଭାରତୀୟ ସାହିତ୍ୟିକ ସମ୍ମେଳନ, ସୂରଜକୁଣ୍ଡ- ୧୯୮୫

ଙ) ପୂର୍ବ ଭାରତୀୟ ଆଧୁନିକ ନାଟ୍ୟଧାରା କର୍ମଶାଳା, ଶାନ୍ତିନିକେତନ-୧୯୯୯

ଚ) କେନ୍ଦ୍ର ସାହିତ୍ୟ ଏକାଡେମୀ, କଲିକତା (ମୋ ଲେଖା ମୋ ଜୀବନ-୨୦୦୪)

ଛ) ବମ୍ବେ ବିଶ୍ୱବିଦ୍ୟାଳୟ, (ତୁଳନାତ୍ମକ ଅଧ୍ୟୟନ)- ୨୦୦୬

୨. କ) ପ୍ରତିବର୍ଷ ଏକାଧିକ ରାଜ୍ୟସ୍ତରୀୟ ସଂପାନରେ ଅଂଶଗ୍ରହଣ ।

ଖ) ପ୍ରତ୍ୟେକ ମାସରେ ବହୁ ସାଧାରଣ ସଭାରେ ସାହିତ୍ୟ-ସଂସ୍କୃତି ସମ୍ବନ୍ଧରେ ଅଭିଭାଷଣ ।

ଗ) ପ୍ରତିବର୍ଷ ବିଭିନ୍ନ ବିଶ୍ୱବିଦ୍ୟାଳୟର ଉଜ୍ଜୀବନ ପାଠ୍ୟଧାରାରେ ବିଶେଷଜ୍ଞ ଭାବେ ଅଂଶଗ୍ରହଣ ।

● ଦେବବ୍ରତ ମଦନରାୟ

## ॥ ସମୟ ଦର୍ପଣରେ ମୁଁ... ॥



୧୯୬୩



୧୯୬୪



୧୯୬୫



୧୯୬୬



ପୁଅ ଝିଅଙ୍କ ଗହଣରେ ଆମେ ପୁରୀରେ



ଝିଅ ବାହାଘର ବେଳେ



ରାଜ୍ୟପାଳ ଓ ପଠାଣି ପଟ୍ଟନାୟକଙ୍କ ଗହଣରେ
ମୁଁ ଓ ବିଜୟାନନ୍ଦ ସିଂହ



ଉତ୍କଳ ସାହିତ୍ୟ ସମାଜ ଉତ୍ସବରେ
ପଠାଣି ପଟ୍ଟନାୟକ, ଅନାଦି ସାହୁ, ବ୍ରଜମୋହନ ମହାନ୍ତି ଓ ମୁଁ



ଭାଷାକୋଷ ଉଦ୍‌ଘାଟନ ବେଳେ ଆମେ ପଞ୍ଚ-ରଥୀ



ଏନ୍.ବି.ଟି. ର ମୁଖ୍ୟ ସଂପାଦକ ଡଃ ବଲଦେବ ସିଂ ବଦନଙ୍କ ସହ
ବିଜୟାନନ୍ଦ ଓ ମୁଁ



ଅଚ୍ୟୁତାନନ୍ଦ ମହାମର୍ଯ୍ୟାଦା ସମ୍ମାନ ଗ୍ରହଣ




ସୁଭଦ୍ରା ମହତାବ କଲେଜ ଉତ୍ସବରେ...




ସାହିତ୍ୟ ଭାରତୀ ଉତ୍ସବରେ...



ବାଲେଶ୍ୱରରେ ସାହିତ୍ୟ ସମାଜ ଉତ୍ସବ ବେଳେ
ପଲ ସେଣ୍ଟ ପିୟରଙ୍କୁ ସମ୍ମାନ ପ୍ରଦାନ



ଅନନ୍ତ ପଣ୍ଡା ଶତବାର୍ଷିକୀ ସମ୍ମାନ ଗ୍ରହଣ



ରଥଯାତ୍ରା ଧାରା ବିବରଣୀ ପ୍ରଦାନ ବେଳେ
ତୀର୍ଥାନନ୍ଦ ମିଶ୍ର ଓ ମୁଁ



ଔପନ୍ୟାସିକ ଗୋପୀନାଥ ମହାନ୍ତି, ପ୍ରାବନ୍ଧିକ ଚିତ୍ତରଂଜନ ଦାସ,
କବି ସୀତାକାନ୍ତ ମହାପାତ୍ର, ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତିଙ୍କ
ଗହଣରେ ମୁଁ- ଏନ୍.ବି.ଟି. ର ଏକ ସମାବେଶରେ



ନାଟକ ବିଶେଷପତ୍ର ଛାତ୍ରଛାତ୍ରୀ (୧୯୭୯-୮୧)
ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଙ୍କ ସହ ମୁଁ




ନ୍ୟାୟମୂର୍ତ୍ତି ରଙ୍ଗନାଥ ମିଶ୍ର, ମନୋରମା ମହାପାତ୍ର ଓ
ଅନ୍ୟମାନଙ୍କ ଗହଣରେ ମୁଁ



ଉତ୍କଳ ସାହିତ୍ୟ ସମାଜର ଏକ ସମାରୋହରେ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ମୁଁ
ଅନ୍ୟମାନଙ୍କ ସହିତ 



ବିଜୟିନୀ ଓ ଜନସୁଧା ପକ୍ଷରୁ ପୁସ୍ତକ ଲୋକାର୍ପଣ ଓ ଆଲୋଚନାଚକ୍ରରେ...




ବିଜୟିନୀ ଓ ଜନସୁଧା ପ୍ରକାଶନୀର ପୁସ୍ତକ ଲୋକାର୍ପଣ ଓ ଚର୍ଚ୍ଚା ଉତ୍ସବରେ...



ଔପନ୍ୟାସିକ ବିଭୂତି ପଟ୍ଟନାୟକ ଓ ନାଟ୍ୟକାର ରଣଜିତ୍ ପଟ୍ଟନାୟକଙ୍କ ମଝିରେ ମୁଁ 'କାଦମ୍ବିନୀ' ବାର୍ଷିକ ଉତ୍ସବରେ




ଜନସୁଧା କାର୍ଯ୍ୟାଳୟରେ ସ୍ୱନକ୍ଷତ୍ର ଉତ୍ସବ ପାଳନ ଅବସରରେ

'ମୁଁ' ମୟ ଏକ ଧାରାବାହିକ କଥା ଯହିଁରେ ଜଣକର ନିଜର ଅବୋଧ ଶୈଶବଠାରୁ ଆଜିଅବଧି ନିଜେ ଜାଣିଥିବା, ନିଜେ କରିଥିବା, ନିଜେ ଭୋଗିଥିବା ଓ ନିଜେ ଭାବୁଥିବା ପ୍ରସଙ୍ଗ ଗର୍ଭିତ ହୋଇଥାଏ- ତାହା ଏଯାବତ "ଆତ୍ମଜୀବନୀ" ଅଭିଧାରେ ଚିହ୍ନିତ ହୋଇଆସିଛି ।

ଆତ୍ମଜୀବନୀରେ ଜୀବନୀକାରଟି ଚରିତ୍ରଠାରୁ ପୃଥକ ରହିପାରେ ନାହିଁ, ଏଣୁ ତାକୁ ସମୀକ୍ଷା କରିପାରେ ନାହିଁ । ଅତଏବ ଆତ୍ମଜୀବନୀ ବେଳେବେଳେ ଆତ୍ମଚରିତା ଅବା ଆତ୍ମଅଭିନନ୍ଦନିକା ପାଲଟିଯାଏ ।

ଏହି ଗ୍ରନ୍ଥରେ ଜଣେ ଲେଖକ ଅନ୍ୟମାନଙ୍କ କଥା କହି ବସ୍ତୁତଃ ଆତ୍ମଜୀବନୀ ଲେଖିବାର ନୂତନ ଦିଗନ୍ତ ସ୍ଥାପନ କରିଛନ୍ତି । ଲେଖକଙ୍କ ବ୍ୟକ୍ତିସତ୍ତା କେତେକେତେ ବ୍ୟକ୍ତି-ଅନୁଷ୍ଠାନ-ପ୍ରତିଷ୍ଠାନ ଓ କାଳ ଦ୍ୱାରା ପ୍ରଭାବିତ ଓ ସେହିମାନଙ୍କଠାରେ ତାଙ୍କ ଜୀବନ କେତେ ମାତ୍ରାରେ ଋଣୀ ଓ କୃତଜ୍ଞ, ତାହା ହିଁ ପରସ୍ପର ସଂପର୍କିତ ଅଥଚ ସ୍ୱୟଂସଂପୂର୍ଣ୍ଣ ଅନୁଭୂତ କଥାମାଳାରେ ପ୍ରକାଶିତ ।

ନିଜକୁ ଦ୍ରଷ୍ଟା ଭୂମିକାରେ ରଖି ଅନ୍ୟମାନଙ୍କ କାର୍ଯ୍ୟ-କରଣୀ-ବଚନର ବିନ୍ୟାସ କରୁ କରୁ ସର୍ଜିତ ହୋଇଯାଇଛି ଗୋଟିଏ ସରଳ କୌତୂହଳୀ ଗ୍ରାମୀଣ ବାଳକର ରୂପାନ୍ତର ଜଣେ ଶିକ୍ଷକ-ସାହିତ୍ୟିକ-ସଂଗଠକ-ଗବେଷକ ଭାବରେ ।

ଷାଠିଏ-ଉତ୍ତର ଓଡ଼ିଆ ସମାଜ-ସାହିତ୍ୟ-ସଂସ୍କୃତି-ଶିକ୍ଷା ପୃଷ୍ଠଭୂମିରେ ଏକ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ- ରତ୍ନାକର ଚଇନିଙ୍କ ଆତ୍ମଜୀବନୀ 'ଜୀବନ କମାରଶାଳ' ପ୍ରକାଶ କରି ଆମେ ଆନନ୍ଦିତ ।

ପ୍ରକାଶକ





ISBN 93-82360-98-0